ଅତି ସରୁ ଚୁମ୍ବନ ମଣ୍ଡି ମୁଖରେ
ଅବ୍ଜ ସ୍ଥାନମାନଙ୍କୁ ଚୁଳି ନଖରେ ଯେ ।
ଅମୃତ ପାନ କରି ଓଷ୍ଠୁ ଚ୍ୟୁତରୁ
ଅଳପ ମଣିଲେ ସେ କଳପତରୁ ଯେ । ୩ ।
ଅବଶେଷ ଦେହରେ ନ ରଖି ଲାଜ
ଅଙ୍କିତ କଲେ ପଙ୍କଜାକ୍ଷୀ ଉରୋଜ ଯେ ।
ଅଙ୍ଗନା ଅଙ୍ଗ ରୋମାଙ୍କୁର ଜାତରୁ
ଅଳପ ମଣିଲେ ସେ କଳପତରୁ ଯେ । ୪ ।
ଅଷ୍ଟ ଅଷ୍ଟ ଗୁଣନ ବନ୍ଧ ବିଧାନ
ଅଦେହ ସନ୍ଦେହ ସେ କ୍ରୀଡ଼ା ବିଧାନ ଯେ ।
ଅଭୀଷ୍ଟ ପରିପୂର୍ଣ୍ଣ ହୋଇ ରତରୁ
ଅଳପ ମଣିଲେ ସେ କଳପତରୁ ଯେ । ୫ ।
ଅପୂର୍ବ ବିପରୀତ ହୋଇଲା ପୁଣି
ଅଭିନବ ଅମ୍ବୁଦ-ସମସ୍ତ ଜାଣି ଯେ ।
ଅସମ ପୟୋଧର ଉପରେ ଘୋଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୬ ।
ଅଙ୍ଗେ ରୋମକଦମ୍ବମାନେ ଫୁଟିଲେ
ଅଙ୍ଘ୍ରି ନୂପୁର ଭେକ ରଟି ଫୁଟିଲେ ଯେ ।
ଅଧୀରେ ଗ୍ରୀମା ବିଦ୍ୟୁଲ୍ଲତା ଚହଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୭ ।
ଅସିତ କେଶ ବେଶ ଫିଟି ଯା ଟଳେ
ଅନୁବନ୍ଧେ ସେ ନାଚେ କେକୀ ଚହଲେ ଯେ ।
ଅତନୁ ତମ ଘୋଟି ରହିଣ ସୃଷ୍ଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୮ ।

---

ଶ୍ଲୋକ—ଅନଙ୍ଗରଙ୍ଗେ

ସୀମନ୍ତାକ୍ଷ୍ୟଧରେ କପୋଲଫଲକେ କକ୍ଷାକୁଚୋରଃସ୍ଥଲେ
ନାଭି-ଶ୍ରୋଣି-ବରାଙ୍ଗ-ଜାନୁବିଷୟେ ଗୁଲ୍ଫେ ପଦେଽଙ୍ଗୁଷ୍ଠକେ
କୃଷ୍ଣାକୃଷ୍ଣବିଭାଗତୋ ମନସିଜସ୍ତିଷ୍ଠେଦ୍‌କ୍ରମାଦ୍‌ଯୋଷିତାଂ
ବାମାଙ୍ଗେଷ୍ୱଧ ଊର୍ଦ୍ଧ୍ୱତୋଽଭିଗମନାନ୍ନାସସ୍ୟ ପକ୍ଷଦ୍ୱୟେ ।

୨ । ଅଷ୍ଟଅଷ୍ଟଗୁଣନ—ଚଉଷଠି । ୬ । ବିପରୀତ ରତକୁ ବର୍ଷାକାଳ ସହିତ ତୁଳନା କରାଯାଇଅଛି । ପୟୋଧର—ସ୍ତନ ଓ ମେଘ ୮ । ତମ—ଅନ୍ଧକାର ୯

ଅମର-ଗୁରୁ ନାସାମଣି ଚଳଇ,
ଅବ୍ଧିଫଳ ଝରକାମାନ ପଡ଼ଇ ଯେ ।
ଅଣ୍ଟାକିଙ୍କିଣୀ ଘନ ସ୍ୱନ ପ୍ରକଟି,
ଅତ ସରସେ କଲା ସୁରସ ବୃଷ୍ଟି ଯେ । ୯ ।
ଅନଳ ଖରେ ଯାହା ଜାତ ହୁଅଇ,
ଅଙ୍ଗ-ଅବନୀ ଗଲା ପଙ୍କିଳ ହୋଇ ଯେ ।
ଅମୂଲ୍ୟ-ଭୁରୁ-ଇନ୍ଦ୍ରଗୋପ ଉଝଟି,
ଅତ ସରସେ କଲା ସୁରସ ବୃଷ୍ଟି ଯେ । ୧୦ ।
ଅଷ୍ଟ ଚତୁର ଗୁଣ ବନ୍ଧ ସରିଲା,
ଅବଳ ହୋଇ କାମଦେବ ହାରିଲା ଯେ ।
ଅତନୁ-କେଳି-ଅନ୍ତ ବେଶ ସୁଷମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୧ ।
ଅତୁଲ୍ୟ କେଶ-ବେଣୀ କରି ନିର୍ମାଣ,
ଅଙ୍ଗେ ଖଞ୍ଜିଲେ ରତ୍ନ ଭୂଷଣମାନ ଯେ !
ଅନାଇଁ ତୁଚ୍ଛ ପରି କିଶେ ଅଣିମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୨ ।
ଅଳକେ କାଟି ଗୁରୁ ଚନ୍ଦନପାଟୀ,
ଅନ୍ତେ ତା'ର ସୁତାର-ସିନ୍ଦୂର ଗୋଟି ଯେ ।
ଅଧିକ ଝଟକିଲା ମୁଖଚନ୍ଦ୍ରମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୩ ।
ଅସିତ ପଦ୍ମନେନେ ଅଞ୍ଜନ ରଞ୍ଜି,
ଅପାଙ୍ଗୁଁ କର୍ଣ୍ଣଯାଏ ସରୁଆ ଲଞ୍ଜି ଯେ ।
ଅଭ୍ରମ ଉପରେ ହେଲା ସେ ଭ୍ରମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୪ ।
ଅରୁଣ-ଅଧରୀକି କୋଳରେ ଧରି,
ଅନୁରାଗେ କହନ୍ତ ଗୁଟୁ-ଗୁଟୁରି ଯେ ।

---

ଅଜ୍ଞାନତା ୯ । ଅମରଗୁରୁ—ବୃହସ୍ପତି । ନାସା ମଣି ସଙ୍ଗେ ଉପମିତ । ବୃହସ୍ପତି ଚଳନରେ ମେଘ ବରଷେ । "ବାରିପୂର୍ଣ୍ଣାଂ ମହୀଂ କୃତ୍ୱା ପଶ୍ଚାତ୍ପ୍ରସ୍ଥରତେ ଗୁରୁଃ ।" ଅବ୍ଧିଫଳ—ମୁକ୍ତା । ୧୦ । ଉଝଟି—ଚହଟି, ଅଣିମା—ଯୋଗଶାସ୍ତ୍ର ପ୍ରସିଦ୍ଧ ଐଶ୍ୱର୍ଯ୍ୟ-ବିଶେଷ । ୧୩ । ସୁତାର—ଅତି ଉଜ୍ଜ୍ୱଳ । ୧୪ । ଅଭ୍ରମ···ଭ୍ରମା—ଭ୍ରମା (ସତ୍ତା)

ଅନୁରୂପରେ ତୋ’ ମୋ’ ପ୍ରୀତିଙ୍କ ବାମା,
ଅମରପୁରେ ନାହିଁ ନାହିଁ ଉପମା ଯେ । ୧୫ ।
ଅକ୍ଷପିତୁଲା ବାଳା ବୋଲନ୍ତି ତୋତେ,
ଅପାର ଅନ୍ତରେ ସେ ରହିଲ ମୋତେ ଯେ ।
ଅବା ବୋଲନ୍ତି ତୁ ମୋ’ ହୃଦୟମଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୬ ।
ଅଳକର ତିଳକ ବୋଲନ୍ତି ଧନ,
ଅହ୍ନକୁ ଅହ୍ନ ସେହୁ ହୁଅଇ ଆନ ଯେ ।
ଅତନୁ-ସରିତକୁ ତୁ ମୋ ତରଣୀ,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୭ ।
ଅଟୁ ତୁ ଲଲାଟର ଭାଗ୍ୟ ଅକ୍ଷର ?
ଅବ୍ୟକ୍ତ ହେଲ ସେ ତ ନୋହେ ଗୋଚର ଯେ ।
ଅମର-ପଣ୍ଡ-ସମ୍ପତ୍ତି ମୋ ରମଣୀ,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୮ ।
ଅବ୍ଜ-କୁମୁଦ ଅକ-ଅମ୍ବୁଜ-ଭାବ,
ଅହର୍ନିଶି ନ ରହେ ହୁର ସ୍ୱଭାବ ଯେ ।
ଅମ୍ବୁଜ-ସ୍ତୋକ ତୁଲ୍ୟ କରନ୍ତି ଆଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୯ ।
ଅତନୁ-ବାଞ୍ଛାକୁ ତୁ ଅମରଲତା,
ଅଟେ ନୀରସ ହୃଦ ବୋଲିବ କି ତା ଯେ ?
ଅଞ୍ଜନୟନ ରଙ୍କରତନମଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୨୦ ।
ଅପସର ମୁରୁଳୀ ହିଂସୁଲ ଶେଯ,
ଅଙ୍ଘ୍ରି-ଅଲତା ଅଙ୍ଗ-କର୍ପୂର ରଜ ଯେ ।
ଅଙ୍ଗସାତରେ ଅବା ହୁଅନ୍ତି ସର
ଅନୁକ୍ଷଣେ ଏ ନ ରହନ୍ତି ଚତୁର ! ଯେ । ୨୧ ।

---

ସୁନ୍ଦରଠାରୁ ଆହୁରି ସୁନ୍ଦର ହେଲ । ୧୫ । ଅନୁରୂପରେ—ତୁଳନାରେ । ୧୭ । ଅପାର···ମୋତେ—ମୋଠାରୁ ଦୂରରେ ରହିଲ । ୧୭ । ଅଳକ—ଲଲାଟ । ତରଣୀ—ନୌକା । ୧୯ । ଅବ୍ଜ—ଚନ୍ଦ୍ର,ସ୍ତୋକ—ସ୍ତବକ । ୨୧ । ଅପସର—ତକିଆ, ମାଣ୍ଡି ।

ଅତୁଲ୍ୟ ଭବସ୍ତିର ସୁମନ ଝସ,
ଅପରେ ପୀନସ୍ତନ ଉପର ହାର ଯେ ।
ଅବଲା ବଳା ବୋଲି ବୋଲିବା ପାଇଁ
ଅନୁକ୍ଷଣେ ଏ ନ ରହନ୍ତି ଚତୁର ! ଯେ । ୨୨ ।
ଅବା ଦର୍ପଣ ବସ୍ତୁ ତୋହର ମୁହଁ,
ଅଙ୍ଗ-ଛାଇ ସଙ୍ଗରେ ହେବ ମଛାଇ ଯେ ।
ଅଣ୍ଟା କଙ୍କିଣୀ-ସମ ହୁଅନ୍ତି ଗୋର,
ଅନୁକ୍ଷଣେ ଏ ନ ରହନ୍ତି ଚତୁର ! ଯେ । ୨୩ ।
ଅମ୍ବୁରୁହନୟନ-କଜ୍ଜଳ ଭଲା
ଅଙ୍ଗ-କୁଙ୍କୁମ ବୋଲି ଏ ପ୍ରେମଶୀଳା ଯେ ।
ଅଧର-ପାନବୋଳ ହୋନ୍ତି ସୁନ୍ଦର !
ଅନୁକ୍ଷଣେ ଏ ନ ରହନ୍ତି ଚତୁର ! ଯେ । ୨୪ ।
ଅଙ୍ଗନା ତୋ ବାଜଣା-ବୀଣା ହୁଅନ୍ତି,
ଅବା ଅତନୁ-ଶାସ୍ତ୍ର-ପଠନ ପୋଥି ଯେ ।
ଅପ୍ରବର୍ତ୍ତିଲି ଏହି କଥା ବଗୁର,
ଅନୁକ୍ଷଣେ ଏ ନ ରହନ୍ତି ଚତୁର ! ଯେ । ୨୫ ।
ଅକ୍ଷିରେ ରଖିଚୁ ତୁ ମୋକ୍ଷ ପଦବୀ,
ଅଣିମାପଦ ପଦତଳରେ ଥିବ ଯେ ।
ଅମୃତ ବୃଷ୍ଟି ତୋର ହାସ ରଚିତ,
ଅତନୁ-ବଳଭଦ୍ର ଭଞ୍ଜନୀ ମିତ ! ଯେ । ୨୬ ।
ଅଙ୍ଗନାକୁଳ ଅଳଙ୍କାର ତୁ ଗୋର !
ଅଣୁଏ ରତି ରମ୍ଭା ନୁହନ୍ତି ସର ।
ଅଚମ୍ବିତ ତୋ ଯେଉଁ କଳକଣ୍ଠିତ,
ଅତନୁ-ବଳଭଦ୍ର-ଭଞ୍ଜନୀ ମିତ ! ଯେ । ୨୭ ।

---

ମାତରେ—ସହିତରେ । ୨୬ । ଅତନୁ—କନ୍ଦର୍ପର ବଳ ଓ ଭଦ୍ର—କୁଶଳର (ବରହ-ମାରଣ ରୂପ ସୁଖର) । ଭଞ୍ଜନୀ—ନାଶକାରିଣୀ ।୨୭। କଳକଣ୍ଠିତ ଲକ୍ଷଣ—ହର୍ଷହେତୁ ରୋଦନ, ଗାନ ପ୍ରଭୃତି ଏକକାଳରେ ନାୟିକା କର୍ତ୍ତୃକ କୃତ ହେଲେ ତାହା କଳ-କଣ୍ଠିତ । "ହର୍ଷାନ୍ନୁଦିତଗାନାଦବ୍ୟାମିଶ୍ରଂ କଳକଣ୍ଠିତଂ ।"

ଅସମ୍ମତ ଭାବରେ ଥାଇ ସମ୍ମତ,
ଅନୁକମ୍ପାରେ ଥାଇ ନିଘୃଣ ସ୍ଥିତ ଯେ ।
ଅଲକ୍ଷିତ ତୋର ଏ ପ୍ରେମ ଚରିତ,
ଅତନୁ-ବଳଭଦ୍ର-ଭଞ୍ଜନୀ ମିତ ଯେ । ୨୮ ।
ଅନଙ୍ଗ-ଅଳଙ୍କାରଶାସ୍ତ୍ର ତୋ ସ୍ଥିତ,
ଅନେକ ହାବଭାବ-ଲୀଳାଦି ଗତ ଯେ ।
ଅଭିଧାବ୍ୟଞ୍ଜନାଦି ଲକ୍ଷଣାମତ,
ଅତନୁ-ବଳଭଦ୍ର-ଭଞ୍ଜନୀ ମିତ ଯେ । ୨୯ ।
ଅପମୃତ୍ୟୁନାଶନ ସୁଖଦାୟକ,
ଅଜ୍ଞାନ-ଅନ୍ଧାରକୁ ଅର୍କ ପ୍ରାୟେକ ଯେ ।
ଅଶେଷ ପାପ ହରିବାକୁ ଏ ଗୀତ,
ଅତନୁ-ବଳଭଦ୍ର-ଭଞ୍ଜ ନିମିତ୍ତ ଯେ । ୩୦ ।

---

୨୮ । ଅସମ୍ମୁଖାଲୋକନମାଭିମୁଖ୍ୟଂ, ନିଷେଧ ଏବାନୁମତିପ୍ରକାରଃ
ପ୍ରତ୍ୟୁତ୍ତରଂ ମୁଦ୍ରଣମେବବାକ୍ୟେ, ନବାଙ୍ଗନାନାଂ ନବ ଏବ ପନ୍ଥାଃ ।

୨୯ । ହାବ—ସ୍ତ୍ରୀଣାଂ ବିଳାସବିବ୍ବୋକବିଭ୍ରମା ଲଳିତଂ ତଥା,
ହେଳା ଲୀଳେତ୍ୟମୀ ହାବାଃ କ୍ରିୟାଃ ଶୃଙ୍ଗାରଭାବଜାଃ ।
ଭାବ—ନିର୍ବିକାର ଚିତ୍ତରେ ପ୍ରଥମେ ଯେଉଁ ବିକାର ଜାତ ହୁଏ ।
ଲୀଳା—ପ୍ରିୟର ସମାଗମ ଲାଭ କରି ନ ପାରିଲେ ନିଜ ମନକୁ ସନ୍ତୁଷ୍ଟ କରିବା ପାଇଁ ପ୍ରିୟ ନାୟକର ଗତି, ବାକ୍ୟ, ବେଶ, ଦୃଷ୍ଟି, ହାସ୍ୟ ପ୍ରଭୃତିର ଅନୁକରଣ (ନାୟିକାକର୍ତ୍ତୃକ)

୩୦ । ଅତନୁ—ରାଜା, ଅ—ବିଷ୍ଣୁ ତାଙ୍କର ତନୁ—ଶରୀର; । "ନା ବିଷ୍ଣୁଃ ପୃଥିବୀ ପତିଃ ।" ରାଜା ବିଷ୍ଣୁଙ୍କ ଅଙ୍ଗ ବୋଲି ଶାସ୍ତ୍ରପ୍ରସିଦ୍ଧ ।



# ତୃତୀୟ ଛାନ୍ଦ

—ଦକ୍ଷପ୍ରଜାପତିଙ୍କ ଯାଗ—

ସତୀଙ୍କ ପ୍ରାଣତ୍ୟାଗ

ରାଗ—କାଳୀ

ଯତି—୪+୪+୬; ୪+୪+୭, ୪+୪+୭, ୪+୪+୭

[ ଷୋଡଶ ଅକ୍ଷର ଦୀର୍ଘ ଉଚ୍ଚାରିତ ହେବ ]

ଅତି ହରଷ ମନେ ଏ ରସ ଶୁଣ ହେ ସାଧୁନର,
ଅମୃତ ପ୍ରତି ମତି ବୃପତି କରେ ଶ୍ରବଣ ଯାର ।
ଅଶ୍ୱମେଧ ଭବ ଯାଗ ଆରମ୍ଭି ସେ ଦକ୍ଷପ୍ରଜାପତି,
ଅନୁରୂପରେ ସମ୍ଭାର କରେ ବେଦବିଧାନ ରୀତି । ୧ ।
ଅକ୍ଷତବାସ ଦେଇଣ ଦଶଦିଗକୁ ପେଷି ଚର,
ଅଣାଇଲେ ସେ ନିମନ୍ତ୍ରି ତୋଷେ ଯେରୂପ ଯୋଗିବର ।
ଅଙ୍ଗିର ଶୁକ ସୂତ ସନକ କଶ୍ୟପ ସନାତନ,
ଅତ୍ରି ମରୀଚି କପିଳ ଶୁଚି ବଶିଷ୍ଠ ବଦ୍ୟମାନ । ୨ ।
ଅଗସ୍ତି ବ୍ୟାସ ଆତ୍ମଭୂ ଶିଷ୍ୟ ଭୃଗୁ ପୁଲହ ଆଦି,
ଅଇଲେ ବାମଦେବ ଗୌତମ ଦୁର୍ବାସା ବିଶ୍ରବାଦି ।
ଅପରେ କଣ୍ଠୁ ଆଦି ଯେ ବଣ୍ଟୁବେତ୍ତା ନିର୍ମଳଚିତ୍ତ ।
ଅଥର୍ବ ପରାଶର ଯେ ସୁରାସୁର ନରରେ ଖ୍ୟାତ । ୩ ।
ଅନନ୍ତ ଧାତା ଆଦି ଦେବତା ଇନ୍ଦ୍ର ବରୁଣ କଲେ,
ଅଷ୍ଟଦିକପାଳ ଗ୍ରହସଂକୁଳମାନଙ୍କୁ ନିମନ୍ତ୍ରିଲେ ।
ଅଖିଳେ ଯେତେ ଛନ୍ତି ପ୍ରଶସ୍ତେ ସର୍ବେ ଅଇଲେ ପୁଣ,
ଅନ୍ଧକକାଳଙ୍କୁ ହିଁ କେବଳ ନ ଦେଲେ ନିମନ୍ତ୍ରଣ । ୪ ।

---

୧ । ଅମୃତ ପ୍ରତି—ଅମୃତର ପ୍ରତିନିଧି ।

ଅରଣିଛେଦ କଲେ ବିବିଧ ବାଦ୍ୟ ମଙ୍ଗଳ ସ୍ୱନେ ।
ଅତିଥିଜନ ରହିବା ସ୍ଥାନ ରଚିଲେ ଠାବେ ଠାବେ ।
ଅଛି ତୋଳି ତ ସ୍ୱର୍ଣ୍ଣ-ନିର୍ମିତ କରି ମଣ୍ଡପ ଶାଳି
ଅମରପୁର ସମ ସମ୍ଭାର ଯତନେ ଠୁଳ କଲି । ୫ ।
ଅବକାକମଠ ସଙ୍ଗଭୁଷଟ କୋଣ ବର୍ତ୍ତୁଳ ଶନ୍ତ
ଅଷ୍ଟ ତ୍ରିକୋଣ ବେଦ ପ୍ରମାଣ ନିର୍ମାଣ କଲେ କୁଣ୍ଡ ।
ଅଶେଷ ଗୁଣ ଶ୍ରୁତିନିପୁଣ ଆଗୁର୍ଯ୍ୟ ବ୍ରହ୍ମା କଲେ
ଅଧ୍ୟାପକଙ୍କୁ ମୁଖ୍ୟ ଯେ ଯାହାଁ ତହିଁରେ ନିଯୋଗିଲେ । ୬ ।
ଅଗ୍ନୀଧ୍ର ହୋତା ବେଦ ବକତା ଅଟନ୍ତି ପ୍ରଗୃହକ
ଅଛାବ୍ୟକ ସେ ବରୀ ସର୍ବାଂଶେ ଅଛି ଏକକୁ ଏକ ।
ଅଙ୍ଗୁଳିମାନ ପ୍ରଣୀତାପୂର୍ଣ୍ଣ ଶ୍ରୁବ ସ୍ରୁଚହିଁ କଲେ
ଅପରେ ଯେତେ ବିଧି ଉଚିତେ ବିଧି ନ ଭୁଆଇଲେ । ୭ ।
ଅଯୁତାଯୁକ ସ୍ୱର୍ଣ୍ଣ ପ୍ରାଶ୍ଚିତ କଲେ ଅବିଘ୍ନକାମେ
ଅପରାଜିତା ଚଣ୍ଡୀ ଗଣିତା ନୃହେ ବରଣକ୍ରମେ ।
ଅପୂର୍ବ ପଞ୍ଚବସ୍ତ୍ରେ ଶ୍ରେଷ୍ଠଜନମାନଙ୍କୁ ବରି
ଅଳକେ ଶଶୀ ଚନ୍ଦନ ଘଷିଦେଲେ ଆଦର କରି । ୮ ।
ଅଗ୍ରେ ବରଣ ପୂଜା କରିଣ ଆରମ୍ଭ କଲେ କର୍ମ
ଅଗ୍ନିସ୍ଥାପନା କାର୍ଯ୍ୟେ ସେ ନାନା ବିଧାନେ କଲେ ଶ୍ରମ ।
ଅମ୍ବୁଦ ସ୍ୱନେ ଶିଖୀ ଯେସନେ ଟେକି କରଇ ନାଦ
ଅନୁକ୍ରମରେ ସେ ବିପ୍ରବରେ ଟେକି ପଢ଼ନ୍ତି ବେଦ । ୯ ।
ଅତିଥି ଜନମାନଙ୍କୁ ଅନ୍ନମୃଷ୍ଟ ଭୋଜନ ଦେଲେ
ଅନ୍ଧ କୁବୁଜା ପଙ୍ଗୁଙ୍କୁ ଖଞ୍ଜା ସକଳ ଦ୍ରବ୍ୟ କଲେ ।
ଅପରେ ଦୂରବିଦେଶୀ ନର ବନ୍ଦୀ ଭିକ୍ଷୁକ ଗଣେ
ଅଭୀଷ୍ଟ ପୂର୍ଣ୍ଣ କରି ସୁବର୍ଣ୍ଣ ଦେଲେ ସେ ଅନୁକ୍ଷଣେ । ୧୦ ।
ଅଇଲେ ଦୂରଦେଶୁ ଭୂସୁରମାନେ ଅର୍ଜନେ ଧନ
ଅଟେ କେ ସାମବେଦେ ଆଗମ ଶାସ୍ତ୍ରେ କେ ବିଦ୍ୟମାନ ।
ଅପରେ ଯଜୁର୍ବେଦରେ ବିଦୁଷ କେ ଋଗ୍‌ବେଦବେତ୍ତା
ଅଥର୍ବ ବେଦରେ କେ କୋବିଦ କେ ସର୍ବଶାସ୍ତ୍ରେ ଜ୍ଞାତା ॥ ୧୧ ।

---

୫ । ଅରଣି—ଯଜ୍ଞରେ ଯେଉଁ କାଠ ଦୁଇଖଣ୍ଡି ଘଷି ଅଗ୍ନି ବାହାର କରନ୍ତି ।
୮ । ଶଶୀ—କର୍ପୂର । ୯ । ଟେକି—ଉଚ୍ଚରେ । ପାତଞ୍ଜଳେ—ପତଞ୍ଜଳିପ୍ରଣୀତ ଯୋଗ ଶାସ୍ତ୍ରରେ ।

ଅଷ୍ଟ ବଡଶ ମନ୍ତେ କା ଯଶ ବୈୟାକରଣ ଦେହ
ଅଟେ ବେ ଯନ୍ତମନ୍ତାଦି ତନ୍ତ୍ର ବାର୍ତ୍ତେ ପ୍ରଧାନ ତହୁଁ ।
ଅର୍ଥ ପ୍ରକାରେ ତଦ ଶାସ୍ତ୍ରରେ ଅଟେ ବେ ଦୀପ୍ତିତର
ଅତି ପ୍ରବଳେ ବେ ପାତଞ୍ଜଲେ ଦେହୁ ବେଦାନ୍ତେ ବର । ୧୨ ।
ଅଶ୍ବମେଧାଦି ଯାଗେ କା ସିଦ୍ଧି ମୀମାଂସା ଶାସ୍ତ୍ରେ ମାନ
ଅନ୍ତୁ ବା ଖ୍ୟାତ ସାଂଖ୍ୟରେ ଅତି ବେ ବୈଶେଷିକେ ଜ୍ଞାନୀ ।
ଅଲଙ୍କାରିକ କାବ୍ୟ ନାଟକ ଧୀର ବେ କବିବର
ଅଷ୍ଟମ ଦଶ ପୁରାଣେ ବ୍ୟାସ ପରି ବେ ଧୁରନ୍ଧର । ୧୩ ।
ଅଙ୍କ ବେ ବସ୍ତ୍ର ହେଲେହେଁ ଅପ୍ରମିତ ପ୍ରସଙ୍ଗ ଜାଣେ
ଅଙ୍ଗେ ବେ ମୋଟ ଥନ୍ତିଲ୍ ପେଟ ରୁପରେ ଲେଖା ଜାଣେ ।
ଅଠର ପାଆ ଭୁଜ କା ବାହ୍ୱା ବୃଷାଳ ଚେବ ଛାତି
ଅଳକେ ଶକା ଦିବ୍ୟ ପଇତା ଘେନ ସେ ପୂଜ୍ୟ ଅତି । ୧୪ ।
ଅଂଶେ କୁଳୀନ ବେଶେ ମଳନ ହେଲେ ସେ ବଦ୍ୟମାନେ
ଅଗ୍ରରେ ପୂଜ୍ୟ ହୋଇଲେ ଦ୍ୱିଜ ଅଇଲେ ସୁଖାସନେ ।
ଅଇଲ ରଙ୍ଗ ଅଧରେ ନାଗବଲ୍ଲୀ ବଡ଼ା ବେ ଖାଇ
ଅଣ୍ଟାରେ ଝୁଲ୍ ଭୁଷ୍ଠ ବେ ଫୁଲ୍ ଗୁଲଇ ଦୋହଲାଇ । ୧୫ ।
ଅନକ୍ଷରନ୍ତୁ ବେ ବସ୍ତ୍ର ବୃକ୍ଷ ଦୁଅଇ ଚେର ଚେର
ଅଙ୍କମଣ୍ଡଳୀ ଖୋଜା ସେ ମିଳ ସ୍ନେହାନୁପରସ୍ପର
ଅନେକ ମତେ ବସ୍ତ୍ରେ ଏମନ୍ତେ ପ୍ରବେଶ ହେଲେ ଆସି
ଅବକଳନା କରନ୍ତେ ଲକ୍ଷେ ହେଲେ ସେ ସବ ମିଶି । ୧୬ ।
ଅନାଇଁ ଲକ୍ଷ ସୁବର୍ଣ୍ଣ ଦକ୍ଷ ଧାତା ଦେବାକୁ କଲେ
ଅପାନ୍ର ପାନ୍ର ବଗୃହ ମାନ୍ର ଦେବ ତା ପାନ୍ର ବୋଲେ ।
ଅର୍ଜ୍ଜି ସୁଗୁଣ ପୂଜ୍ୟ ନିପୁଣ ଦ୍ୱିଜମାନେ ଯେ ଥିଲେ
ଅଣାଇ ପାଞ୍ଚ ଜଣରେ ତାଙ୍କୁ ଦଶ ସୁବର୍ଣ୍ଣ ଦେଲେ । ୧୭ ।
ଅତି ସୁଧୀର କୁଳୀନ ବର କରୁଣ ବବେଚନା
ଅଥଏ ଦଶ ଜଣରେ ଦଶ ପଞ୍ଚ ସେ ଦେଲେ ସୁନା ।
ଅଂଶ ଅଂଶକେ ବଦ୍ୟ ଅଟେ ବେ ଦେଉଁ ବଦ୍ୟାରେ କ୍ଷମ
ଅଷ୍ଟ ଦ୍ୱାଦଶ ଜଣେ ଏହାଙ୍କୁ ଦେଲେ ସେ ଦଶ ହେମ । ୧୮ ।

---

୧୭ । ପାନ୍ର—ଅମାତ୍ୟ ।

ଅବଦ୍ୟମାନ କର୍ମେ ନନ୍ଦନ ଅଚେନ୍ତ ବପ୍ରବଣ୍ଟ,
ଅଠର ବାର ଜଣେ ତାଙ୍କର ଦେଲେ ସେ ଦଶ ସ୍ୱର୍ଣ୍ଣ ।
ଅମଳେ ଲକ୍ଷ ସୁବର୍ଣ୍ଣ ଲକ୍ଷ ବପ୍ରେ ଏ ରୁପେ ଦେଲେ
ଅଧିକ ଗୁଣା କରି ଏ ମାନ ଗୃହ ପ୍ରକାରେ ନେଲେ । ୧୯ ।
* ଅନୁଜ୍ଞା ଏଣୁ ଦକ୍ଷ ବଧାତା କଲେ ମନ୍ତ୍ରୀଙ୍କି ଗୃହୁଁ
ଅନୁକ୍ରମେ ଏ ସ୍ୱର୍ଣ୍ଣ ଦେ ଦେଦେ ନେଲେ ତା କହୁ ରୁହୁ ।
ଅମର-ଲତା ସମାନ ଦାତା ହୋଇଲେ ପ୍ରଜାପତି
ଅଧିକ କରି ବାଞ୍ଛାକୁ ପରି-ପୂରିତ କଲେ ମତି । ୨୦ ।
ଅହ ଅମର ମନୁଜ ପୂରି ପରିଲ ତାର ଯଶ
ଅମ୍ବୁଦ ବାଳ ଶେଷେ ଉଜ୍ଜ୍ୱଳ ଯେମନ୍ତ ତାମ୍ରଈଶ ।
ଅଷ୍ଟଦିକ୍‌ପତିଗଣେ ଆହୁତ ହିଅନ୍ତି ଯଥୋଚିତେ
ଅବଲଳନା ନୋହେ ସୁମନା ଅଦ୍ୟ ଆହୁତ ହେତେ । ୨୧ ।
ଅନୁକ୍ରମରେ ଦ୍ୱିଗୁଣ ଦରେ ହିଅନ୍ତି ବେଢ଼ି ହେଲେ
ଅଚେ ପ୍ରମିତ ପଦ୍ଧର ଶତ ତରଶ ମିଶି ଠୁଳେ ।
ଅନେକ ଦୂର ଦେଶର ନର ଅଇଲେ ଯାଗ ଦେଖି
ଅନାଇ ସ୍ଥାନ ସମ୍ଭାର ମାନ ମାନସ ହୋଏ ସୁଖୀ । ୨୨ ।
ଅବୁରାଗରେ କାନ୍ତ ଆଗରେ ବନୟୁଷ୍ପବେ କହୁ
ଅଇଲେ ସତୀ ପିତାବସତି ଯାଗ ଦେଖିବା ପାଇଁ ।
ଅଷ୍ଟଲୋଚନ ତାର ନିଧନ କରିଛୁ ବିରଚନା
ଅନାଇ ସୁତା ସେ ଦକ୍ଷଧାତା ନ କଲେ ସମ୍ଭାବନା । ୨୩ ।
ଅଙ୍ଗ କୁଶଳ କାନ୍ତ ମଙ୍ଗଳ ବାର୍ତ୍ତା ପୁଚ୍ଛିଲେ ନାହିଁ
ଅଙ୍ଘ୍ରିକ୍ଷାଳନ ନିମିତ୍ତେ ବନ ଦାନ ନ କଲେ କେହୁ ।
ଅସମ୍ଭାବନା ପାଇ ଅଙ୍ଗନା କ୍ରୋଧରେ ଜରଜର
ଅନଳକୁଣ୍ଡେ ପଡିଲେ ଗୃଣ୍ଡେ ସୁନ୍ଦରୀ ନାଗ୍ରୀବର । ୨୪ ।
ଅପୂର୍ବ ରୀତି ଦେଖି ସନ୍ତ୍ରାସ ହୋଇଲେ ଋଷିଗଣ
ଅମରବୃନ୍ଦ ଭଜିଲେ ମନ୍ଦଗ୍ରୀବକୁ ତତକ୍ଷଣ ।
ଅଚେଖିଦ୍ୟୁତ ଋତୁନୃପତି ଅନ୍ତର ହେଲେ ଯଥା
ଅଚିରେ ଶାଳା-ଶୋଭା ଦିଶିଲା ଅତି ବିକୃତ ତଥା । ୨୫ ।

---

* ଚିହ୍ନିତ ପଦଟି ପ୍ରକ୍ଷିପ୍ତ ପରି ବୋଧ ହେଉଛି ।

୨୨ । ଅଚେଖିଦ୍ୟୁତ—ବନର ଶୋଭା । ଋତୁନୃପତି—ବସନ୍ତ ।

ଅଖିଳ ଲୋକମୁଖରେ ତାକ ଶୁଣିଲୁ ପ୍ରଜାପତି
'ଅଗ୍ନିଷ୍ଟୋମରେ କି ଅଧର୍ମରେ ହେଲା ମୃତ୍ତା ମତି ।
ଅବନା ଅନଙ୍ଗ ହରିକର ସମସ୍ତ ବଳକୁଳ ସହିତର ?
ଅଘପ୍ରକର ଖଣ୍ଡ ସନ୍ଧର ବଳଭଦ୍ରର ହର । ୨୬ ।

---

# ଚତୁର୍ଥ ଛାନ୍ଦ

## ଯାଗଧ୍ୱଂସ ଓ ଦକ୍ଷବଧ

### ରାଗ—ରସକୁଲ୍ୟା

ଅତି ସୁମନେ ଶୁଣ ହେ ସୁଜନେ
ଅମ୍ବିକା ଦଗ୍ଧ ହେବାର ଦହନେ
ଅନ୍ଧକ-ଅସୁର-ଅରିର ଶୁଣି
ଅନଳରେ ଘୃତ ପଡ଼ିଲା ଜାଣି ସେ
ଅତି କୋପମତି ହେଲେ ଯେ
ଅଣୁହାଶ ବାତ— ବତ ଆତଯାତ
ନିଃଶ୍ୱାସ-ମରୁତ କଲେ ସେ । ୧ ।
ଅନାଇଁ ଅନାଇଁ ଓଷ୍ଠ କମ୍ପିଲା
ଅଙ୍ଗ ଅତ୍ୟନ୍ତ ଥରଥର ହେଲା
ଅରବିନ୍ଦ-ମୁଖ ନିମିଷକରେ
ଅନେକ ଚଣ୍ଡକର ତେଜ ଧରେ ସେ
ଅକ୍ଷି ଅନଳ ପ୍ରଜ୍ୱଳ ଯେ
ଅରୁଣତା ଫାଟି— ପଡ଼ୁଅଛୁ କୋଟି
କୋଟି କ୍ରୋଧ ହୋଇ ଠୁଳ ଯେ । ୨ ।
ଅତି ବିକଟେ ଦନ୍ତ ରଡ଼େ ରଡ଼େ
ଅସ୍ଥି ଅଙ୍ଗରେ ଫୁଟେ ମଟେ ମଟେ
ଅଧରଦେଶ ଦଶନରେ ଚୁପି
ଅଟ୍ଟେନ୍ତ ବିକଟାଳ କାଳରୂପୀ ସେ

---

୨୬ । ମୃତ—ମରଣ ।

୪ର୍ଥ ଛାନ୍ଦ

୧ । ଦହନେ—ଅଗ୍ନିରେ । ୨ । ଚଣ୍ଡକର—ସୂର୍ଯ୍ୟ ୩ । ଦଶନରେ—ଦାନ୍ତରେ ।

ଅନୁଚରେ ପଠାଇଲେ ଯେ
ଅନ୍ୟ ଲୋକେ ଧୂର୍ତ୍ତ ତାର ତେତେ ବଳ
ମହାକାଳେ ନ ରହିଲେ ସେ । ୩ ।

ଅଗ୍ରଭାଗେ ଉଭା ହେବାକୁ କ୍ଷମ
ଅଷ୍ଟ ଦିଗପାଳ ଆଦିତ୍ୟ ସୋମ
ଅବ୍ଜଭବ ଅନନ୍ତ ତ ନୁହନ୍ତି
ଅନନ୍ତା ଦେଖି ଚଳି ଅଛ ସ୍ଥିତ ସେ
ଅମରପୁର ଟଳିଲା ଯେ
ଅନିଳ ନ ବହୁ ସ୍ଥିର ହୋଇ ରହୁ
ଅମ୍ବୁନିଧି ଉଚ୍ଛୁଳିଲା ଯେ । ୪।

ଅମାନ ପରଚଣ୍ଡ କ୍ରୋଧବଶେ
ଅବତୀର୍ଣ୍ଣ ହେଲା ଏକ ପୁରୁଷେ
ଅନୁରୂପ ତାକୁ ଉପମା ନାହିଁ
ଅନ୍ତକର ଭୟଙ୍କର ଅଟଇ ସେ
ଅଗ୍ରଦେଶେ ଉଭା ହେଲା ଯେ
ଅନୁଜ୍ଞା କର ମ— ହେଶ୍ୱର ତାହାର
ଅସୁ ଆଣିବ ବୋଇଲା ଯେ । ୫ ।

ଅନାଇ ତାକୁ ଗଉରୀ-ରମଣ
ଅନୁଜ୍ଞା କଲେ ବୀରଭଦ୍ର ଶୁଣ,
ଅଦ୍ୟ ଦକ୍ଷ ପ୍ରଜାପତିକି ମାର
ଅବିଲମ୍ବେ ତା' ଯାଗ ନାଶକର ସେ
ଅସିତକଣ୍ଠ ବଚନେ ଯେ
ଅନିଳରୁ ବେଗ ଚଳିଲା ସେ ଯାଗ—
ସ୍ଥାନେ ଅତି ରାଗ ମନେ ଯେ । ୬ ।

---

୪ । ଅବ୍ଜଭବ—ବ୍ରହ୍ମା । ଅନନ୍ତା—ପୃଥିବୀ । ଟଳିଲା—କମ୍ପିଲା । ୫ । ଅମାନ—ଅପରିମିତ, ଅଧିକ । ଅନୁରୂପ—ଯୋଗ୍ୟ । ଅନୁଜ୍ଞା କର—ଆଦେଶ ଦିଅ । ଅସୁ—ପ୍ରାଣ । ୬—ଅସିତକଣ୍ଠ—ନୀଳକଣ୍ଠ, ମହାଦେବ ।

ଅନ୍ଧ କି ସେ ଭେକ-ବିଳେ ପଶିଲା
ଅଜାକୁଳ କି ଶାର୍ଦ୍ଦୁଳ ଗ୍ରାସିଲା
ଅନର୍ଥ କି ତନୁ ଧରି ଆସିଲା
ଅର୍କବାର ରୂପ କି ପ୍ରକାଶିଲା ସେ
ଅଟେ ପ୍ରଳୟ ସାଗର ଯେ
ଅନୁମାନ ହୋଏ ବୀରଭଦ୍ର ନୋହେ
ମନ୍ଦିର ସେ ଉତ୍ପାତର ଯେ । ୭ ।
ଅସ୍ତ୍ରବ୍ୟସ୍ତ ହେଲେ ଯାଗସମ୍ଭାର
ଅନ୍ୟୋଽନ୍ୟରେ ହେଲା ସମର ଘୋର ।
ଅସ୍ତ୍ରମାନଙ୍କର ଆଘାତରେ
ଅର୍କ ଲୁଚିଲେ ଅମ୍ବର ଭିତରେ ସେ
ଅନ୍ନଶେ ଗୁଣଟଙ୍କାର ଯେ
ଅସି ଗଦା ଭଲ୍ଲି କାଣ୍ଡ କୁନ୍ତ ଛେଲ
ଗତି ଅତି ଚମତ୍କାର ଯେ । ୮ ।
ଅକ୍ଷି ପଲକ-ଅବସର ମାନେ
ଅସ୍ତ୍ର ପ୍ରୟୋଗ ଅଯୁତ ଅଯୁତେ
ଅନାଇଲେ ବୁଜିପଡ଼େ ନୟନ
ଅଗୋଚର ହେଲା ପ୍ରତିନୟନ ସେ
ଅନ୍ଧକାର ବ୍ୟାପ୍ତ ହେଲା ଯେ
ଅଳ୍ପ ଅଳ୍ପ ମାତ୍ର ଆଲୋକ ସେ ଶସ୍ତ୍ର
ଝଟକିବା କରୁଥିଲା ଯେ । ୯ ।
ଅପରିମିତ ସର୍ବେ ମହାବଳ
ଅଟନ୍ତି ଦକ୍ଷ-ପ୍ରଜାପତି ବଳ
ଅନେକ ପ୍ରକାରେ ସମର କଲେ
ଅଣୁଏ ବୀରଭଦ୍ର ନ ଘୁଞ୍ଚିଲେ ଯେ
ଅଦ୍ରି କି ଲୋଷ୍ଟ୍ରେ ଭାଙ୍ଗଇ ଯେ
ଅପାର ସିକତା ବନ୍ଧ ପକାଇଲେ
ବାରିଧି କି ବନ୍ଧାଯାଇ ଯେ । ୧୦ ।

---

୮ । ଅନ୍ୟୋଽନ୍ୟରେ—ଆପଣା ଆପଣା ଭିତରେ । ୯ । ପ୍ରତିନୟନ—ପରସ୍ପର ଚାହାଁଚାହିଁ । ୧୦—ଲୋଷ୍ଟ୍ର—ଢେଲା । ସିକତା—ବାଲି ।

ଅଟ୍ଟହାସ କରି ପରକାଶ
ଅବହେଳେ ସେ ସୈନ୍ୟ କଲେ ନାଶ
ଅଗ୍ରେ ଉଭା ହୋଇ ଯୁଝିବା ପାଇଁ
ଅରହ ତାହାଁରେ ନୋହିଲେ କେହି ସେ
ଅମ୍ବୁଜବନକୁ ଯଥା ଯେ
ଅନାୟାସେ ହସ୍ତୀ ପଶି କିଏ ମନ୍ଥି
ସୈନ୍ୟେ ବୀରଭଦ୍ର ତଥା ଯେ । ୧୧ ।
ଅସିବରେ ଛିଣ୍ଡିଗଲା କା ଗଳା
ଅଣ୍ଟାଠାରୁ ବେନି ଖଣ୍ଡ କେ ହେଲା
ଅଙ୍ଘ୍ରି ଭଞ୍ଜିଲା ଗଦାରେ କାହାର
ଅନ୍ତ କୁନ୍ତରେ ହୋଇଲା ବାହାର ସେ
ଅତି ବିରୂପ କେ ଦିଶେ ଯେ
ଅନାଇଣ ପାଟି ପ୍ରସାରି ତସ୍ଫଟି
ଜୀବ ତେଜ କୃଶ ଦେଶେ ଯେ । ୧୨ ।
ଅଧରେ ଦନ୍ତକୁ ନିବଡେ ଭିଡି
ଅଛି ମରିପଡି କେ ମୁଖ ମୋଡି
ଅଳପ କା' ପିଣ୍ଡେ ଅଛି ପରାଣ
ଅନୁଭବ କରିବାକୁ କଷଣ ସେ
ଅଧେ ଛିଡିଛି କା' ଦେହୁଁ ଯେ
ଅଧାଚନ୍ଦ୍ର ଶର ବାଜଣ କାହାର
ମେଲା ହୋଇଗଲା ବୁକୁ ଯେ । ୧୩ ।
ଅମ୍ବୁଦ ଘୋର ବରଷଣ ସମ
ଅବନୀ ରକତେ ହେଲା କର୍ଦ୍ଦମ
ଅଚଳସମ ମଡା କୂଢ଼ ପରି
ଅସ୍ଥିପଳ ନୋହେ କଳଣା କରି ସେ
ଅପାର ଦୂରରୁ ଆସି ଯେ
ଅଶନ କରନ୍ତି ଶୃଗାଳ କୁକୁର
କାକ ଗୃଧ୍ରମାନ ମିଶି ଯେ । ୧୪ ।

---

୧୧ । ଅରହ—ଯୋଗ୍ୟ, ସମର୍ଥ । ୧୨ । ଅନାଇଣ···ଦଣ୍ଡେ—ଆଖି ବାଟରେ ପ୍ରାଣ ଛାଡଯାଇ ଥିବାରୁ ତପସ୍ଥି ବୃହଁନ୍ତି । ୧୪ । ଅଶନ—ଭୋଜନ । ଗୃଧ୍ର—ଶାଗୁଣା ।

ଅନବରତମାୟ୍ୟ କବନ୍ଧ ହେଲେ
ଅମରେ ଗୃହ୍ନେଁ ଚକିତ ହୋଇଲେ
ଅବନୀ ଭାର ନ ସହି ଥରିଲା
ଅହିପୁରହ୍ନେଁ କମ୍ପମାନ ହେଲା ସେ
ଅନନ୍ତ ଫଣା ଖୁଲିଲେ ଯେ
ଅନନ୍ତ ସଙ୍ଗରେ ଯୁଦ୍ଧ କଲେ ଯେତେ
କେହି ବଳେ ନ ବଳିଲେ ଯେ । ୧୫ ।

ଅଙ୍ଗୁଁ ଶିର ମୋଡ଼ି ଦକ୍ଷ ଧାତାର
ଅଗ୍ନିକୁଣ୍ଡେ ପକାଇଲେ ସତ୍ୱର
ଅନାଥ ହେଲା ତେଣୁ ଯାଗସ୍ଥଳ
ଅଚିରେ ପଳାଇଲେ ଋଷିକୁଳ ସେ
ଅଣ୍ଡଜ ରୂପକୁ ଧରି ଯେ
ଅନ୍ତର ହୋଇଲେ କେହୁଁ ଋଷି ଗଲେ
ମୃଗ ବ୍ୟାଘ୍ର ରୂପ ଧରି ଯେ । ୧୬ ।

ଅଜନ କରି ଦେଇଣ ସେ ସୃଷ୍ଟି
ଅଇଲେ ସେ ବୀରଭଦ୍ର ଲେଉଟି
ଅଖିଳନାଥ ଛାମୁରେ ପ୍ରବେଶ
ଅର୍ପିତ କଲେ ସମରସନ୍ଦେଶ ସେ
ଅନ୍ଧକାର ଦୁଃଖେ ଲୀନ ଯେ
ଅପର ସ୍ଥାନେ କ— ସ୍ତିମା ବାମା ବିନା
ଭୀମ ଭୀମ କ୍ଳେଶମାନ ଯେ । ୧୭ ।

---

୧୫ । କବନ୍ଧ—ମସ୍ତକହୀନ ଯୋଦ୍ଧା। ୧୬ । ଅଣ୍ଡଜ—ପକ୍ଷୀ ୧୭ । ଅଜନ—ଜନଶୂନ୍ୟ । ଭୀମ ଭୀମ କ୍ଳେଶ—ଭୀମ (ମହାଦେବ) ଙ୍କର ଭୀମ (ଭୟଙ୍କର) କଷ୍ଟ-ସମୂହ । 'ଭବୋ ଭୀମଃ ସ୍ଥାଣୁ ରୁଦ୍ର ଉମାପତିଃ' ।

ଅଛେ ସ୍ୱରୂପ ଭୁଜ ଚତୁର
ଅକ୍ଷି ବାଇଶ ମସ୍ତକ ଏଗାର
ଅଙ୍ଘ୍ରି ଗୋଟିଏ ଚନ୍ଦ୍ରମାନ ଦିଶେ
ଅନନ୍ତ ପାଦେ ଯା' ଶୋଭା ପ୍ରକାଶେ ସେ
ଅଚିନ୍ତ୍ୟ ମହିମା ଯାର ଯେ
ଅନାଇ ଗୁଣାଗ୍ରୀ— ତ ବ୍ରହ୍ମସ୍ୱରୂପ
ଭଣେ ଭଞ୍ଜ ନୃପବର ଯେ । ୧୮ ।

## ପଞ୍ଚମ ଛାନ୍ଦ

ଶିବାନୁଚିନ୍ତା

ସ୍ୱର—ଚିନ୍ତାକେଦାର

( ଆଦି ଯମକ )

ଅସୁମାନେ ହୋଇଲେ ଅନ୍ତର
ଅସୁନ୍ଦର ଯଥା କଳେବର
ଅଂଶୁକହୀନ ଭୁବନକର ପର—
ବାମା ବନା ଦିଶିଲେ ଶଙ୍କର ସେ ଈଶ୍ୱର । ୧ ।

---

୧୮ । ଏଠାରେ ନିର୍ଗୁଣ ବ୍ରହ୍ମ ସ୍ୱରୂପ ବର୍ଣ୍ଣନା କରଥିବାରୁ ରୂପ-ଭୁଜ-ଅକ୍ଷି-କର-ମସ୍ତକ ଇତ୍ୟାଦର ନିର୍ଦ୍ଦିଷ୍ଟ ସଂଖ୍ୟା ଦିଆଯାଇ ନାହିଁ । ଗୀତାର "ଅନେକ-ବାହୂଦର ବକ୍ତ୍ରନେତ୍ରଂ" ଇତ୍ୟାଦି ବିଶ୍ୱରୂପର ଅନୁରୂପ ।

ପଞ୍ଚମ ଛାନ୍ଦ

(ଏ ଛାନ୍ଦ ଆଦ୍ୟ ଯମକ)

୧ । ଅସୁମାନେ—ପ୍ରାଣମାନେ, ସଂସ୍କୃତରେ ପ୍ରାଣ ଶବ୍ଦ ବହୁବଚନ । ପଞ୍ଚପ୍ରାଣ ସର୍ବଜନବିଦିତ; ଯଥା —ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ । ନିମ୍ନୋକ୍ତ ପ୍ରକାରେ ପ୍ରାଣୀ ଶରୀରରେ ଏମାନଙ୍କର ଅବସ୍ଥିତି ।

ହୃଦି ପ୍ରାଣୋ ଗୁଦେଽପାନଃ ସମାନୋ ନାଭିସଂସ୍ଥିତଃ
ଉଦାନଃ କଣ୍ଠଦେଶେ ସ୍ୟାତ୍ ବ୍ୟାନଃ ସର୍ବଶରୀରଗଃ ।

ଅଂଶୁକହୀନ—କିରଣ (ତେଜ) ରହିତ, କାନ୍ତିହୀନ, ନିସ୍ତେଜ । ଭୁବନକର—ଚନ୍ଦ୍ର ।

ଅଙ୍ଗହୀନ ଶରେ ହୋଇ ହୀନ
ଅଗଣରେ ବୋଲନ୍ତି ରେ ଧନ
ଅଗ ଅଗରେ ବସାଇ ଛାଡିଦେଲୁ—
ମୂଳ ମୂଳ କରି ମୋ ନିଧନ ରେ ଅଙ୍ଗନା । ୨ ।
ଅରବିନ୍ଦବଦନା ରମଣି
ଅରହ ତୁ ମୁଁ ଏଥିକି ପୁଣି
ଅରକ୍ଷିତ ପରି ପରିଣତେ କରି—
ଗଲୁ କରୁ କରି ନୃପମଣି ରେ ଅଙ୍ଗନା । ୩ ।
ଅଧମ ମୁଁ ନ ମରିବି ମିତ
ଅଧରୁ ତୋ ପିଇଛି ଅମୃତ
ଅଧର୍ମକୁ ଡର ନ କରି ସୁନ୍ଦରି
ଦରକଣ୍ଠି କରୁ ଏଡେ କୃତ୍ୟ ରେ ସୁନ୍ଦରୀ । ୪ ।
ଅନ୍ତ ନୁହଇ ତୋ ଭାବ ସଖି
ଅନ୍ତଃକରଣ ତହିଁକି ସାକ୍ଷୀ
ଅନ୍ତର ହୋଇବା ଜାଣିଥିଲେ ଅବା
ଆଣି ହୃଦୟରେ ଥାନ୍ତି ରଖି ରେ ସୁନ୍ଦରୀ । ୫ ।
ଅଖିଳରେ ତୋ ଶୋଭା ସମାନ
ଅକ୍ଷି ଦେଖି ନାହିଁ ପ୍ରାଣଧନ
ଅକ୍ଷୀଣନିତମ୍ବା ପୀନସ୍ତନୀ ରମ୍ଭା—
ଧନ୍ୟ ଧରଣୀ ଶିରମଣ୍ଡନ ରେ ସୁନ୍ଦରୀ । ୬ ।
ଅଙ୍କୁରିତ ଯଉବନେ ତୋତେ
ଅଙ୍କୁ ନ ଛାଡଇ ଅନୁବ୍ରତେ
ଅଙ୍କୁଶ ନ ଥିଲା ହସ୍ତୀ ପ୍ରାଏ ହେଲା
ଏବେ ମାର ମାରିବାକୁ ମୋତେ ରେ ସୁନ୍ଦରୀ । ୭ ।

---

୨ । ଅଙ୍ଗହୀନ—କାମ । ଅଗ—ନଗ ଅର୍ଥାତ୍ ବୃକ୍ଷ । ଅଗ ଅଗ—ଗଛର ଅଗ । ନିଧନ—ମୃତ୍ୟୁ ।୩ । ପରିଣତେ—ଶେଷରେ । କରିଗତି—ହସ୍ତୀ ପରି ମନ୍ଦମନ୍ଦ ଗମନ ଯେ କରେ । ୪ । ଦରକଣ୍ଠୀ—ଶଂଖକଣ୍ଠୀ ଅର୍ଥାତ୍ ଶଂଖପରି ଯାହାର କଣ୍ଠ ତିନି ରେଖାଯୁକ୍ତ । ୬ । ଅକ୍ଷୀଣ—ସ୍ଥୂଳ । ୭ । ଅଙ୍କୁରିତଯୌବନା—ମୁଗ୍ଧା ।

ଅନୁମାନ ତୋ ମନକୁ କରି
ଅନୁସରିଥାଇଁ ଛାଇ ପରି
ଅନୁଗ୍ରହ ଯେଉଁ ରୂପେ କରିଥିଲୁ
ଅନୁତାପ ଦେଲୁ ସେହିପରି ରେ ସୁନ୍ଦରି ! ୮ ।

ଅବଲୋକନ ତୋ ମୁଖ କଲେ
ଅବନୀନ୍ଦ୍ର ପଦ ପଦତଳେ,
ଅବହେଳେ ଆସି ମିଳେ ମୃଦୁହାସି,
କାଶୀ ଝାସିଥିବା ଫଳ ଫଳେ ରେ ସୁନ୍ଦରି ! ୯ ।

ଅପାର ମୁଁ ଦେଖିଅଛି ନାରୀ
ଅପାଂନିଧି ଗୁଣେ ତୁ ଚତୁରି !
ଅପାଙ୍ଗରେ ତୋର ଥିଲା ସ୍ୱର୍ଗପୁରୀ
ଅଣିମାଦି ଅଧିକାରୀ ଶିରୀ ରେ ସୁନ୍ଦରି ! ୧୦ ।

ଅପବର୍ଗଦାୟିନୀ ରତାନ୍ତେ
ଅପସରି କରି ଦିନେ ମୋତେ
ଅପଘନ ମୁକ୍ତ କରିଦେଲୁ ରକ୍ତ—
ଅମ୍ବୁଜାକ୍ଷେ ଗୃହୀଁ ଗୃହସ୍ଥିତେ ରେ ସୁନ୍ଦରି ! ୧୧ ।

ଅହଙ୍କାର କରି ଫୁଲିକାନ୍ତ
ଅହର୍ନିଶି ଦିଏ ନାନା ଦଣ୍ଡ
ଅହଲ୍ୟା ପସ୍ୱେ ହେଲି ପସ୍ୱକାୟେ
ସହି ! ହେଉଅଛି ଖଣ୍ଡ ଖଣ୍ଡ ରେ ସୁନ୍ଦରି ! ୧୨ ।

ଅରପଣ ଅଣି ଶୁଖାଇଲି
ଅରି ପରି ଧନୁ ଏକା କଲି
ଅରଷ୍ଟ ପଡିଲି କାଳ ଜାଣି ଭଲି
ଶିରଷ୍ଟନ୍ଦ୍ର-କଳା ଅଗ୍ନି ହେଲି ରେ ସୁନ୍ଦରି ! ୧୩ ।

---

୧୦ । ଅପାଂନିଧି—ସମୁଦ୍ର । ୧୧ । ଅପବର୍ଗ— ଧର୍ମ, ଅର୍ଥ, ମୋକ୍ଷ ଓ କାମ । ଅପସର—ତଡ଼ିଆ । ଅପଘନ—ଦେହ । ଅମ୍ବୁଜାକ୍ଷେ—ପଦ୍ମସଦୃଶ ସୁନ୍ଦର ଆଖିରେ । ୧୨ । ଅହଲ୍ୟା ପସ୍ୱଏ—ପଥର ପରି । ୧୩ । ଅରପଣ—ଶର୍ପଣ । ଅରି ପରି—ଚକ ପରି, ଧନୁକୁ ଆକର୍ଷଣ କରିବାଦ୍ୱାରା ଚକ ପରି ବୃତ୍ତାକାର କରିବା ଶିର...ହେଲି—ବିରହ ହେତୁ ଶିରରେ ଥିବା ଚନ୍ଦ୍ର ମଧ୍ୟ ଅଗ୍ନି ପରି ତାପ ଦେଉଛି

ଅଧନ କି ନୋହିଲା ଦକ୍ଷର
ଅଧ ପ୍ରାଣ ମୋ କଲା ଅନ୍ତର
ଅଜ୍ଞକ ବଇରୀ ହୋଇ ଏବେ ଧର—
ପାରୁ ନାହିଁ ନିଜ କଳେବରରେ ସୁନ୍ଦର ! ।୧୪।

ଅବଜାନନୀ ସୁଗୁଣ ଚଏ
ଅବସରେ ସେ ଚିନ୍ତା କରନ୍ତେ
ଅବଧି ପର ଘୋଟିଲା କାମ-ତମ
ନାହିଁ ଅବଧି ତାହାର କେତେ; ଏ ସମୟେ ।୧୫।

ଅନ୍ଧକାର ଦିଶିଲା ସଂସାର
ଅଧଇର୍ଯ୍ୟ ହେଲେ ଅତି ଘୋର
ଅଧମଧ୍ୟସୁର-ପୁରେ ସେ ଠାକୁର
ଛାଡ଼ି ଧଇର୍ଯ୍ୟ ହେଲେ ସତ୍ୱର; ସେ ଈଶ୍ୱର ।୧୬।

ଅଚିନ୍ତିତ ଶକ୍ତି ଅଟେ ଯାର
ଅଚଳିତ ହେଲେ ସେ ଈଶ୍ୱର
ଅଚିରେ ଭୁବନ ଧରିଲୁ ଗମନ
କଲେ ତପ କାର୍ଯ୍ୟେ ତତଃପର;ସେ ଶଙ୍କର ।୧୭।

ଅସାର ଏ ଘେନିଲେ ସଂସାର
ଅଶାନ୍ତତା ଚିତ୍ତୁ କଲେ ଦୂର
ଅସାଧାରଣ ତପସ୍ୟା ଆରମ୍ଭିଲେ
ନାନା ସୁଖ ତେଜି ନବଦ୍ୱାର; ସେ ଶଙ୍କର ।୧୮।

ଅଚଳରେ ବୃଦ୍ଧ-ସିଦ୍ଧସ୍ଥାନେ
ଅଚଳରେ ବସି ଯୋଗାସନେ
ଅଚକ୍ଷୁ-ନାସା-ଶ୍ରବଣ-ରୂପ-ଗୁଣ
ସ୍ଥୂଳ ସୂକ୍ଷ୍ମ ଯେ ଆନନ୍ଦ ଧ୍ୟାନେ; ସେ ଶଙ୍କର ।୧୯।

---

୧୪ । ଅଧନ—ନିଧନ, ମୃତ୍ୟୁ । ଅଧପ୍ରାଣ—ଅର୍ଦ୍ଧାଙ୍ଗ ହେତୁରୁ ଅଧ ପ୍ରାଣ ।୧୫। ଅବ୍ଜମୁଖ—ଅବ୍ଜ ବା ଚନ୍ଦ୍ର ସଦୃଶ ଯାହାର ମୁଖ । ଅବଧି—ଅବ୍ଧି ବା ସମୁଦ୍ର । କାମତମ—କାମ ହେତୁକ ଅଜ୍ଞାନତା । ଅବଧି—ସୀମା । ୧୬ । ଅଧ ମଧ୍ୟ ସୁର-ପୁରେ—ପାତାଳ, ମର୍ତ୍ତ୍ୟ ଓ ସ୍ୱର୍ଗରେ । ୧୯ । ଅଚଳରେ—ପର୍ବତରେ । ଅଚଳରେ—ନିଶ୍ଚଳରେ । ଅଚକ୍ଷୁ ଇତ୍ୟାଦିଦ୍ୱାରା ବ୍ରହ୍ମାଙ୍କର ନିରାକାରତା ପ୍ରତିପାଦିତ ।

ଅବନୀଶ ବଳଭଦ୍ର ମନ
ଅବଶ୍ୟ ତ ଜାଣନ୍ତି ଈଶାନ
ଅବଜ ପଦଦ୍ୱନ୍ଦ୍ୱ ବିନା ତାଙ୍କର
ମୋର ଶରଣ ତ ନାହିଁ ଆନ ହେ ଶଙ୍କର ! ୨୦ ।

---

## ଷଷ୍ଠ ଛାନ୍ଦ

### ହିମାଳୟ-ବର୍ଣ୍ଣନା ଓ ଅମ୍ବିକାଜନ୍ମ

ରାଗ—କୁମ୍ଭକାମୋଦୀ

ଅଥ ସୁମନେ ଶୁଣ ସୁମନେ ମାନସମାଦକ-ରସ
ଅଲଗା ହୋଇ ଯିବ ପଳାଇ ଭବ-ଭବ-ଭୟ-କ୍ଳେଶ । ୧ ।
ଅଚଳକୁଳ-ଅବନୀପାଳ ହିମବନ୍ତ-ନଗ ନାମ
ଅତି ଉନ୍ନତ ଅପରିମିତ-ଆୟତନ ଅନୁପମ । ୨ ।
ଅନେକ ତରୁ-ଲତାରେ ଗିରି ନୟନ ଆନନ୍ଦକର
ଅଟେ ପାତାଳ ସ୍ୱର୍ଗ ଭୂତଳ ଯେଣୁ ଶୋଭି ନାଗେଶ୍ୱର । ୩ ।
ଅମର ଲତା ରମ୍ଭା ଶୋଭିତା ଉଚ୍ଚଗୁଣେ ସ୍ୱର୍ଗପୁର
ଅମୃତପୂର ମୀନ ମକରକେତନ ସ୍ଥାନ ସାଗର । ୪ ।

---

### ଷଷ୍ଠ ଛାନ୍ଦ

୧ । ଭବ-ଭବ-ଭୟକ୍ଳେଶ—ଭବ (ସଂସାର)ରେ ଭବ (ଜନ୍ମ) ହେଲେ ଯେଉଁ ଭୟ ଓ କଷ୍ଟ ହୁଏ ।

୨ । ଅଚଳକୁଳ—ଅବନୀପାଳ—ପର୍ବତମାନଙ୍କର ରାଜା । ହିମବନ୍ତ ନଗ—ହିମାଳୟ ପର୍ବତ ।

୩ । ନାଗେଶ୍ୱର—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ପୁର ସଙ୍ଗେ ହିମାଳୟର ତୁଳନା କରାଯାଇଅଛି । ପାତାଳରେ 'ନାଗେଶ୍ୱର' ବାସୁକି, ସ୍ୱର୍ଗରେ 'ନାଗେଶ୍ୱର' ବା ନାଗ (ହସ୍ତୀ) ଈଶ୍ୱର ଐରାବତ ଓ ମର୍ତ୍ତ୍ୟରେ 'ନାଗେଶ୍ୱର' ବୃକ୍ଷ ଥାନ୍ତି ।

୪ । ହିମାଳୟ ପକ୍ଷେ—ଅମରଲତା—ଯେଉଁ ଲତା ମରେ ନାହିଁ ବା ଯାହା ବ୍ୟବହାରରେ ଲୋକେ ଅମର ହୁଅନ୍ତି । ବନୌଷଧି ବିଶେଷ ।

ଅଶୋକ ବେଲ-ନୀପ ପାଟଳୀ କରଞ୍ଜାର କଣିଅର
ଅସିତ ମଲ୍ଲୀ କୁନ୍ଦ ନିଆଳୀ ପାରିଜାତକ ତଗର । ୫ ।
ଅର୍ଜୁନ ଶାଳ ଧବ ତମାଳ ଖଦିର କପିତ୍‌ଥ ବେଲ
ଅସନ ନିମ୍ବ ଜମ୍ବୁ କଦମ୍ବ କରମଙ୍ଗା ପିଆଶାଳ । ୬ ।
ଅମ୍ବେଁଲା ନାଗରଙ୍ଗ ପୁନାଙ୍ଗ କମଳା କରୁଣା ତାଳ
ଅଛୁ ହେନ୍ତାଳ ଜମ୍ବୀର ଜାଳ ଲେମ୍ବୁ ପନସ ରସାଳ । ୭ ।
ଅମ୍ଳକ ଦାରୁ ବଦାମ ତରୁ ଲଲିତ ଲବଙ୍ଗ ଲତା ।
ଅଳାଇଚର ତରୁ ଅପାର ଜାତିଫଳ ଅଗଣିତା । ୮ ।
ଅନିଶେ ଯହିଁ ଅଛନ୍ତି ରହି ଷଡ଼ଋତୁ ଏକମେଳେ
ଅଳି ଝଙ୍କାର କୋକିଳଗିର ଶୁକସାରୀ କୁତୂହଳେ । ୯ ।
ଅନଙ୍ଗରସ ଅଛୁ ବଶେଷ ମୂର୍ତ୍ତିବନ୍ତ ହୋଇ ଯହିଁ
ଅଙ୍ଗନା-ଲଜ୍ଜ ପୁରୁଷ-ଧୈର୍ଯ୍ୟ ଗୃହୁଁ ଗୃହୁଁ ହୋଏ ବହି । ୧୦ ।
ଅଷ୍ଟାଙ୍ଗ ଯୋଗ ଅତନୁଭୋଗ ଅଷ୍ଟସାଧନ ମୁକତ
ଅଟେ ଯା ମନ ଯହିଁ ମଜ୍ଜନ ଲଭଇ ସେ ସେହି ମତ । ୧୧ ।
ଅପରିମିତ ଗୁଣ ପର୍ବତ ଅଛୁ ପୁଣି ଦିବ୍ୟ ମୂର୍ତ୍ତି
ଅଟେ ଅଙ୍ଗନା ତାହାର ମେନା ସୁନ୍ଦରୀ ଗୁଣବତୀ । ୧୨ ।
ଅଞ୍ଜନକେଶୀ ଖଞ୍ଜନଦୃଶୀ କୁନ୍ଦନନନ୍ଦନ ଗୋରୀ
ଅରି-ନିତମ୍ବା ପ୍ରବାଳବିମ୍ବାଧରୀ ପୀନପୟୋଧରୀ । ୧୩ ।
ଅନଙ୍ଗରସେ କାନ୍ତ ସଙ୍ଗେ ସେ ରସି ହରେ ଦିନରାତି
ଅମ୍ବୁଜାସନ ଯୋଗେ ପ୍ରସନ୍ନ-ମୁଖୀ ହେଲା ଗର୍ଭବତୀ । ୧୪ ।

---

ସ୍ୱର୍ଗପକ୍ଷେ—ଅମରଲତା—କଳ୍ପଲତା । ରମ୍ଭା—ଅପ୍‌ସରା ।

ହିମାଳୟ ପକ୍ଷେ—ଅମୃତପୁର—ଦେବତାମାନଙ୍କ ଗୃହ । ମୀନମକର କେତନ—କନ୍ଦର୍ପର ସ୍ଥାନ ।

ସାଗର ପକ୍ଷେ—ଅମୃତପୁର—ଜଳପ୍ରବାହ । ମୀନମକରକେତନ—ମାଛ ଓ ମଗରମାନଙ୍କ ବାସସ୍ଥାନ ।

୮ । ବଦାମ ତରୁ—ପିଜୁଳି ଗଛ । କେନ୍ଦୁଝରରେ ପିଜୁଳିକୁ ବଦାମ ବୋଲି ଅଦ୍ୟାପି ଲୋକେ କହୁଥାନ୍ତି । କୁନ୍ଦନନନ୍ଦନଗୋରୀ—ସ୍ୱର୍ଣ୍ଣକାନ୍ତିଜିଣା ଗୌରାଙ୍ଗୀ । ଅରିନିତମ୍ବା—ଯାହାର ନିତମ୍ବ ଦେଶ ଚକ୍ରାକାର ।

୧୪ । ଅମ୍ବୁଜାସନ ଯୋଗେ—ଦୈବଯୋଗେ ।

ଅଳସ ତନୁ ଦିନକୁ ଦିନୁ ରତିରେ ସେ ହେଲା କ୍ଷୀଣ
ଅର୍ଦ୍ଧ ଚନ୍ଦ୍ରମା ପରାଏ ବାମା ଦିଶିଲା ପାଣ୍ଡୁର ବର୍ଣ୍ଣ । ୧୫ ।
ଅମ୍ଳିକ *ରସ ଦ୍ରବ୍ୟେ ଆବେଶ ହୋଇ ଭକ୍ଷେ ଇଷି ଇଷି
ଅପସରରେ ଆଉଜିବାରେ ବିନା ନ ପାରଇ ବସି । ୧୬ ।
ଅନ୍ତକେ ପଣ୍ଡ ପ୍ରବେଶେ ଅତି କଷ୍ଟରେ ହୁଅଇ ଉଭା
ଅଙ୍ଗକୁ ସ୍ଥୂଳ ଭାବେ ମଞ୍ଜୁଳ ଉଦର ଦିଶଇ ଶୋଭା । ୧୭ ।
ଅଳ୍ପକୁ ଅଳ୍ପ ଅତି ଦୁର୍ବଳ ହେଲା ସେ ରମଣୀ କାଏ ।
ଅଷ୍ଟମ ବେଳ ମାସେ କାମିନୀ ଜାତକଲା ଦୃହ୍ନତାଏ । ୧୮ ।
ଅମୃତ କାଳ ଗ୍ରହସକଳ ରହିଛନ୍ତି ଉଚ୍ଚ ହୋଇ
ଅଷ୍ଟାଙ୍ଗବର୍ଗ-ସାଧନେ ଯୋଗ ସର୍ବ ଶୁଭ ଅଚ୍ଛ ତହିଁ । ୧୯ ।
ଅଚଳଚୂଳଚୂଡ଼ି ଉଜ୍ଜ୍ୱଳ ବ୍ରହ୍ମକାଣ୍ଡହୀରା ବାମା
ଅଚଳ-କୋଳ-ସରଃ-କମଳ ଅଖିଳ ଆନନ୍ଦ ସୀମା । ୨୦ ।
ଅବକାଶନ ତିନିଭୁବନ-ଶୋଭାମାନ ବାଛି ଆଣି
ଅବା ନିର୍ମାଣ କଲା ହରଣଧର-ଶିର-ମୋହ-ମଣି । ୨୧ ।
ଅଖିଳଆକ୍ଷି ଚଞ୍ଚଳ ପକ୍ଷୀ ବାନ୍ଧିବାକୁ ମୋହପାଶ
ଅଥବା ଲୋକ-ଧୃତି-ବିବେକ-ଗିରି-ଅଶନି ପ୍ରକାଶ । ୨୨ ।
ଅବା ବାହୁର ହୀରକସାର ଖେଳଧିତନପିତୁଳୀ
ଅମରପୁର ଶୋଭାଭଣ୍ଡାର ମହୀକି ଅଇଲା ଚଳି । ୨୩ ।
ଅନଙ୍ଗ ଶିବଦେବ ଜିଣିବ କଲା ଏ ବାଣ ନିର୍ମାଣ
ଅବନୀ ତମଃ ନାଶେ ଉତ୍ତମ ଦୀପ କି ଦେଲା ଦ୍ରୁହିଣ । ୨୪ ।

---

୧୯ । ଅଷ୍ଟାଙ୍ଗ ବର୍ଗ—ଅଷ୍ଟବର୍ଗ ଜ୍ୟୋତିଃଶାସ୍ତ୍ର ପ୍ରସିଦ୍ଧ ।

୨୧ । ହରଣଧରଶିରମୋହମଣି—ହରଣଧର (ଶଶାଙ୍କ ବା ଚନ୍ଦ୍ର) ଯାହାଙ୍କ ଶିରରେ ଅର୍ଥାତ୍ ଶିବ । ତାଙ୍କ ମୋହ (ମନ ଭୁଲାଇବା) ପାଇଁ ମଣିସ୍ୱରୂପା । ଅଖିଳ-ଲୋକ-ଧୃତିବିବେକ-ଗିରି ଅଶନି—ଜଗତର ଲୋକମାନଙ୍କର ଧୈର୍ଯ୍ୟ ଓ ବିବେକ ରୂପକ ପର୍ବତକୁ ନାଶ କରିବା ପାଇଁ ବଜ୍ର ସଦୃଶ ।

୨୩ । ବାହୁର—ବିଧାତାର । ୨୪ । ଦ୍ରୁହିଣ—ବ୍ରହ୍ମା ।

* ଅଳପ ରସ [ଖ]

ଅବଳ-ଶୋଭା ନାଶି ଏ ଅବା ଅକଳଙ୍କ ଶଶୀ ଉଦେ
ଅବା କେଳତ ରମ୍ଭାଦି କାନ୍ତ ଖଣ୍ଡି ଏ ଜନ୍ମିଲା ବାଦେ ।୨୫
ଅନେକ ଦାନ-ପୁଣ୍ୟବିଧାନ କରି ହିମବନ୍ତ ରାଏ
ଅବଲୋକନ କରି ବନ୍ଧନ ନାଭି-ଛେଦନ କରାଏ । ୨୬ ।
ଅପର ଛାନ୍ଦେ ବର୍ଣ୍ଣିବା ମୁଦେ ବାଳକା-ବାଳକ-ଲୀଳା
ଅବନୀପାଳ ଭଞ୍ଜର ନୀଳକଣ୍ଠ ଭବନଦୀଭେଳା । ୨୭ ।

---

## ସପ୍ତମ ଛାନ୍ଦ

ବାଳଲୀଳା ବର୍ଣ୍ଣନ

ରାଗ—ରାମକେରୀ

ଅହ ଶୁଦ୍ଧମନେ ସୁଜନେ ଶୁଣ କୁତୁକ ରସ
ଅଚଳ-ଦୁଲାଳୀ ବଢ଼ନ୍ତି ଦିବସକୁ ଦିବସ । ୧ ।
ଅନୁରୂପେ ଯଥାକାଳରେ କଲେ ନାମକରଣ
ଅମୂଲ୍ୟ ଅଙ୍ଗରେ ଖଞ୍ଜିଲେ ନାନା ଭୂଷଣମାନ । ୨ ।
ଅଢ଼ାଇ ମାସ ସମ୍ପୂର୍ଣ୍ଣରେ ପାଦ କର ସିଂହାଡ଼
ଅଂଶୁକ ନ ରଖନ୍ତି ଦେହେ ପୁଣି ଲେଉଟି ପଡ଼ । ୩ ।
ଅମ୍ବା ଅମ୍ବା ରବ କରନ୍ତେ ଉଚସ୍ୱରେ ରୋଦନ
ଅଙ୍କେ ଧରି ମାଏ କହନ୍ତି ଆହା ମୋ' ପ୍ରାଣଧନ । ୪ ।
ଅଣ୍ଟିଆଇଁ ଧରି ଜନନୀ କୋଳେ ଥାଇ ଶୁଆଇ
ଅଳପଛୁଁ ଅଙ୍ଗ ଗୃହିଲେ ଉଠନ୍ତି ଯେ ଚଆଁଇ । ୫ ।

---

୨୫ । କେଳତ—ରତ, କାମସ୍ତ୍ରୀ ।

---

ସପ୍ତମ ଛାନ୍ଦ

୩ । ଅଂଶୁକ—ଲୁଗା ।

ଅଗୁଣ-ପଦାର୍ଥ ଦେଖାଉଥିଲେ ଅତି ରହସେ
ଅଙ୍ଗ୍ର ଭିଡ଼ ଗୁଳ ପଟିଲେ ଖେଳୁଥାନ୍ତି ଭଲ ସେ । ୬ ।
ଅଙ୍ଗୁଷ୍ଠ ଅଙ୍ଗୁଳିପଦରେ କରୁଥାନ୍ତି ଅଦନ
ଅଜାଗେ ସ୍ଖଳନ ହୁଅନ୍ତେ କରନ୍ତି ଯେ ରୋଦନ । ୭ ।
ଅପସରକୁ ଆଉଜାଇ ଦେଉଥାନ୍ତି ବସାଇ
ଅଗ୍ରେ କରେ କରେ କାହ୍ନ କର କର ହସାଇ । ୮ ।
ଅଧବରଷ ପରବେଶ ଅସି ଯହୁଁ ହୋଇଲା
ଅଣ୍ଟା ଡେରି ରଖି ବସିବା ହୋଇ ବଳ ପାଇଲା । ୯ ।
ଅବନୀରେ କରଭରକୁ ଦେଇ ଝୁଲୁଥାଆନ୍ତି
ଅଳପ ଅଳପ ଆଗକୁ କ୍ରମେ କ୍ରମେ ଯାଆନ୍ତି । ୧୦ ।
ଅଷ୍ଟମ ମାସ ସମ୍ପୂର୍ଣ୍ଣରେ ହେଲେ ଅଳପ ଉଭା
ଅନଙ୍ଗ କୁଟୁଣୀ ପ୍ରତିମା ପରି ଦିଶନ୍ତି ଶୋଭା । ୧୧ ।
ଅବଲମ୍ବ ଧାଈ କରକୁ କରି ଗୁଳନ୍ତି ପାଦ
ଅତି ରହସରେ ନାଚନ୍ତି କରେ କଙ୍କିଣୀ ନାଦ । ୧୨ ।
ଅଙ୍କେ ବସି ଦେଉଁ ଧାଇର ଲଭି ମହାଆନନ୍ଦ
ଅଙ୍ଗୁଳି ଗୁଳ ଆ ଆ ବୋଲି ଡାକୁଥାଆନ୍ତି ଗୁନ୍ଦ । ୧୩ ।
ଅବଦହୁଁ ଆସି କ୍ରମେ ସେ କହୁଁ କହୁଁ ପୂରିଲା
ଅନ୍ନପ୍ରାଶନ ବିଧି ଯଥାବିଧାନରେ ସରିଲା । ୧୪ ।
ଅଣ୍ଟିରି ତୋତ୍ଲ କଳକୁ ଜିଣି ଉଚ୍ଚେଷ୍ଟି କଥା
ଅଣୁଏ ନାହିଁ ଏ ମାଧୁର୍ଯ୍ୟପୀୟୂଷରେ ସର୍ବଥା । ୧୫ ।
ଅର୍ଥ ନ ଥାଇ ସେ କଥାରେ ଥାଏ ବଶୀକରଣ
ଅଳପହିଁ କଷ୍ଟେ ପଡ଼ିଲେ ନ ଚଳଇ ଚରଣ । ୧୬ ।
ଅଢ଼ାଇ ବରଷେ ବାଳକା କର୍ଣ୍ଣଭେଦ ବଢ଼ିଲା
ଅନାଇ ସେ ଛବି କବିଙ୍କ ଦୃଷ୍ଟି ସୃଷ୍ଟି ବୁଡ଼ିଲା । ୧୭ ।
ଅନୁପମେ ପାଞ୍ଚ ବରଷ ଆଳୀ ସଙ୍ଗରେ ମିଳି
ଅଗାର ଭୋଳ ନାନା ରଙ୍ଗେ ଖେଳୁଥାଆନ୍ତି ଧୂଳି । ୧୮ ।

---

୬ । ଅଙ୍ଗୁଷ୍ଠ...ଆନନ୍ଦ—ଗୋଡ଼ ବୁଢା ଅଙ୍ଗୁଳିକୁ ପାଟିରେ ପୁରାଉଥାନ୍ତି । ଅଜାଗେ—ଅଜାଣତରେ ।୧୨। ଧାଈ—ଧାଈ । ୧୪ । ଅବଦ—ଅବ୍ଦ ବା ବର୍ଷ । ୧୫ । ପୀୟୂଷ—ଅମୃତ । ୧୮ । ଅଗାର—ଘର ।

ଅନ୍ନ-ବ୍ୟଞ୍ଜନାଦି ରନ୍ଧନ ତହୁଁ କରି କଳ୍ପନା
ଅଶନ ତା ମିଛେ କରନ୍ତି ପୁଣି ପଦ୍ମଲପନା । ୧୯ ।
ଅଣ୍ଡିରି ମାଇ କଣ୍ଢେଇକି ବର୍ଭା କରିଥାଆନ୍ତି
ଅନ୍ତରେ ତାଙ୍କ କଉତୁକ ଘେନ ସୁଖ ପାଆନ୍ତି । ୨୦ ।
ଅଇଲା ସଙ୍ଗୀତ ସାହିତ୍ୟ-ପାଠ ପଠନ ମାନେ
ଅକ୍ଷି ତାଙ୍କର ନ ଗମିଲା କେଉଁ ଶବ୍ଦବଚନେ । ୨୧ ।
ଅଷ୍ଟମ ବରଷେ ସମ୍ପୂର୍ଣ୍ଣ ଶୋଭା କହି ନୋହିଲା
ଅବା ସେ ଶିବ ବିନାଶିବା ବଧୂ ବହି ବହିଲା । ୨୨ ।
ଅଖିଳ ଲାବଣ୍ୟ ବୀଜକୁ କାମ ରୋପି ଯେ ଥିଲା
ଅଙ୍କୁରିତ ହୋଇ କ୍ରମେ ସେ ଏବେ ଡାଳେ ବଢ଼ିଲା । ୨୩ ।
ଅଳପ ଦିନେ ପୁ ଷ୍ପବତୀ ହୋଇବ ଏ ବ୍ରତତୀ
ଅନେକ-ମସ୍ତକ-ମଣ୍ଡନ ହୋଇ ହରିବ ମତି । ୨୪ ।
ଅଦ୍ଭୁତ ଅତନୁରସଧି ବାଳା ଏ ନୋହେ ଛଳ
ଅବଶ୍ୟ ବଢ଼ି ବୁଡ଼ାଇବ ମହାଯୋଗୀନ୍ଦ୍ର କୁଳ । ୨୫ ।
ଅତି ଚଞ୍ଚଳେ ଖେଳ ଝସଗତି କଲେକ ରଙ୍ଗେ
ଅକ୍ଷି ଲାବଣ୍ୟ ଜଳରାଶି ମିଶି ଆସେ ତରଙ୍ଗେ । ୨୬ ।
ଅଧିକୁଁ ଅଧିକ ହେଉଛି ଶୋଭା କହିବାକଳ
ଅପୂର୍ବ ଭ୍ରମି ପ୍ରକାଶଇ ପୁଳିନହୁଁ ମଞ୍ଜୁଳ । ୨୭ ।
ଅକଳଙ୍କ ପୂର୍ଣ୍ଣଚନ୍ଦ୍ରମା ଉଦେ ଦ୍ୟୁତି ପ୍ରକାଶେ
ଅଇରାବତ ଜନ୍ମିବ ତା କୁମ୍ଭ ସଂଶୃତ ଦିଶେ । ୨୮ ।

---

୧୯ । ପଦ୍ମଲପନା—ପଦ୍ମମୁଖୀ । ୨୪ । ବ୍ରତତୀ—ଲତା । ୨୫ । ଅତନୁ ରସଧି—କନ୍ଦର୍ପ (ଶୃଙ୍ଗାର ରସ) ଆଧାର ବା ଶୃଙ୍ଗାର ସମୁଦ୍ର ଉଚ୍ଛୁଳିଲେ ଯୋଗୀନ୍ଦ୍ର କୁଳ (ଯୋଗିସମୂହ ରୂପକ କୂଳ) ବୁଡ଼ାଇବ । ୨୬ । ଚକ୍ଷୁର ଗତିକୁ ଏଠାରେ ଝସ (ମୀନ)ର ଗତି ସହିତ ତୁଳନା କରାଯାଇଅଛି । 'ପୁଳିନ' (କୂଳ) ପଦରେ ଜଘନକୁ ଲକ୍ଷ୍ୟ କରାଯାଇଅଛି । ସମୁଦ୍ରରୁ ଚନ୍ଦ୍ର ଜନ୍ମେ । ଏ ଶୃଙ୍ଗାର ସମୁଦ୍ରରୁ ମୁଖରୂପ ଅକଳଙ୍କ ଚନ୍ଦ୍ର ଉଇଁ ଆସୁଛି । ସମୁଦ୍ରରୁ ଐରାବତ ଜାତ; ଏ ଶୃଙ୍ଗାର ସମୁଦ୍ରରୁ ଐରାବତ ଉଇଁ ଆସୁଛି । ବର୍ତ୍ତମାନ ତାହାର କୁମ୍ଭର (ସଙ୍ଘା) ଚିହ୍ନ ଦିଶିଆସୁଛି ।

ଅପୂର୍ବ ହୀର ମରକତ ମୁକ୍ତା ବିଦ୍ରୁମ ଲୀଳା
ଅପାର ଜାତ କରେ ଅଙ୍ଗୁ ରତ୍ନସଦନ ବାଳା । ୨୯ ।
ଅନଙ୍ଗ ସାଧୁତ ଏ ସିନ୍ଧୁ ରସେ ବାଣିଜ୍ୟ କରି
ଅପ୍ରମିତ ସୁଖବଳେ ସେ ଜିଣିବ ଏ ବିପୁରି । ୩୦ ।

## ପ୍ରଶ୍ନୋତ୍ତର ଅନ୍ତର୍ଲପିକା

ଅନନ୍ତ କେ ଖରେ ନ ଜାଣ ହନୁ ଜାତରେ କିସ
ଅଛଇ କି ରମଣୀ ସମା ତିଳନାସା ସଦୃଶ । ୩୧ ।
ଅଙ୍ଗନାମାନଙ୍କ ମାନସ ରସି କେତି ତୋଷନ୍ତି
ଅଟେ କେ କି କଳା କେଶୀର ପର ଠାକୁର ଚନ୍ତ । ୩୨ ।
ଅଛନ୍ତି କାହିଁ ପୂର୍ଣ୍ଣଚନ୍ଦ୍ର କାନ୍ତ ଶ୍ରୀ ବଦ ନରେ
ଅହର୍ନିଶି କେ କର ଗଣ୍ଡ ପଣ୍ଡ ମହୀଙ୍କ ଧରେ । ୩୩ ।
ଅନଶେ କି ଭଜିଲେ ହୋଏ କାଳଦଣ୍ଡ ବାରଣ ।
ଅବନୀପାଳ ବଳଭଦ୍ରର କେବଳ ଶରଣ । ୩୪ ।
ଅଜ ହର ଭାରତ କାନ୍ତ କୃଷ୍ଣ’ ସମ ମୁଖରେ
ଅମ୍ବୁଜବାସୀ ବରଧୀରେ ଏହା ଘେନ ମୁଖରେ । ୩୫ ।

———

୨୯ । ହୀର ପଦରେ ନଖ ବା ହସ, ମର୍କତ ପଦରେ କେଶ, ମୁକ୍ତା ପଦରେ ଦନ୍ତ ଓ ବିଦ୍ରୁମ ପଦରେ ଅଧରକୁ ଲକ୍ଷ୍ୟ କରାଯାଇଅଛି । ଯୌବନ ଆଗମରେ ଏହି ଅଙ୍ଗମାନେ ଉଜ୍ଜ୍ୱଳ ହୁଅନ୍ତି । ଅନଙ୍ଗସାଧୁତ—କାମରୂପକ ସଉଦାଗର ।

ପ୍ରଶ୍ନ—ଅନନ୍ତ କେ ? ଉତ୍ତର—ଖ—(ଆକାଶ) ପ୍ରଶ୍ନ—ହନୁ କାତରେ କିସ (କଣ) ? ଉତ୍ତର—କୀଶ—ମର୍କଟ । ପ୍ରଶ୍ନ—କି [କଣ] ସମା [ସ୍ତ୍ରୀ]ର ତିଳ-ନାସା—ତିଳଫୁଲ ସଦୃଶ ନାକର ସଦୃଶ [ତୁଲ୍ୟ] ଅଟେ ? ଉତ୍ତର—କିରମଣି—[ଶୁକଶ୍ରେଷ୍ଠ] ପ୍ରଶ୍ନ—ଅଙ୍ଗନାମାନଙ୍କ [ସ୍ତ୍ରୀମାନଙ୍କର] ମାନସ [ମନ] କେ [କେଉଁ-ମାନେ] ରସି [ଅନୁରକ୍ତ ହୋଇ] ତୋଷନ୍ତି [ସନ୍ତୁଷ୍ଟ କରନ୍ତି] ? ଉତ୍ତର—ରସିକେତି—ରସିକମାନେହିଁ । ପ୍ରଶ୍ନ—କେ କଳା ଅଟେ କି ? ଉତ୍ତର—କେକୀ (ମୟୂର) ପ୍ରଶ୍ନ—କେ [କେଉଁ] ଠାକୁର (ଦେବତା) ଶିର ପର [ମସ୍ତକ ଉପରେ] ଅର୍ଥାତ୍—ଶ୍ରେଷ୍ଠ ? ଉତ୍ତର—କେଶୀର (କେଶୀ-ନାମକ ଅସୁରର) ପର [ଶତ୍ରୁ] ଅର୍ଥାତ୍ କୃଷ୍ଣ, ପ୍ରଶ୍ନ—କାହିଁ [କେଉଁଠାରେ] ପୂର୍ଣ୍ଣଚନ୍ଦ୍ର କାନ୍ତି—[ପୂର୍ଣ୍ଣିମା ଜହ୍ନ କିରଣ] ଶ୍ରୀ [ଶୋଭା] ଅଛି; ହେ ନରେ (ନରମାନେ) ବଦ [କୁହ] ଉତ୍ତର—ବଦନରେ [ମୁଖରେ] ।

# ଅଷ୍ଟମ ଛାନ୍ଦ

## ବୟଃସନ୍ଧି ଓ ଉତ୍ତୁ ବର୍ମବଧି

### ରାଗ–ମୁଖାରୀ

ଅତିରସମୟ ରସିକ–ନିଚୟ ଶୁଣ ଦେଇ ମନ ହେ
ଅମ୍ବିକା ତାରୁଣ୍ୟ ପ୍ରବେଶ ହୁଅନ୍ତେ ହେଲେ କି ଶୋଭନ ହୋ ।
ଅହିନରସୁରପୁରପଟାନ୍ତର ହୋଇ ନାହିଁ କିଛି ଯେ
ଅଖିଳ ଲାବଣ୍ୟରାଶି ଆସି ମିଶି କି ଠୁଳ ହେଉଛି ଯେ । ୨ ।
ଅଙ୍କୁରିତ ହୋଇବାରୁ ସ୍ତନଦୁଇ କି ଶୋଭା ଦିଶଇ ଯେ
ଅଙ୍ଗ–ସରସୀରେ ସରସିଜ କଢ଼ି ଧରିକି ଆସଇ ଯେ । ୩ ।
ଅପୂର୍ବ ବାଟୁଳି ହରିତାଳେ ଦଳ ବଳିଛି ମଦନ ଯେ
ଅଖିଳ ଅକ୍ଷି–ପକ୍ଷୀଙ୍କି ମାରିବାକୁ କରିଅଛି ମନ ଯେ । ୪ ।
ଅମଳ ହେମ କୋମଳ ଲତାଡାଳ ଫୁଟିବାକୁ ହେଲା ଯେ
ଅନୁମାନ ହୋଏ ତାର ସ୍ତବକ ଏ ଆଗ ପ୍ରକାଶିଲା ଯେ । ୫ ।
ଅସମ ହେମକମ–ସମ–ସୁଷମ ଶ୍ରୀଅଙ୍ଗ ହୋଇଛି ଯେ
ଅତନୁ ବନ୍ଧାଣି ରସାଣି ତା ଗୁରୁ ରହି ବସାଇଛି ଯେ । ୬ ।
ଅବା ପ୍ରେମାବଳୀ ଲତାଫଳ ଫଳୁଅଛି ଆଭାସଇ ଯେ
ଅଛି ହୃଦସ୍ଥଳେ ନାସା ଗଜମୋତି କି ପ୍ରତିବିମ୍ବଇ ଯେ । ୭ ।

---

**ଅଷ୍ଟମ ଛାନ୍ଦ**

୨ । ନିଚୟ—ସମୂହ । ତାରୁଣ୍ୟ—ଯୌବନ । ଅହିନର ସୁରପୁର—ପାତାଳ, ମର୍ତ୍ତ୍ୟ ଓ ସ୍ୱର୍ଗପୁର । ଅଙ୍ଗସରସୀରେ—ଦେହରୂପ ପୁଷ୍କରିଣୀରେ । ସରସିଜ—ପଦ୍ମ । ୪ । ଅଖିଳ-ଅକ୍ଷିପକ୍ଷୀ—ସମସ୍ତଙ୍କର ଚକ୍ଷୁରୂପ ଚଢେଇ । ୫ । ହେମ—ସୁନା । ସ୍ତବକ—କଢି । ଅସମହେମ କମ ସୁଷମ—ଉତ୍କୃଷ୍ଟ ସୁନା ତିଆରି ଅଳଙ୍କାରବିଶେଷ ପରି ସୁନ୍ଦର । ରସାଣି—ପାଲିସ୍ କରି । ୭ । ଆଭା—ଜଣାପଡୁଛି ।

ଅଭିଷେକ ହୋଇ କାମ ରଜା ହେବ ଶ୍ରୀଅଙ୍ଗଦେଶରେ ଯେ
ଅନୁକୂଳ ଗୁଆ ଦୁଇ ଥୋଇଛନ୍ତି କି ମଙ୍ଗଳ ଆଶାରେ ଯେ । ୮ ।
ଅଗ୍ରେ କୌମାର ସଚିବକୁ ବିସ୍ତୃରେ ପଠାଇଥିଲି ଯେ
ଅନ୍ୟାୟ ନ୍ୟାୟ ସେ ବସିଣ ସେ ଦେଖେ ସକଳ ବୁଝିଲି ଯେ ।୯।
ଅନାଇ ମଧ୍ୟମ ପୃଥୁଳତା ଭାଙ୍ଗିଦିଏ ଶୀର୍ଣ୍ଣକରି ଯେ
ଅଙ୍ଘ୍ରିତଳେ ଯେ ମନ୍ଦତାକୁ ରଖିଛନ୍ତି ବିସ୍ତୃରି ବିସ୍ତୃରି ଯେ । ୧୦ ।
ଅକ୍ଷିତୁରଙ୍ଗ-ତରଙ୍ଗରୀତି ଦେଖି ବିବେଚନା କଲି ଯେ
ଅପାଙ୍ଗଠାରୁ କର୍ଣ୍ଣଯାଏ ତାଦାଣ୍ଡି ଦାଣ୍ଡ କରିଦେଲି ଯେ । ୧୧ ।
ଅଧର ବୋଲି ତାଠାରେ ହାସ ସନ୍ଧିମାନଙ୍କ ଥୋଇଛନ୍ତି ଯେ
ଅତିସୁଖେ କର ଦେବାକୁ ସେ ଉଚ୍ଚଙ୍କୁ ବଢ଼ାଇଛନ୍ତି ଯେ । ୧୨।
ଅତନୁ ଆସି ରଜା ହୋଇ ବସିବ ଜାନୁସିଂହାସନେ ଯେ
ଅତି ସଘନେ ଏଣୁ ତା' ସଜାଉଛନ୍ତି ଅତ୍ୟନ୍ତ ଯତନେ ଯେ । ୧୩ ।
ଅନୁରୂପ କରି କୌମାର-ସଚିବ ପାଳଇ ଅବନୀ ଯେ
ଅଛି ସଙ୍ଗେ ସଙ୍ଗ ଲଜ୍ଜା ବିବେକ ଏ ବେନି ସେନା ଘେନି ଯେ ।୧୪।
ଅମୃତ ଯୋଗରେ ଆସି ସେ ନଗରେ ବିଜେ ମାର ନୃପ ଯେ
ଅମାନ ଅଇରି ଗୁମାନକୁ ମାରି ଦେବ ତା ପ୍ରତାପ ଯେ । ୧୫ ।
ଅର୍ଜ୍ଜୁନପକ୍ଷ ଜୀବବାର ଦଶମୀ ଗୁରୁ ପୂର୍ଣ୍ଣଯୁକ୍ତେ ଯେ
ଅର୍କ ଉଦୟାଦି ନବଘଣ୍ଟି ବୁଧ-ବେଳା ଉପଗତେ ଯେ । ୧୬ ।

---

୯ । କୌମାର—ଯୌବନର ପୂର୍ବ ଅବସ୍ଥା । ବିସ୍ତୃରେ—ବିସ୍ତୃର କରିବା ପାଇଁ । ୧୦ । ମଧ୍ୟମ ପୃଥୁଳତା—କଟିଭାଗର ମୋଟ । ଶୀର୍ଣ୍ଣ—ସରୁ । ଅଙ୍ଘ୍ରିତଳେ—ପାଦ-ତଳେ । ମନ୍ଦତା—ଧୀରତା । ୧୧ । ଅକ୍ଷି···ଦେଲି—ଚକ୍ଷୁରୂପ ଅଶ୍ୱର ତରଙ୍ଗ ପରି ଚଞ୍ଚଳ ରୀତିକୁ ଦେଖି (ଅପାଙ୍ଗ) ନେତ୍ରପ୍ରାନ୍ତଠାରୁ କର୍ଣ୍ଣଯାଏ ତାର ଦାଣ୍ଡିଦେବାର ସୀମା ନିର୍ଦ୍ଦେଶ କରିଦେଲି । ଯୌବନ କାଳରେ ଚକ୍ଷୁ ଚଞ୍ଚଳ ହୋଇ ଡେରଣା ଭାବରେ କର୍ଣ୍ଣ ପର୍ଯ୍ୟନ୍ତ ଗତି କରିଥାଏ ।

୧୨ । ଅଧର···ଅଧର ନୀଚ ବୋଲି ତାଠାରେ ହାସର ସନ୍ଧି (ଛିଦ୍ର) ମାନ ଥୋଇଛନ୍ତି । ନୀଚ ଲୋକର ଉଚ୍ଚ (ମାନ୍ୟଗଣ୍ୟ) ବ୍ୟକ୍ତି ପ୍ରଭୃତିଙ୍କ ନିକଟରେ ଉଚ୍ଚ ହାସ କରିବା ଅନୁଚିତ । ଯୌବନରେ ଅଧରରେ ମନ୍ଦହାସ ଦେଖାଯାଏ । ଅତି······ବଢ଼ାଇଛନ୍ତି । ଅତିସୁଖେ—ବିନା ଜୋର ଜୁଲମରେ, ଅତି ସୁଖରେ । କର—ଖଜଣା, ହସ୍ତ । ପ୍ରଜାଙ୍କୁ ବଡ଼ କରିପାରିଲେ ରଜା ସୁଖରେ (ସୁବିଧା)ରେ ଖଜଣା ଆଦାୟ କରିପାରନ୍ତି । ୧୩। ସଘନେ—ଲଗାଲଗି କରି । ୧୬। ଅର୍ଜ୍ଜୁନପକ୍ଷ—

ଅବ୍ଜ ତାର-ବାର-ଯୋଗ-ଲଗ୍ନ-କରଣାଦି ଶୁଭ ସର୍ବେ ଯେ ।
ଅମରଗୁରୁ ଭାର୍ଗବ ସୌମ୍ୟ ଚନ୍ଦ୍ର ଲଗ୍ନକେନ୍ଦ୍ର ଠାବେ ଯେ । ୧୭ ।
ଅର୍କ ଅଙ୍ଗାରକ ଅଳ ଲଗ୍ନ ଆୟ ଷଷ୍ଠ ତୃତୀୟରେ ଯେ
ଅଷ୍ଟ ଚତୁସ୍ପଦ ଶୁଭଗ୍ରହ-ମୋଦ ଦୃଷ୍ଟି ଲଗ୍ନ ପରେ ଯେ । ୧୮ ।
ଅମୃତ ସମୟେ ହୋଇଲା ଉଦୟେ ବାଳା-ସ୍ପୃଷ୍ଟ-ଭାଳ
ଅଶେଷ ମଙ୍ଗଳ-ପ୍ରଦାଠାରେ ଥିବ କାହୁଁ ଅମଙ୍ଗଳ ଯେ । ୧୯ ।
ଅଙ୍ଗ ଶ୍ରାନ୍ତ ହୋଇ ଅଭୂତେ ଶୀତାଇ ଶୀତାଇ ଆସିଲା ଯେ
ଅଶନ ସୁବେଶେ ବସନ ସୁବାସେ ମନ ନ ରସିଲା ଯେ । ୨୦ ।
ଅନ୍ୟ-ଅବସରଠାରୁ ନେତ୍ର ତାର ତରଳେ ସ୍ଫୁରିଲା ଯେ
ଅନାୟସେ ଭୂରୁ ନୃତ୍ୟ କଲା ଗୁରୁତର ଶ୍ରୋଣି ହେଲା ଯେ । ୨୧ ।
ଅତଏବ ସ୍ଥିତ ଦେଖି ମତମତ ଅତ ଲଜମତ ଯେ
ଅସ୍ଫୁଟେ ସେ କଲେ ସ୍ଫୁଟେ କରଦେଲେ ବେଢ଼ି ଭୃଙ୍ଗତତ ଯେ । ୨୨ ।
ଅନୁଚରୀମାନେ ଜାଣି ତୋଷମନେ ମାତାଙ୍କୁ କହିଲେ ଯେ
ଅକ୍ଷତ-ମାଷ-ମିଶ୍ରିତ ମଣ୍ଡଳକୁ ବଧାନେ ବହିଲେ ଯେ । ୨୩ ।
ଅରୁଣବାସ ପିନ୍ଧାଇ ସୁଭାଷୀଙ୍କ ତହିଁରେ ବସାଇ ଯେ
ଅନୁକୋଣେ ସ୍ଥିର ଶର ପୋତ ରଙ୍ଗବସନ ବେଢ଼ାଇ ଯେ । ୨୪ ।
ଅମ୍ବୁପୂର୍ଣ୍ଣ-କୁମ୍ଭ ସ୍ଥାପି ଶାତକୁମ୍ଭ-ପ୍ରଦୀପ ଜାଳନ୍ତି ଯେ
ଅଙ୍ଗନାଗଣେ ସୁବର୍ଣ୍ଣ-ପ୍ରାଙ୍ଗଣେ ହୁଳହୁଳୀ ଦ୍ୟନ୍ତି ଯେ । ୨୫ ।
ଅଚଳମହୀଶ ଶୁଣି ମହାତୋଷ କଲେ ଦାନପୁଣ୍ୟ ଯେ
ଅପ୍ରମିତ ବାଦ୍ୟ ମଙ୍ଗଳଶବଦ ସୁଗୀତ-ଗାୟନ ଯେ । ୨୬ ।

---

ଶୁକ୍ଳପକ୍ଷ । ୧୭ । ଅବ୍ଜ—ଚନ୍ଦ୍ର । ଅମରଗୁରୁ—ବୃହସ୍ପତି, ଭାର୍ଗବ—ଶୁକ୍ର, ସୌମ୍ୟ—ବୁଧ, ଅର୍କ—ସୂର୍ଯ୍ୟ, ଅଙ୍ଗାରକ—ମଙ୍ଗଳ । ୨୧ । ଅନ୍ୟ ଅବସର—ଅନ୍ୟ ବେଳ । ଶ୍ରୋଣି ଗୁରୁତର ହେଲା—ପିଚ୍ଛ ଭାରି ହେଲା । ମତମତ—ମନେ ମନେ । 'ମତମତି' ପାଠ କଲେ ଅର୍ଥ ବୁଦ୍ଧିମତୀ । ଅସଫୁଟ କଲେ—ଲୁଣ୍ଠଇଲେ । ଭୃଙ୍ଗତତ—ଭ୍ରମରମାନେ । ୨୩ । ମାଷ—ବିରି । ୨୪ । ସୁଭ୍ରୂଷୀ—ଯୁବତୀ । ୨୫ । ଶାତକୁମ୍ଭ ପ୍ରଦୀପ—

ଅହ୍ନିର୍ଶି ସାତଦିନ ଏଥିମଧ୍ୟ ଉତ୍ସବ-ବେଶର ଯେ
ଅର୍ଘ୍ୟ ବନ୍ଦାପନା ପଙ୍କଜଲକ୍ଷଣା ଘେନଣ ବାହାର ଯେ । ୨୭ ।
ଅନଙ୍ଗନାଶଣ ହେଲ ଯୋଗିଗଣ ବିପ୍ପୁର-ଜୟଙ୍କୁ ଯେ
ଅଙ୍ଗନାସହାୟ ନ ହେଲ ତ ଭୟ ସେ ମୃତ୍ୟୁଞ୍ଜୟଙ୍କୁ ଯେ । ୨୮ ।
ଅହ୍ନକୁ ଅଦ୍ଧ ସିତପକ୍ଷ ଚନ୍ଦ୍ରମା ପର ଶୋଭା ବାମା ଯେ
ଅଷ୍ଟଆଖି କ ବାଛବାଛ ରଖୁଛ ଏବେଧ ସୁଷମା ଯେ । ୨୯ ।
ଅନ୍ତ ଆଦ୍ୟ ମଧ୍ୟ ବୃଷଭ-ବାହନ ମୁନୀନ୍ଦ୍ରଚରଣ ଯେ
ଅନ୍ତକ ଏ ରୁଦ୍ରଦଣ୍ଡେ ବଳଭଦ୍ର କରୁଛ ଶରଣ ଯେ । ୩୦ ।

---

# ନବମ ଛାନ୍ଦ

## ଶିବ-ତପସ୍ୟା

ରାଗ—କାଫି, ଅବକାଶ ବୃତ୍ତେ

ଅଦ୍ରି ଉପର ପରମ ସ୍ଥାନେ
ଅନଲେକ୍ଷଣ କ୍ଷଣ-ବଧାନେ
ଅଲୌକିକ ତପସ୍ୟା ପ୍ରବଳେ
ଅନୁକ୍ଷଣେ କ୍ଷଣଦା ଦିନ ହଲେ ସେ
ଅସିତ; ସିତ ହଲ ଶରୀର (?)
ଅନଳଅନ୍ନ କରନ୍ତି ମାତର ଯେ । ୧ ।
ଅନୁଷ୍ଠାନ ପରମ୍ପରା ଏଥି
ଅନୁଦିନେ ହେଲେ ଅଷ୍ଟ ସିଦ୍ଧି
ଅନୁଦିନ ତାଙ୍କୁ ତପରେ ସେ
ଅନୁମାନେ ଆନ ଆଉ ନ ଦିଶେ ଯେ

---

ସ୍ମୃନାଶଆର ଦୀପ । ୨୭ । ଅଚଳର ମହାଶ—ହିମାଳୟ । ୨୯ । ଅଷ୍ଟଆଖି—ବ୍ରହ୍ମା । ୩୦ । ଯୋଗୀଶ୍ୱର ବୃଷବାହନ ମହାଦେବଙ୍କ ଚରଣର ଅନ୍ତ, ମଧ ଓ ଆଦ୍ୟଭାଗ ବଳଭଦ୍ର ଭଞ୍ଜ (ଅନ୍ତକ ରୁଦ୍ର ଦଣ୍ଡେ) ଯମର ଭୟଙ୍କର ଦଣ୍ଡକୁ ଡ଼ରି ଶରଣ କରୁଛନ୍ତି ।

ନବମ ଛାନ୍ଦ

୧ । ଅଦ୍ରି ଉପର—ପର୍ବତ ଶୃଙ୍ଗରେ । ଅନଲେକ୍ଷଣ—ମହାଦେବ । କ୍ଷଣବଧାନେ—ଉତ୍ସବ ଅର୍ଥାତ ଚିତ୍ତଶାନ୍ତି ସାଧନ କରିବାକୁ । କ୍ଷଣଦାଦିନ—ରାତ୍ରିଦିନ ।

ଅନୃତ, ନୁହେ ଏହୁ ଭାଷିତ
ଅନୁଭବୀ ସେ ତପ ଦୁଃଖେ ସେ ତ ଯେ । ୨ ।
ଅଗ୍ରନାସାରେ ବ୍ୟଗ୍ରରହିତ
ଅକ୍ଷି ରଖି ସେ ଅଖିଳ-ତାତ,
ଅନ୍ତେ ସେ ବ୍ରହ୍ମ ହୁଅନ୍ତେ ପ୍ରକାଶ
ଅଶେଷାନନ୍ଦରେ ସେ ଶିବ ତୋଷ ଯେ
ଅଣୁ ଏ, ସ୍ଥାଣୁ ଏହା ନ ତେଜ
ଅମାନ ସୁଖରେ ମାନସ ମଜ୍ଜି ଯେ । ୩ ।
ଅଦ୍ରିପୁତ୍ରୀ ଜଗି ଅବକାଶେ
ଅନୁସରୁଥାନ୍ତି ତାଙ୍କ ପାଶେ
ଅବ୍ଜଜାତ କରିଛି ନିର୍ମାଣ
ଅମ୍ବିକା-ରମଣୀ-ଈଶ ପ୍ରମାଣ ଯେ
ଅନିଶେ, ସେବା ବିଧିରେ ଥାନ୍ତି
ଅଙ୍ଗ ଛୁଆଇ ପରି ଭିନ୍ନ ନୁହନ୍ତି ଯେ । ୪ ।
ଅଗ୍ନିସ୍ଥାପନ ଅର୍ଥେ ଇନ୍ଧନ
ଅଙ୍ଘ୍ରିପ୍ରକ୍ଷାଳନ ଆଚମନ—
ଅର୍ଥେ ଅମ୍ବୁ ଆଣି ନିଯୋଗାନ୍ତି
ଅନୁଷ୍ଠାନ ଦ୍ରବ୍ୟମାନ ଗଠାନ୍ତି ଯେ
ଅକ୍ଷତ, ପୁଷ୍ପ ଚନ୍ଦନ କୁଶ
ଅଙ୍ଗନାପାତ୍ର-ମାର୍ଜନ-ବିଶେଷ ଯେ । ୫ ।
ଅଭିରୂପ ବସ୍ତ୍ର ଦିଗ-ବାସେ
ଅନୁସରି କରନ୍ତି ସେବା ସେ

---

ଅନିଲ ଅନ୍ନକରି—ପବନ ଆହାର କରି । ୨ । ଅନୁଷ୍ଠାନ ପରମ୍ପରାବିଧି—ଯେଉଁ କାର୍ଯ୍ୟ ପରେ ଯାହା କରିବାର ନିୟମ । ଅନୁଦିନେ—ଦିନକୁଦିନ । ତପରେ—'ତପ ବ୍ୟତୀତ' ଏହି ଅର୍ଥରେ ପ୍ରଯୁକ୍ତ । ଅନୃତ—ମିଥ୍ୟା । ୩ । ଅଗ୍ରନାସାରେ—ଧ୍ୟାନଯୋଗକାଳରେ ନାସାଗ୍ରରେ ଦୃଷ୍ଟି ରଖିବା ଶାସ୍ତ୍ରବିଧି । ଅଣୁଏ—ଟିକିଏ । ସ୍ଥାଣୁ—ମହାଦେବ । ଅଦ୍ରିପୁତ୍ରୀ—ପାର୍ବତୀ । ଅବକାଶେ—ତପରୁ ରହିତ ହେବା ସମୟରେ । ଅନୁସରୁଥାନ୍ତି —ସେବୁଥାନ୍ତି । ଅବ୍ଜଜାତ—ବ୍ରହ୍ମା, ପାର୍ବତୀଙ୍କୁ ନାରୀଶ୍ରେଷ୍ଠରୂପେ ନିର୍ମାଣ କରିଛି, ଏହା ସ୍ଥିର । ୪ । ଇନ୍ଧନ—ସମିଧ କାଠ ପ୍ରଭୃତି । ଅଙ୍ଘ୍ରିପ୍ରକ୍ଷାଳନ—ଗୋଡ଼ ଧୋଇବା

ଅମ୍ବୁଜକୁ ଭୃଙ୍ଗ ଯେମନ୍ତ
ଅବ୍‌ଜଠାରେ ଯଥା ଚକୋରଗଣ ସେ
ଅମ୍ବର, ଅକ୍ଷି ଅପେକ୍ଷା ଯଥା
ଅସିତକଣ୍ଠରେ ଅମ୍ବିକା ତଥା ଯେ । ୬ ।
ଅପର୍ଣ୍ଣାର ନାନା ସେବାକର୍ମ
ଅନ୍ତର୍ଗତେ ଘେନୁଥାନ୍ତି ଭୀମ
ଅକ୍ଷିଗୋଚର ନୁହନ୍ତି ନାଶ
ଅଷ୍ଟ ରୂପରେ ଗତାଗତ କରି ସେ
ଅଟେ ଯା, ଅଂଶୁଁ ଚଞ୍ଚଳା ଜାତ
ଅନୁଲକ୍ଷିବ କେ ତାର ଚରିତ ଯେ । ୭ ।
ଅଙ୍ଗମାର୍ଜନା ନାନା ଶୃଙ୍ଗାର
ଅଲଙ୍କାର ମନୋହର ହାର
ଅତିସ୍ୱାଦୁ ଅମୃତ ଆହାର
ଅହି-ବଲ୍ଲୀ ଆଦି ଯେ ଉପହାର ସେ
ଅପୂର୍ବ, ଖେଳ କୌତୁକ ରସ
ଅଟ୍ଟୀଅଟ୍ଟହାର ସୁପଟ୍ଟହାସ ଯେ । ୮ ।
ଅନୁଆଳେ ବେଣୀକୁଟା ବନ୍ଧା
ଅତି ଯତନେ ଦୁକୂଳ ପିନ୍ଧା
ଅଳିକରେ ସୃଷ୍ଟୁ ଚନ୍ଦ୍ରଲେଖା
ଅଚ୍ଛମୁକୁରେ ମୁଖ ଛବି ଦେଖା ଯେ
ଅମୂଲ୍ୟ; ଫୁଲ ତୋଳି ଗୁନ୍ଥିବା
ଅଳତା ପଦେ ମୋଦେ ଘେନୁଥିବା ଯେ । ୯ ।
ଅମୃତବର୍ଷୀ ପଞ୍ଚବଦନ-
ଅନୁସ୍ୱରେ ଆଳାପଗାୟନ

---

ଅନୁଷ୍ଠାନ ଦ୍ରବ୍ୟ—ଯୋଗ କରିବାର ଦରକାରୀ ଜିନିଷ । ଅର୍ଚ୍ଚନା ପାତ୍ର ମାର୍ଜନା—ପୂଜା ବାସନ ମାଜିବା ।୬। ଅଷ୍ଟରାଗ—ଅଷ୍ଟ ଅନୁରାଗ । ଭଗବାସ—ମହାଦେବ ।ଅବ୍‌ଜ—ଚନ୍ଦ୍ର । ଅସିତକଣ୍ଠ—ମହାଦେବ । ୭ । ଅପର୍ଣ୍ଣା—ପାର୍ବତୀ । ଭୀମ—ମହାଦେବ । ଅଟେ········ଜାତ—ଯାହାର ଅଂଶରୁ (ଚଞ୍ଚଳା) ଲକ୍ଷ୍ମୀ ଜାତା ।୮ ଅମୃତ ଆହାର—ଅମୃତ ତୁଲ୍ୟ ଭୋଜନ । ଅହିବଲ୍ଲୀ—ପାନ । ୯ । ଅନୁଆଳେ—ପରସ୍ପର । ଅଳିକରେ—କପାଳରେ । ୧୦ । ଅମୃତବର୍ଷୀ···ମହାଦେବଙ୍କ ଅନୁସ୍ୱରରେ ଅମୃତ ପରି ମଧୁର ଗାନ କରିବା ।

ଅନିରୁଦ୍ଧ ଶାସ୍ତ୍ର ପୋଥି ଦେଖା
ଅଗାରୁଦ୍ଧିରେ ସୂଚନ ଲେଖା ଯେ
ଅନ୍ତରେ; ଲୁଚ ଖୋଜ ଖୋଜିବା
ଅନୁକ୍ଷଣେ ସଖୀଙ୍କି ଛଳିବା ଯେ । ୧୦ ।
ଅବ୍‌ଜ ଶୁକସାରିକା କୋକିଳ
ଅଳି ହରିଣାଦି ଶଶା ନେପାଳ
ଅମ୍ବୁ ବୁଡ଼ା ଖଞ୍ଜନ ଚକୋର
ଅନନ୍ତ ଖେଳା ପାରୁଆ ମଞ୍ଜୁଳ ଯେ
ଅନ୍ତର; କଲେ ଇତ୍ୟାଦି ଲୀଳା
ଅସିତ କଣ୍ଠ-ସେବାରେ ସେ ହେଲା ଯେ । ୧୧ ।
ଅନୁଦିନେ ଏ ସେବା ପ୍ରକାର
ଅନ୍ତର୍ଗତେ କରୁଥାନ୍ତି ହର
ଅହର୍ନିଶି କେ ସେବନ୍ତୁ ମୋତେ
ଅପୂର୍ବ ଗୀତ ଜାଣିମା କେମନ୍ତେ ଯେ
ଅକ୍ଷିରେ; ଲକ୍ଷି ନୋହିଲି ସେ ତ
ଅନିଳ ଅବା ସେ କିବା ତଡ଼ିତ ଯେ । ୧୨ ।
ଅତ ସାବଧାନ ଏଣୁ ହେଲେ
ଅବଳାର ଲୀଳା ସେ ଦେଖିଲେ
ଅନ୍ତଃକରଣେ କଲେ ଏ ବାଳା
ଅନଙ୍ଗ ସିନ୍ଧୁକୁ ହେବ ମୋ ଭେଳା ଯେ
ଅଚଳ;-ପତି-କୁମାରୀ ଏହି
ଅବହେଲେ ସଷ୍ଟି ପାରଇ ମୋହି ଯେ । ୧୩ ।
ଅଷ୍ଟମୁଖ ଶୋଭି ବେଦଭୁଜ
ଅର୍ଘ୍ୟ ବେଦ କାନ୍ତ ଦ୍ୱିଜରାଜ
ଅଷ୍ଟ ସପ୍ତ ରସନା ସୁନ୍ଦର
ଅଖିଳନାଥ ଅମର ଈଶ୍ୱର ହେ
ଅଚଳା;-ପତି ବଳଭଦ୍ରର
ଅର୍ଜିତ ପାତକ ସଙ୍ଘାତ ହର ହେ । ୧୪ ।

---

୧୨ । ଅନ୍ତର୍ଗତେ କରୁଥାନ୍ତି—ମନେ ମନେ ଭାବୁଥାନ୍ତି । ୧୪ । ଅଚଳା-ପତି—ପୃଥ୍ୱୀପତି (ରଜା) । ପାତକ ସଂଘାତ—ପାପସମୂହ ।

# ଦଶମ ଛାନ୍ଦ

## ଶିବ-ତପୋଭଙ୍ଗ

[କନ୍ଦର୍ପଦାହ]

ରାଗ—ପାହାଡ଼ିଆ କେଦାର

ଅତି ରୁଚିର ଚରିତବର ସଜ୍ଜନବାର ଶ୍ରବଣ କର
ତାରକାସୁର ପୀଡ଼ା ଅପାର ଦେବାସୁ ସୁର ଯେ
ଅମରପୁର-ପୁରରେ ସ୍ଥିର ନୋହୁ ତାଙ୍କର ଲଙ୍ଘଣ ପର—
ମେଷ୍ଟୀ ଛାମୁର କହିଲେ କର ଯୋଡ଼ି ଏ ଗିର ଯେ
ଅବ୍‌ଜଯୋନି ଆମ୍ଭର ଏ ଦର ହର ହେ
ଅନ୍ଧକାର-ଆକାର ଦିଶେ ସଂସାର ଯେ
ଅସହ୍ୟତର ତାରକାସୁର ସନ୍ତାପ ଘୋର ହେଲା ବିପୁର—
ଭୂତରେ ଆର ନ ଦିଶେ ପାର ହେବା ପ୍ରକାର ହେ । ୧ ।
ଅମରଗଣ-ଘୋର କଷଣ ଶୁଣି ଦ୍ରୁହିଣ ଶୁଣି ଦ୍ରୁହିଣ
କହନ୍ତି ଶୁଣ ହେ ସୁପର୍ବାଣ ଏ ସତ୍ୟ ଜାଣ ହେ
ଅଛି ପ୍ରମାଣ ସ୍ମୃତି ପୁରାଣ ବେଦରେ ପୁଣ ବିପୁର-ପ୍ରାଣ
ହାର-ଅଂଶେଣ ଜନ୍ମିଲେ ତ୍ରାଣ ହେବେ ଗୀର୍ବାଣ ହେ
ଅଟେ ସେ ଦୈତ୍ୟପ୍ରାଣ ଅତ୍ୟନ୍ତ ଟାଣ ଯେ
ଅନ୍ୟ ଭୁଆଣରେ ସେ ନୋହିବ କ୍ଷୀଣ ଯେ
ଅହିଭୂଷଣ-ଅଙ୍ଗେ ତକ୍ଷଣ ଫୁଲ୍ଲକମାଣ ଭ୍ରମର-ଗୁଣ
ଯୋଗରେ ବାଣ ମାରୁ, କହିଣ କର ପ୍ରେଷଣ ହେ । ୨ ।
ଅଷ୍ଟଲୋଚନ ଏହି ବଚନ ମେଘବାହନ ଶୁଣି ବହନ

ଦଶମ ଛାନ୍ଦ

୧ । ସଜ୍ଜନବାର—ସାଧୁମାନେ । ଅମରପୁର-ପୁରରେ—ଅଳକାପୁର ଗୃହରେ ବା ଅଳକାପୁର ନାମକ ନଗରରେ । ଅବ୍‌ଜଯୋନି—ବ୍ରହ୍ମା । ଦର—ଭୟ । ୨ । ଦ୍ରୁହିଣ—ବ୍ରହ୍ମା । ସୁପର୍ବାଣ—ଦେବତା । ବିପୁର········ଅଂଶେଣ—ମହାଦେବଙ୍କ ଅଂଶରେ । ଗୀର୍ବାଣ—ଦେବତାମାନେ । କ୍ଷୀଣ—କ୍ଷୟ । ଫୁଲ୍ଲକମାଣ—କାମଦେବ ।

ଘେନି ସୁମନ ଅଇଲେ ମନ-ତୋଷେ ସ୍ୱସ୍ଥାନ ହେ
ଅଣାଇ ମୀନକେତନ ମନ କରି ପ୍ରସନ୍ନ ଏ କଥାମାନ
କଲେ କଥନ ଶୁଣି ମଦନ କଲା ଗମନ ହେ
ଅଟେ ଜନ-ଅଜ୍ଞାନ-ଦାନେ ପ୍ରଧାନ ସେ
ଅଡି ପୁଣ ସେ କରୁଅଛି ପ୍ରସ୍ଥାନ ଯେ
ଅଙ୍ଗନାସ୍ତନ-ଗିରି-ଗହନ— ଦରୀ-ବିହୀନ-ପୁଂସ-ଜୀବନ
ରକ୍ଷାସଦନ ନାହିଁ ଭୁବନ ଭିତରେ ଆନ ଯେ । ୩ ।
ଅନ୍ଧକପର ସଙ୍ଗେ ସମର କରି ବାହାର ହେଉଛି ସ୍ମର
ଏଣୁ ବିସ୍ତର କରି ତିଆର କଲା ସମ୍ଭାର ଯେ
ଅଇଲେ ତାର ମିତ୍ରପ୍ରକର ବସନ୍ତ, ତାର-ତାରକେଶ୍ୱର
ଆଦି, ତାଙ୍କର ସହାୟବାର ଘେନି ସଙ୍ଗର ଯେ
ଅଣାଇଲା ପ୍ରଖର ତୀକ୍ଷଣ ଶର ଯେ
ଅଶୋକାରବିନ୍ଦାଦି ଆୟୁଧବାର ଯେ
ଅଣ୍ଟାରେ ତାର ତୂଣୀର ତରବାରି ଚତୁର ଭିଡ଼ିଲା
ତରକଷି ରୁଚିର ବାମପୟର ପରେ ତୋଡ଼ର ଯେ । ୪ ।
ଅଳକେ ତୋରି ଚନ୍ଦନ କୋରି ମସ୍ତକ ତୋରି ପାଗରେ ହୀରି
ଝଟକେ କରିଉଛି ଅଧୀରି ଗୃହାନ୍ତେ ଧୀରି ଯେ
ଅମର ହାରାବଳୀରେ ବରିକେ ହୃଦ ମାରିଗାଦି ସୁନ୍ଦରୀ—
କୁଣ୍ଡ ମୁଦିରଜ ଚୁଟୁ କରିଙ୍ଗୁଳି ରୁଚରି ଯେ,
ଅକ୍ଷିନୀଡ଼ାର ପରି ନାହିଁ ଅପରି ଯେ
ଅଟେ ନୟନତାରି- ପ୍ରକର-କାରି ଯେ
ଅବଶ୍ୟ ମରିଯିବେ ଏ ଧରି— ବିଯୋଗୀ, ଖରି ଲବଣୀ ପରି
ତରଳ, ପାରିପରି ଅଧୀରି ହୋଇବେ ସ୍ଥିରି ଯେ । ୫ ।

---

୩ । ଅଷ୍ଟଲୋଚନ—ବ୍ରହ୍ମା । ମେଘବାହନ—ଇନ୍ଦ୍ର । ଘେନି ସୁମନ—ଦେବତାଙ୍କୁ ଘେନି । ମୀନକେତନ—କାମଦେବ । ଦରୀ—ଗୁହା । ରକ୍ଷାସଦନ—ରକ୍ଷା ପାଇବାର ଜାଗା । ୪ । ଅନ୍ଧକପର—ମହାଦେବ । ସମ୍ଭାର—ଉପକରଣ । ମିତ୍ରପ୍ରକର—ବନ୍ଧୁମାନେ । ତାରତାରକେଶ୍ୱର—ଉଜ୍ଜ୍ୱଳ ଚନ୍ଦ୍ର । ସହାୟବାର—ସାହାଯ୍ୟକାରୀମାନେ ।
ଅଶୋକାରବିନ୍ଦାଦି, ଯଥା—

ଅଶୋକମରବିନ୍ଦଂ ଚ ଚୂତଂ ଚ ନବମାଲ୍ଲିକା
ନୀଲୋତ୍ପଳଂ ଚ ପଞ୍ଚୈତେ କାମଦେବସ୍ୟ ଶାୟକାଃ ।

ଅସବ୍ୟ କରେ ସେ ଧନୁ ଧରେ ସୁମନଶରେ ଅଳିଗୁଣରେ
ବସାଇ ଧୀରେ ନିର୍ଭରେ ଥରେ ଥରେ ଟଙ୍କାରେ ସେ
ଅସିପତରେ ପୁଣି ମନ୍ତ୍ରରେ ଆମର୍ଷିତରେ ଫିଙ୍ଗି ସୁତରେ
ଝମକ ଧରେ ଭୃଙ୍ଗ ଅଧରେ ଦନ୍ତ କ୍ରୋଧରେ ଯେ
ଅନିଶରେ ନିଶରେ ଅଙ୍ଗୁଳି ମାରେ ସେ
ଅକ୍ଷିପାତମାତରେ କାତର କରେ ସେ
ଅଳପ ଧୀରେ ଧୀରେ ବାହାରେ ଦେଇଛି କରେ ରତି-ବାହାରେ
ଯାଇ ସୁତରେ ବସିଲ୍ କରେ ମକରପରେ ଯେ । ୬ ।
ଅନର୍ଥ ସ୍ୱିତ-ଯୋଗରୁ ଯତ ଛାଣି ଭଡ଼ିତ ଯୁବତୀ କତ
ମିଳଣ ଅତରେକେ ବନତ-ନୁତ କହନ୍ତି ଯେ
ଅଜ୍ଞାନମତ ହେଲେ କେ ରତ— ପତରେ ରତ ଚଉରେ ଚନ୍ତ
ସାମାନ୍ୟା-ଛାତପରେ କେ ଛାତ ଯୋଖି ରହନ୍ତି ଯେ
ଅଙ୍ଗନାକୁ କେ ଘେନି ବଲେ ଭୁଞ୍ଜନ୍ତି ଯେ
ଅଙ୍ଘ୍ରିତଳେ କେ ରତି ଆଶେ ପଡ଼ନ୍ତି ଯେ
ଅଜ୍ଞାତରତି ଘେନି କେ କୃତୀ ବନ୍ଧେ ନୁହନ୍ତି ସେ ଛନ୍ନବତି
କରେ ଝଟିତ ଧରେ ତା ଘେତ ହସେ ସୁଦତୀ ଯେ । ୭ ।
ଅର୍ଜ୍ଜୁନ ତାର କାନ୍ତି ଯାହାର କସ୍ତୁରୀ-ନୀରରେ ତା ଶରୀର
କଲି ଜର୍ଜ୍ଜର ହୃଦହୁଁ କେ ହାର କଲି ବାହାର ଯେ
ଅଙ୍ଗୁ କର୍ପୂରରଜ ଅନ୍ତର କରି ସତ୍ୱର ହୋଇ କାତର
ନିର୍ଭରେ ଝର ଯୋଖି କେ ଉରଜରେ କାନ୍ତାର ଯେ

---

ଆୟୁଧବାର—ଶସ୍ତ୍ରସମୂହ । ତରକଷି—ତୂଣୀର । ତୋଡ଼ର - ଭୂଷଣ ବିଶେଷ । ୫ । ମାର୍ଗାଦ୍ୱ······ରୁଚିର୍—ମାର୍ଗ ନାମକ ମଣି ବିଶେଷଦ୍ୱାରା ସୁନ୍ଦର ହୋଇଥିବା ମୁଦସବୁ ଅଙ୍ଗୁଳିମାନଙ୍କରେ ପିନ୍ଧି । ଅଚ୍ଛି······କାର୍—ନେହର ବନ୍ଦୀ-ଘର । ସ୍ମିର୍—ସତୀମାନେ ।୬। ଅସବ୍ୟକରେ—ବାମକରେ । ଅସିପତରେ—ଖଡ୍ଗକୁ । ଝମକ—ଧାଇଁ ବା ଉହୁଁକି । କରେ—ଗୋଟିଏ ହାତ । ରତିବାହାରେ—ନିଜ ସ୍ତ୍ରୀ ରତିର ବାହୁ ଉପରେ । ସୁତରେ—ସାବଧାନରେ ବା କୌଶଳକ୍ରମେ । ବସିଲକରେ—ବସିଲା । କ୍ରିୟାବାଚକ ବିଶେଷ୍ୟ । ମକର—ତାହାର ବାହନ । ୭ । ଯୋଗରୁ—ଯୋଗ-ବଳରୁ । ଅତବନତନୁତ—ଅତ ବାନସ୍ତୁ ସହୃତ ସ୍ତୁତ । ସାମାନ୍ୟା—ବେଶ୍ୟା । ଅଜ୍ଞାତ ରତିଘେତ—ରତିକୀଡ଼ା ବିଷୟରେ ଅଜ୍ଞ ହୋଇଥିବାରୁ । କୃତୀ—ଦକ୍ଷ । ଛନ୍ନବତ—ଅସ୍ତବ୍ୟସ୍ତ । ସୁଦତୀ—ସୁନ୍ଦରଦନ୍ତବିଶିଷ୍ଟା ସ୍ତ୍ରୀ । ୮ । ଯେଉଁ ଯୋଗୀର କାନ୍ତି ଅର୍ଜ୍ଜୁନ

ଅଳକରୁ ପୋଛୁଥିଲ୍ କେ ତ୍ରିପୁଣ୍ଡ୍ର ଯେ
ଅଛୁ ନୀଳକଣ୍ଠଭକତ କେ ନର୍ ଯେ
ଅଭୀଷ୍ଟକର୍ ହେଲେହେଁ ବର— ମାର୍ ସମରସମୟେ ଡର୍
ଲଭୁ ଅପାର୍ ନ କଲ୍ ଦୂର୍ ଅଙ୍ଗୁ ଅମ୍ବର୍ ଯେ । ୮ ।
ଅବ୍ଜଶେଖର୍ ତୁଷାରଧର୍— ପରେ କଠୋର୍ ତପେ ଶରୀର୍
କରୁଣ ସ୍ଥିର୍ ଛନ୍ଦ ସମୀର୍ କରି ଆହାର୍ ଯେ
ଅକ୍ଷିରୁ ଦୂର୍ ପକ୍ଷ୍ମପ୍ରକାର୍ କରି ସୁଧୀର୍ ହୃଦୟ-ନୀର୍—
ଜରେ ତାଙ୍କର୍ ପ୍ରଭୁଙ୍କୁ ପୁର୍ ଦେଲେ ସେ ହର୍ ଯେ
ଅତେ ଯାର୍ ଗୋଚର୍ ନିତ୍ୟ ଈଶ୍ୱର୍ ଯେ
ଅନ୍ୟ ଶରଧା ଆଉ୍ କାହୁଁ ତାଙ୍କର୍ ଯେ
ଅନର୍ଥ-ବାର୍ ଏ କାଳେ ମାର୍ ଘେନିଣ ପରବେଶ ସେ ପର୍—
ବଡରେ ତାର୍ ନାନା ହୁନ୍ଦର୍ କଲ୍ ପ୍ରଚାର୍ ଯେ । ୯ ।
ଅତି ମଧୁର୍ କୋମଳତର୍ ତରଳକର୍ କଳଗମ୍ଭୀର୍
ସୁସ୍ୱର ଗିର୍ କହଇ ବର୍ ଦ୍ରୋଣକୁମର୍ ଯେ
ଅଳିନିକର୍ ମିଳି ଝଙ୍କାର୍— କେଳିରେ ମାର୍-ଘୋର୍ ଶିକାର୍
ମୋହ-ପ୍ରକାର୍ ସବଲୋକର୍ କଲେ ସଭର୍ ଯେ
ଅଚ୍ଛତର-ସୁନ୍ଦର୍ ପୀୟୂଷ-କର୍ ଯେ
ଅମ୍ବରକୁ ମଣ୍ଡିଲ୍ ପ୍ରକାଶି କର୍ ଯେ
ଅବନୀପର୍ ଧୋଇଲ୍ ପର୍— ମେଷ୍ଟୀ କି କ୍ଷୀର୍ ଘେନି ନିକର୍
ତାରୁଁ ସେ ତାର୍ କରଇ ଶର୍ ସଙ୍ଗ ଗୋଚର୍ ଯେ । ୧୦ ।

---

(ଧବଳ) ଓ ତାର (ଉଜ୍ଜ୍ୱଳ) ଥିଲା, ସେ କାମ ଭୟରେ ଦେହରେ କସ୍ତୁରୀ ବୋଳି-ଦେଲା; ଆଶଙ୍କା:—କାଳେ ଧବଳବର୍ଣ୍ଣ ଦେଖି ଶିବ ବୋଲି ମନେ କରି କାମ ଶର ପ୍ରହାର କରିବ । ସର୍ପଭ୍ରମ ଦୂର କରିବାପାଇଁ ହାର ବାହାର କଲା । ନୀଳକଣ୍ଠ-ଭକତ—ଶିବ ଭକ୍ତ ; କେହୁ ଲୋକ ଅଳକ (କପାଳ)ରୁ ତ୍ରିପୁଣ୍ଡ୍ର, ପୋଛିଲା । ସୁରତ-କାଳରେ ବସ୍ତ୍ର ତ୍ୟାଗ କରିବା ବାଞ୍ଛନୀୟ ହେଲେହେଁ ଉଲଗ୍ନ (ଦିଗମ୍ବର) ହେଲେ ମହାଦେବ ଜ୍ଞାନରେ କାମ ଅଧିକ ଶର ପ୍ରହାର କରିପାରେ ବୋଲି ତାହା କଲା ନାହିଁ । ୯ । ଅବ୍ଜଶେଖର—ଚନ୍ଦ୍ରଶେଖର, ଶିବ । ତୁଷାରଧର—ହିମାଳୟ । ପକ୍ଷ୍ମପ୍ରକାର—ପତାର କାର୍ଯ୍ୟ—ଚଳନାଦି । ହୃଦୟ-ପଦ୍ମରେ ପ୍ରଭୁଙ୍କୁ (ଆରାଧ୍ୟ ଦେବତାଙ୍କୁ) ପୁର (ସ୍ଥାନ) ଦେଲେ । ୧୦ । ତରଳକର—ଯାହା ମନ ଓ ଶରୀରକୁ ଚଞ୍ଚଳ କରିପକାଏ । କଳଗମ୍ଭୀର—ଅସ୍ଫୁଟ ଅଥଚ ଗମ୍ଭୀର । ଦ୍ରୋଣକୁମର—କାକର ପୁତ୍ର, କୋକିଳ ।

ଅସାଧାରଣ ମାର୍ଗଣଗଣ      ବହେ ଶ୍ରବଣ ଯାଏ କମାଣ
ଓଟାରି ପୁଣ ପଣ କରିଣ କେଳଶୀପତିଣ ଯେ
ଅକ୍ଷି ଯୋଖିଣ ଅନ୍ତଃକରଣ—      ମଧ୍ୟକୁ ପୁଣ ପୁଣ ପ୍ରେରଣ
କରଇ ବାଣ ଅପରିମାଣ କ୍ଷଣକୁ କ୍ଷଣ ଯେ
ଅନ୍ୟ ପରାଣ କରିଯାନ୍ତା ପ୍ରୟାଣ ଯେ
ଅଟନ୍ତି ସେ ପୁରାଣ ପୁରୁଷରାଣ ଯେ
ଅରୁଣଗଣ ତୋଷ କରଣ      କିବା କରିଣ ଦହେ ଈକ୍ଷଣ
ଫେଡ଼ି ବୀକ୍ଷଣ କଲେ ହରିଣ-ଲକ୍ଷ୍ମ-ଲକ୍ଷଣ ଯେ । ୧୧ ।
ଅନାଇ ସ୍ମରି ଏ ଅବସର      ଶରକୁ ଶର ଯୋଖି ଅସର
ନ କରି ପରିହାରଇ ହରି ଉରି ଉପରି ଯେ
ଅଛେ ଝଙ୍କାରି କରେ ଭ୍ରମର ଧରଇ ସ୍ୱର, କୁମାରୀବର
ଅଛନ୍ତି ପୁରତରେ ଯେ ମାରି ମୋହ-ମନ୍ତ୍ରି ଯେ
ଅନୁସନ୍ଧରେ ଧୀରି ଧୀରି ସମୀରି ଯେ
ଅବ୍ୟକ୍ତରେ ମଧୁରି ପିକରି ଗିରି ଯେ

---

ଅଳିନିକର—ଭ୍ରମରମାନେ, ମିଳି—ଏକାଠି ହୋଇ । ଝଙ୍କାର କେଳି—ଗୁଣୁଗୁଣୁ ଶବ୍ଦ କରିବାରୂପକ କ୍ରୀଡାରେ; ମାରଘୋରବିକାର—କାମ ସମ୍ବନ୍ଧୀୟ ଉତ୍କଟ ବିକାର । ସର୍ବଲୋକର—ସମସ୍ତ ଲୋକଙ୍କର । ମୋହପ୍ରକାର—ବାକ୍ଷିପ୍ତଚିତ୍ତତା (ମନର ଅସ୍ଥୈର୍ଯ୍ୟ) । ସତ୍ୱର—ହଠାତ୍ । ଅଚ୍ଛତର—ଅତି ନିର୍ମଳ । ପୀୟୂଷକର—ଚନ୍ଦ୍ର । କର—କିରଣ । ମଣ୍ଡିଲ—ଶୋଭିତ କଲା । ପରମେଷ୍ଠୀ—ବ୍ରହ୍ମା । କ୍ଷୀର ଫେନ—ଦୁଧଫେଣ । ଅବନୀ ପର—ପୃଥିବୀର ପୃଷ୍ଠକୁ ଧୋଇଲା କି ? ନିକର—ସମୂହ । ତାରୁଁ ତାର—ଉଜ୍ଜ୍ୱଳତର । ୧୧ । ଅସାଧାରଣ—ଅଦ୍ଭୁତ । ମାର୍ଗଣ—ବାଣ । କମାଣ—ଧନୁ । କେଳଶୀ—ରତି । ରତିପତି—କାମ । ଅକ୍ଷି ଯୋଖିଣ—ଶରମୂନ ଓ ଲକ୍ଷ୍ୟବସ୍ତୁ ସଙ୍ଗେ ଆଖିକୁ ମିଳାଇ । ଅନ୍ତଃକରଣ—ହୃଦୟ । ପ୍ରୟାଣ—ଗମନ । କ୍ଷଣକୁକ୍ଷଣ—ଅନବରତ । ପୁରାଣପୁରୁଷ—ଆଦିପୁରୁଷ । ଅରୁଣଗଣ—ଦ୍ୱାଦଶ ସୂର୍ଯ୍ୟ । ସୂର୍ଯ୍ୟପତ୍ନୀ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସହି ନ ପାରିବାରୁ ତାଙ୍କ ପିତା ସୂର୍ଯ୍ୟଙ୍କୁ ବାର ଖଣ୍ଡ କରି ଦେଇଥିଲେ । ବାରମାସରେ ସେହି ବାରଖଣ୍ଡର ଉଦୟ ହୋଇଥାଏ । ଈକ୍ଷଣ—ଆଖି । ବୀକ୍ଷଣ—ଦେଖିବା । ହରିଣ-ଲକ୍ଷ୍ମ-ଲକ୍ଷଣ—ଶିବ । ୧୨ । ଅସର ନ କରି—ଅବସର ନ ଦେଇ । ଉରି—ଛାତି । କୁମାରୀବର—ପାର୍ବତୀ । ପୁରତରେ—ସମ୍ମୁଖରେ । ମାର-ମୋହ-ମନ୍ତ୍ରି—କାମର

ଅସ୍ତ୍ର-ପ୍ରକର ଧରି ମକର        ଚଢ଼ିଛନ୍ତି କ୍ରୂର ଶମ୍ବରପର
ତୁହ୍ମଁ ଶଙ୍କର ଏହୁ ପ୍ରକାର ଚମତ୍କାର ଯେ ।୧୨।
ଅନ୍ଧକଜିତ ସେ ରତିକାନ୍ତ—        ଶୁଣ ଅଦ୍ଭୁତ ତୁହ୍ମଁ ତ୍ୱରିତ
ହେଲେ ପ୍ରମତ୍ତ କୋଧେ ଯେମନ୍ତ କାଳ-କୃତାନ୍ତ ଯେ
ଅକ୍ଷିରେ ପୂତ କରି ଅଯୁତ        କୋଟି-ପ୍ରମିତ ପ୍ରଜ୍ୱଳ ଜାତ—
ବେଦ କୋପିତ ଅପାଙ୍ଗ ପାତ କଲେ ହରିତ ଯେ
ଅଙ୍ଗହତ ହୋଇଲା ସେ ଚିତ୍ତଜାତ ଯେ
ଅସ୍ଥି ହିଁ ତ ହୋଇଲା ତା ଭସ୍ମୀଭୂତ ଯେ
ଅନାଇ ଗତପ୍ରାଣ ଜୀବିତ—        ନାଥ ଅମିତ କୋଧେ ଯୋଷିତ
କରେ ରୁଦିତ ହୃଦେ ତାଡିତ କରୁଣ ହାତ ଯେ ।୧୩।
ଅମାନ ଦ୍ୱେଷବଶେ ମହେଶ        ଅନଙ୍ଗ ନାଶ କରି ବିରସ
ଲଭି ବିଶେଷ ତପେ ସନ୍ତୋଷ ନୋହେ ମାନସ ଯେ
ଅନେକ ଆଶ ବିଘ୍ନ ପ୍ରକାଶ        ହେବାରୁ ବାସ ପାଇ ଗିରୀଶ
ସେହୁ ଗିରୀଶଦେଶନିବାସ ଛାଡିଲେ ଈଶ ଯେ
ଅମ୍ବିକାର ଉଲ୍ଲାସ ହୋଇଲା କୃଶ ଯେ
ଅକ୍ଷେ ଦିଶନ୍ତି ଶଶଧର-ଶୀରଷ ଯେ
ଅଶନ ବେଶ ସୂକ୍ଷ୍ମନି ବାସ        ଖେଳ ବିଳାସ ଶୟନ ବାସ
ହାସ ସୁରସ ସୁପରିହାସ ମଣିଲେ ବିଷ ଯେ ।୧୪।

---

ବଶୀକରଣ ମନ୍ତ୍ରସ୍ୱରୂପା । ଅନୁଯଙ୍ଗରେ—ଗତି କରେ । ଅସ୍ତ୍ରପ୍ରକର—ଅସ୍ତ୍ରସମୂହ । କ୍ରୂର—ନିର୍ଦ୍ଦୟ । ଶମ୍ବରପର—କାମ । ଚମତ୍କାର—ଆଶ୍ଚର୍ଯ୍ୟାନ୍ୱିତ । ୧୩ । ଅନ୍ଧକଜିତ—ମହାଦେବ । ରତିକାନ୍ତସିତ—କାମର ତଙ୍ଗ । ତ୍ୱରିତ—ଶୀଘ୍ର । କାଳକୃତାନ୍ତ—ଯମର ଯମ ପରି । ଅଯୁତ କୋଟି ପଦଦ୍ୱୟ ଏଠାରେ ଅସଂଖ୍ୟତା ପ୍ରକାଶ କରିବାକୁ ପ୍ରଯୁକ୍ତ ହୋଇଅଛି । ପ୍ରଜ୍ୱଳ ଜାତବେଦ—ଦାଉ ଦାଉ ହେଉଥିବା ନିଆଁ । ହରିତ—ଦିଗମାନଙ୍କରେ । ଅଙ୍ଗହତ—ଅଙ୍ଗହୀନ । ଚିତ୍ତଜାତ—କାମ । ଗତପ୍ରାଣ—ମୃତ । ଜୀବିତନାଥ—ପ୍ରାଣେଶ୍ୱର, କାମ । ଅମିତ—ଅଧିକ । ଯୋଷିତ—କାମସ୍ତ୍ରୀ, ରତି । ୧୪ । ଅମାନ—ଅପରିମିତ । ଦ୍ୱେଷବଶେ—କୋଧହେତୁ । ମହେଶ—ଶିବ । ବିରସ—ଦୁଃଖିତ । ଆଶବିଘ୍ନ—ବାଞ୍ଛିତ ବିଷୟରେ ବ୍ୟାଘାତ । ଶଶଧର ଶୀରଷ—ଚନ୍ଦ୍ରଚୂଡ ମହାଦେବ । ସୂକ୍ଷ୍ମନିବାସ—ସୂକ୍ଷ୍ମବସ୍ତ୍ର(ଦୁକୂଳ) । ବାସ—ଗୃହ ।

[ ସର୍ବସ୍ୱସ୍ୱବୃତ୍ତି ]

ଅଖିଳେଶ୍ୱର୍ ଆତ୍ମଭୂ ସୁର୍— ଇନ୍ଦ୍ରାଦି ଶୁଭ୍ ଇଷ୍ଟ ଯାହାର୍
ଉମା-ରୁଚିର୍-ଉଜ୍ଜ୍ୱଳପର୍ ରୁଦ୍ର ଶଙ୍କର୍ ହେ
ଅରୂପ ସ୍ମରଲୁପ୍ତପ୍ରକାର୍ ଏକା ଠାକୁର୍ ଐଶ୍ୱର୍ଯ୍ୟଧର୍
ଓଁକାରାକ୍ଷର୍ ଔନ୍ନତ୍ୟ ଯାର୍ ଅସଙ୍ଗୋଚର୍ ଯେ
ଅକାରାଦି ଏତେ ସ୍ୱର୍ ଉଗାର୍ ଯେ
ଅଥ କାଦି କ୍ଷାନ୍ତର୍ ବୀଜମନ୍ତ୍ରର୍ ଯେ
ଅର୍ଦ୍ଧମାତ୍ରାର୍ ପରେ ଯା ପୁର୍ ସଂହାରାନ୍ତର୍ ସ୍ଥିତି ଯାହାର୍
ନୃପତିବର ବଳଭଦ୍ରର୍ ଦରକୁ ହର୍ ହେ । ୧୫ ।

———

୧୫ । ଅଖିଳେଶ୍ୱର—ଯେ ବିଶ୍ୱର ଈଶ୍ୱର । ଆତ୍ମଭୂ—ବ୍ରହ୍ମା । ସୁର-ଇନ୍ଦ୍ର (ସୁରେନ୍ଦ୍ର)—ଇନ୍ଦ୍ର । ଆଦି—ପ୍ରଭୃତି ଦେବତାମାନଙ୍କର । ଶୁଭ—ମଙ୍ଗଳ । ଯାହାର ଇଷ୍ଟ—ବାଞ୍ଛିତ । ଉମା-ରୁଚିର-ଉଜ୍ଜ୍ୱଳପର—ପାର୍ବତୀଙ୍କ ମନୋହର ଶୃଙ୍ଗାର ରସ ଯାହାର (ପର)ପ୍ରଧାନ ଅର୍ଥାତ୍ ଶୃଙ୍ଗାର ଭାବରେ ଯେ ଉମାଙ୍କଠାରେ ଆସକ୍ତ । ଅରୂପ—ରୂପହୀନ । ସ୍ମରଲୁପ୍ତପ୍ରକାର—କନ୍ଦର୍ପର ବିନାଶକାରୀ । ଏକା ଠାକୁର—ଏକମାତ୍ର ବିଶ୍ୱନିୟନ୍ତା । ଐଶ୍ୱର୍ଯ୍ୟଧର—ଅଣିମା, ଲଘିମା ଇତ୍ୟାଦି ଐଶ୍ୱର୍ଯ୍ୟର ଧାରଣକାରୀ । ଓଁକାରାକ୍ଷର—ଯେ ସୃଷ୍ଟି ସ୍ଥିତି ପ୍ରଳୟ; ସତ୍ତ୍ୱ ରଜଃ ତମଃ ଓଁ ଶକ୍ତିର ସମବେତ ମୂର୍ତ୍ତି ।

ଅକାରେ ଭଗବାନ୍ ବ୍ରହ୍ମା, ଉକାରେ ବିଷ୍ଣୁରୁଚ୍ୟତେ ।
ମକାରେ ଭଗବାନ୍ ରୁଦ୍ରୋଽପ୍ୟର୍ଦ୍ଧ— ମାତ୍ରା ମହେଶ୍ୱରୀ । ଇତି । ସ:ବଂ:ଅ:

ଅକାରଠାରୁ କ୍ଷକାର ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣ ବର୍ଣ୍ଣମାତୃକା ନାମରେ ଖ୍ୟାତ । ଅର୍ଦ୍ଧମାତ୍ରା—ଏହା ଶକ୍ତିର ନାମାନ୍ତର । ନାଦର (ସ୍ପନ୍ଦନର) ଏହା ମୂଳ ହେତୁ । ସଂହାରାନ୍ତର—ପ୍ରଳୟ ପରେ । ଯାହାର ସ୍ଥିତି—ଯେ ଏକମାତ୍ର ଅବଶିଷ୍ଟ ରହନ୍ତି । ଦର—ଭୟ ।



# ଏକାଦଶ ଛାନ୍ଦ

## ରତି-ବିଳାପ

ଅଦେହ ହେବାରୁ ହର-ନେତ୍ରାନଳେ ରମଣ
ଅତି ଦୁଃଖେ କେଳଣୀ ଚିନ୍ତା କରଇ କାନ୍ତଗୁଣ * । ୧ ।
ଅନାଥ କରିଣ ନାଥ ଛାଡ଼ିଗଲ ହେ କାହିଁ
ଅଶୋଭା ଦିଶିବ ସିନା*ମୋର କାଢ଼ିଲେ କରୁ ରତ୍ନବାହୀ । ୨ ।
ଅଳକୁ ସିନ୍ଦୂର ଚିତା ପୋଛୁଥିବି କେମନ୍ତେ
ଅଲଗା ଦିଶିବ ପରା ମୋ'ମୁଖ ତାଙ୍କ ଦୂର ହୋନ୍ତେ । ୩ ।
ଅଞ୍ଜନ ରଞ୍ଜନ ପୁଣି ନୋହିବ ମୋ ନୟନେ
ଅଏଁଲାର ଶୋଭା-ଗନ୍ଧ ଚୂଡ଼ାରେ ମଣ୍ଡିବ ନାହିଁ ଦିନେ । ୪ ।
ଅମୂଲ୍ୟ ହାରହିଁ ପରା ନ ମଣ୍ଡିବ ମୋ ହୃଦେ
ଅଳତା ସରୁ କର ଘେନିବ ନାହିଁ ଏ ଗୃହୁ ପଦେ । ୫ ।
ଅସ୍ତ୍ରୁଝର ଝର ନେତ୍ର ଦିଶିବ ଯେ ଅଶୋଭନ
ଅଳକରେ କର ମାରୁ ମାରୁ ସରିବ ନାହିଁ ଦିନ । ୬ ।
ଅନୁଦିନେ ଆନେ ଆନେ ପତ୍ରାବଳୀ ମୋ କୁଚେ ଲିହୁ
ଅଳିଆଳି ମତ୍ତଗ୍ରୀତରକୁ ଚରିବ ଏବେ କେହୁ । ୭ ।

---

ଏକାଦଶ ଛାନ୍ଦ

୧ । ଅଦେହ—ଦେହହୀନ । ରମଣ—ସ୍ୱାମୀ, କାମ । କେଳଣୀ—ରତି ।
୨ । ରତ୍ନବାହା—ରତ୍ନ ଖଡ଼ୁ ଓ କାଚ । ୩ । ଅଳକୁ—ଲଲାଟରୁ । ଅଲଗା—ବିଲକ୍ଷଣ (ଅସୁନ୍ଦର) । ୪ । ଶୋଭାଗନ୍ଧ—ସୁନ୍ଦରମାଳା । ୬ । ଅସ୍ତ୍ରୁଝର—ଲୁହଧାର ।
୭ । ଅନୁଦିନେ—ପ୍ରତିଦିନ । ଆନେ ଆନେ —ନୂଆ ନୂଆ । ପତ୍ରାବଳୀ—କସ୍ତୁରୀ,

*କେଳଣୀ ବିଳାପ କରଇ ଚିନ୍ତା ପୁଣ । ଇତି [ଖ] *ମୋ କର କାଟିଲେ ରତ୍ନବାହା ।

ଅରନ୍ଧ୍ରେ ଦିନ କ୍ଷଣ ତ ଯୁଗ ପରି ଏ କାଣି
ଅଙ୍କ ଶଣା ପଲଙ୍କେ ବସଇ ନାହିଁ ମୁଁ ଅଲକ୍ଷଣୀ । ୮ ।
ଅଖିଳମଣ୍ଡନା ହୋଇ ନରମାଂସୀ ତ ହେଲି
ଅବଲମ୍ବେ ଫାଟିଯା ହୃଦୟ ହା ପ୍ରାଣନାଥ ବୋଲି । ୯ ।
ଅଙ୍କେ ଥାଇ ମୁଁ ଛାଇ ନ ଛାଡଇ ହେ ନାଥ*
ଅଙ୍ଗନାକୁଳକୁ ହେଲି କଳଙ୍କ ଘେନନ୍ତେ ପ୍ରୀତିପଥ । ୧୦ ।
ଅଙ୍ଗ ଭସ୍ମ ହେଲା ତୋର ଅଶ୍ମ ହେଲା ମୋ ଛାତି
ଅଗ୍ନିନେଵ ମୋ ପରେ ନ ପକାଇଗଲେ ପଶୁପତି । ୧୧ ।
ଅକାଠ ଖାଇଛୁ କଛୁ ନ କାଟଇ ପ୍ରାଣକୁ
ଅଛୁ ଏବେ ଛୁ-ଛୁ ବାଣୀ ଶୁଣି ଇତର କ ପଣକୁ । ୧୨ ।

—ପୁନରୁକ୍ତି ବଦାଭାସ—

ଅନ୍ତର ହୃଦରୁ ଆଶ୍ଳେଷରେ କାଢ଼ୁ ହାର
ଅସମପୀରତି ରତି କାମକୁ ଦିଅନ୍ତି ଦୃଷ୍ଟାନ୍ତର । ୧୩ ।

---

ଚନ୍ଦନାଦ୍ରେରେ ରଚିତ ଚନ୍ଦ । ଲନ୍ତୁ—ରଚନା କରୁ । ମକଶ୍ମ—ଗଣ୍ଡଦେଶରେ ଚନ୍ଦନାଦ୍ରେରେ ରଚିତ ଚନ୍ଦ । ୮ । ଅରନ୍ଧ୍ରେ—ନିର୍ବିଶେଷରେ । ୧୦ । ମୁଁ ଅଙ୍କରେ (କୋଳରେ) ଥାଏ ଓ ଛାଇକୁ ସୁଦ୍ଧା ଛାଡ଼େ ନାହିଁ । 'ମଛାଇ' ପାଠକଲେ—ମୁଁ କୋଳରେ ଥାଇ ତୁମ୍ଭ ଦେହ ଛାଇ ସଙ୍ଗେ ମୋ ଦେହ ଛାଇକୁ ମିଶାଇଥାଏ । ୧୧ । ଅଶ୍ମ—ପଥର । ୧୨ । ଅକାଠ—ଏକକାଷ୍ଠୀୟ ପାର୍ବତୀୟ ଲତା । ଏହା ନିୟମପାଳନପୂର୍ବକ ଖାଇଲେ ଶରୀର ବଜ୍ରପରି କଠିନ ହୁଏ ବୋଲି ପ୍ରବାଦ ଅଛି । ୧୩ । ଏଠାରୁ ଛାନ୍ଦ ଶେଷ ପର୍ଯ୍ୟନ୍ତ ପୁନରୁକ୍ତିବଦାଭାସ ଅଳଙ୍କାର । ଲକ୍ଷଣ —ବାକ୍ୟରେ ବ୍ୟବହୃତ ପଦମାନ ଆପାତତଃ ସମାନାର୍ଥକ ବୋଧ ହେଲେହେଁ ପରିଣାମରେ ଭିନ୍ନାର୍ଥ ବୁଝାଇଲେ ତାହାକୁ ପୁନରୁକ୍ତିବଦାଭାସ କହନ୍ତି । ଯଥା— ଅନ୍ତର, ହୃଦରୁ;ଅନ୍ତର ଓ ହୃଦୟ ସମାନାର୍ଥକ;ତଥାପି ଏଠାରେ ଅନ୍ତର—ବିଚ୍ଛେଦ ହୃଦରୁ—ଚିନ୍ତା କରିବାରୁ; ହୃଦୟର ଧର୍ମ ଚିନ୍ତା କରିବା; ତେଣୁ ତାହାର କାର୍ଯ୍ୟ ବୁଝାଇବାକୁ ଉକ୍ତ ପଦର ବ୍ୟବହାର । ଅଶ୍ଳେଷ—ଆଲିଙ୍ଗନ । କାମ ଓ ରତିର ପ୍ରୀତି ଅସମ (ଅସାଧାରଣ) ବୋଲି ଦୃଷ୍ଟାନ୍ତର (ଉଦାହରଣ) ଦେଇଥାନ୍ତି । ୧୪ ।

ଅହ୍ନ ଅହ୍ନକ ଚରିତ ଚନ୍ତ୍ରଲେ ତୋ ବର ପତି
ଅନ୍ତ ଶେଷମୁଖରେ ହେବ କି ତେ ମୋର ଭୂପତି । ୧୪।
ଅଙ୍ଗତନୁ ହେବ ଗୁଣି ଗୁଣମାନ ସେ ମନେ
ଅମ୍ବୁ ନିରନ୍ତରେ ଝରି ନୟନୁଁ ପୂରିବ ଏ ସଦନେ । ୧୫ ।
ଅହିନାଗ ପରି ଅଙ୍ଗ ପରେ ହୋଏ ଏହାର
ଅଚଳ ପର୍ବତବତ ଏ ଝିନ ବସନ ଲଗେ ଭାର । ୧୬ ।
ଅମ୍ବୁଦଘନଶ୍ୟାମଳ ସୁନ୍ଦର ତୋ ଶ୍ରୀଅଙ୍ଗ
ଅବ୍ଜ ପଦ୍ମ ସରି ନିକି ମୁଖକୁ ଧଇର୍ଯ୍ୟ ଭରେ ଅଙ୍ଗ । ୧୭ ।
ଅରୁଣ ବାଳାର୍କ ଜିଣି ଶୋଭି ଦିଶେ ଅଧର
ଅଳ୍ପ ଦରହସିତେ ଈଷିତେ ମୋହେ ସେ ତିନିପୁର । ୧୮ ।
ଅବନୀର ସାର ଭୁହ୍ନ ଜନ-ଆନନ୍ଦକାରୀ
ଅନନ୍ତ ସୁଖରେ କ୍ରୀଡ଼ା କରଉ କାଠରୁ ବ୍ରହ୍ମୋପୁରୀ । ୧୯ ।
ଅଗ୍ନି ପାବକ ଅଙ୍ଗ ତୋ ଦହିଲ ଯେ ଅଦୋଷେ
ଅମର ଦେବ ତୋ ପ୍ରାଣ ଘେନାଇଁ ରହିଲେ ସ୍ୱର୍ଗବାସେ । ୨୦ ।
ଅବ୍ଜାସନ ଆତ୍ମଭୂ ମାଇଲୁ ରେ ନ ବିଗୁରି
ଅପବନରେ କି ତୃଣ ଚଳଇ ଭୁଆଣ ଏ ତୋହର । ୨୧।

---

ଅହ୍ନ ଅହ୍ନକ—ଦିନ ଦିନକର । ବରପତି—ଶ୍ରେଷ୍ଠ ସ୍ୱାମୀ । ଶେଷ—ବାସୁକି । ତୁମ୍ଭର ଦିନ ଦିନକର ପ୍ରୀତିକଥା ବାସୁକିର ସହସ୍ର ମୁଖରେ ମଧ୍ୟ କହିହେବ ନାହିଁ । ୧୫ । ଅଙ୍ଗ ତନୁ ହେବ—ଶରୀର କ୍ଷୀଣ ହେବ । ସଦନେ—ଘରେ ।୧୬। ଅହିନାଗ—ଅହିଶ୍ରେଷ୍ଠ । ଅଚଳ ପର୍ବତ—ଦୃଢ଼ ପର୍ବତ ।୧୭। ଅମ୍ବୁଦ ଘନଶ୍ୟାମଳ—ମେଘ ପରି ଗାଢ଼ ନୀଳବର୍ଣ୍ଣ । ଅବ୍ଜ ପଦ୍ମ ସରି—ଚନ୍ଦ୍ର ଓ ପଦ୍ମର ବିରୋଧ ପରି । ନିକି—ସତେ କି ? ଉତ୍ପ୍ରେକ୍ଷାବ୍ୟଞ୍ଜକ ଅବ୍ୟୟ । ୧୮ । ଅରୁଣ ବାଳାର୍କ—ରକ୍ତ-ବର୍ଣ୍ଣ ପ୍ରାତଃକାଳର ସୂର୍ଯ୍ୟ । ୨୦ । ପାବକ ଅଙ୍ଗ—ପବିତ୍ର ଶରୀର । ଅମରଦେବ—ଇନ୍ଦ୍ର ।୨୧। ଅବ୍ଜାସନ—ବ୍ରହ୍ମା । ଆତ୍ମଭୂ—ଆତ୍ମାରୁ ଜାତ, କାମ । ଅପର ପକ୍ଷରେ ପୁତ୍ର ବା କନ୍ୟା ମାରଣ ଅତି ଅନୁଚିତ, ଏହା 'ଆତ୍ମଭୂ' ପଦ ପ୍ରୟୋଗ ଦ୍ୱାରା ଦର୍ଶା-ଇଛନ୍ତି । ଅପବନରେ—ପବନ ବହୁ ନ ଥିବା ବେଳେ, ଅର୍ଥାତ୍ କାରଣ ନ ଥାଇ ।

ଅକ୍ଷିରେ ଅଧୀରେକ୍ଷଣ କାନ୍ତ ନାୟକ ଗୁଣ
ଅନୁସରି ହାତ ଧରେ ଭାଜଇ କାନ୍ଦଇ ପୁଣପୁଣ । ୨୨।
ଅଙ୍ଗ ତନୂଦ୍‌ଗୀର ହୁଅଇ ଯେ କାତର
ଅବା ଯିବ ପଗ୍ୱଣ ବାହାର କୁଣ୍ଠିତ କଣ୍ଠସ୍ୱର । ୨୩ ।
ଅମ୍ବୁଜାତଜନ୍ମା ଅଗ୍ରେ ଜଣାଇଲେ ଯେ ସୁର
ଅଦେହ କାମ ତ ହୋଇଲା କେମନ୍ତେ ହୋଇବ ଏ ସଂସାର । ୨୪।
ଅମର ଅମୃତବଳେ ଜୀଆଇଲେ ମଦନ
ଅସ୍ତେ ବଳଦେବ ବଳଭଦ୍ର ମଙ୍ଗଳ କର ଦାନ । ୨୫

—o—

# ଦ୍ୱାଦଶ ଛାନ୍ଦ

## ପାର୍ବତୀଙ୍କ ସ୍ୱପ୍ନ

ଅସିତକଣ୍ଠେ ଉତ୍କଣ୍ଠା ବହି
ଅଦ୍ରିସୁତା ଦୁଃଖେ ଛନ୍ତି ଶୋଇ
ଅଚେତନବଶେ ଦେଖିଲେ ସ୍ୱପ୍ନେ ସେ
ବରଷା ସମୟ ଅଛି ହୋଇ । ୧ ।

---

କାର୍ଯ୍ୟ ହୁଏ ନାହିଁ ।୨୨। ଅଧୀରେକ୍ଷଣ—ଅଧୀର (ବ୍ୟସ୍ତ) ଚକ୍ଷୁ ହୋଇ । କାନ୍ତ—ଅଭିଳଷିତ । ଅମ୍ବୁଜାତ—ପଦ୍ମ । ତହିଁରୁ ଯାହାର ଜନ୍ମ—ବ୍ରହ୍ମା । ବଳଦେବ—କେନ୍ଦୁଝର ରାଜବଂଶର ଇଷ୍ଟ ଦେବତା ।

———

ଦ୍ୱାଦଶ ଛାନ୍ଦ

୧ । ଅସିତକଣ୍ଠେ—ନୀଳକଣ୍ଠେ ବା ମହାଦେବଙ୍କଠାରେ । ଅଚେତନବଶେ—ବାହ୍ୟଜ୍ଞାନଶୂନ୍ୟ ହୋଇଥିବାରୁ ।

ଅମ୍ବୁଦ ଗରଜ ଗମକୁଛନ୍ତି
ଅବଳାଙ୍କ ଛାତି ଚମକୁଛନ୍ତି
ଅସି କରକଣି                କାସି କାମ କରେ ସେ
ବିଜୁଳି-ବିଳାସେ ଝମକୁଛନ୍ତି । ୨ ।

ଅଚଳ ଚୂଳେ ଚନ୍ଦ୍ରକୀ ଚଢି
ଅତି ଭୟେ ଦେଲେ କେକା ରଡି
ଅସ୍ଥିରେ ଏଥିରେ                ପଥରେ ପଥିକ
ମଣିବନ୍ଧ ଗଲେ ନାଡୀ ଛାଡି । ୩ ।

ଅହ୍ନେ ପୂର୍ଣ୍ଣ ପୂର୍ଣ୍ଣ ଅନ୍ଧକାର
ଅନୁସଙ୍ଗରେ ତସ୍କର ବାର
ଅସିତ ଭୂଷିତ—                କାସ ବେଶେ କେଉଁ
କୁନ୍ଦନାଙ୍ଗୀ କଲେ ଅଭିସାର । ୪ ।

ଅନଳ ପ୍ରବଳେ ପ୍ରଚଳିଲେ
ଅଙ୍ଘ୍ରି ବିଦେଶୀର ନ ଚଳିଲେ
ଅମରାବତୀ ନୃ—                ପତି ଧନୁ ତୋଷ
ତନୁ ଅତନୁ ତରଳ କଲେ ।୫।

ଅବନୀମଣ୍ଡଳେ ମେଘ ମାଡି
ଅକାଡି ପଡୁଛନ୍ତି ଘଡଘଡି
ଅକ୍ଷି ବିଦ୍ୟୁଲ୍ଲତା                ଲକ୍ଷିପାରୁ ନାହିଁ
ଦେଖି ଯା ପଲକ ଯାଏ ପଡି । ୬ ।

---

୨ । ଗମକୁଛନ୍ତି—ଗମଗମ ଶବ୍ଦ କରୁଛନ୍ତି । କାମ ବିଜୁଳି ଛଳରେ ଖଡ୍ଗକୁ ହାତରେ କରକଣି ( ଦୃଢରୂପେ ଧରି ) କାଣି ( ଖଣ୍ଡିକାଣ ମାରି ) ଝମକୁଛନ୍ତି ।—ଝମଝମ କରୁଛନ୍ତି କି ? ଏଠାରେ ଘଡଘଡି ଶବ୍ଦ ଝଣତ୍କାର । ୩ । ଚନ୍ଦ୍ରକୀ—ମୟୂର-କେକା—ମୟୂରର ଧ୍ୱନି । ମଣିବନ୍ଧ—ହାତକବଜା । ୪ । ଅହେ—ବନରେ । ପୂର୍ଣ୍ଣ ପୂର୍ଣ୍ଣ—ଅତିପୂର୍ଣ୍ଣ । ତସ୍କରବାର—ଚୋରମାନେ । ବନରେ ଅସିତ······ଅଭିସାର— କୃଷ୍ଣବର୍ଣ୍ଣ ଅଳଙ୍କାର ଲୁଗା, କସ୍ତୂରୀ ଇତ୍ୟାଦି କୃଷ୍ଣ ଦ୍ରବ୍ୟରେ ଭୂଷିତା ହୋଇ କେଉଁ ସ୍ୱର୍ଣ୍ଣବର୍ଣ୍ଣା କୃଷ୍ଣାଭିସାରିକା ରୂପରେ ଅଭିସାର କଲେ । ବନରେ ଏହି ଭ୍ରମ ହେଉଛି । ୫ । ଅମର···ତୋଷ— ଇନ୍ଦ୍ରଧନୁର ଉଜ୍ଜ୍ୱଳତା । ଅତନୁତରଳ—କାମଭାବରେ ଅସ୍ଥିର । ୬ । ଅକ୍ଷି···ପଡି—ଆଖି ବିଜୁଳିକୁ ଦେଖି ପାରୁନାହିଁ ; କାରଣ ପଲକ ପଡି ଯାଉଛି ।

ଅନଶେ ଡ଼ାହୁକ-ଡ଼ାକ ତୂରୀ
ଅଗ୍ରେ ବଜାଉଛନ୍ତି ଭେକ ଭେରୀ
ଅତନୁସୈନ୍ୟ ବିଜୟ କରେ କି
ଅଜେୟ ଶତ୍ରୁକୁ ଜୟ କରି । ୭ ।
ଅଟଳ-ଗିରି-ଗଡ଼ରେ ଜାଣି
ଅମ୍ବୁଦ-ତମ୍ବୁ ତା ଅଛି ଠାଣି
ଅନିଳ-ଦୂତ ସେ ଦିଶେ ଦିଶେ ପେଷି
ଖୋଜୁଛି ବିରହୀ ବିରହିଣୀ । ୮ ।
ଅଟେ ପ୍ରକଟ କେତକୀ-କୁନ୍ତ
ଅମ୍ବୁଧାରାକାଣ୍ଡ କାଣ୍ଡ ସତ
ଅରଜୁନ-ବାଜି— ବକସ୍ରଜ ସାଜି
ଅବିରତେ କରେ ଗତାଗତ । ୯ ।
ଅନ୍ଧାର ପ୍ରଚଣ୍ଡ ଗୁଣ୍ଡିବାର
ଅନୁଦିଗେ ରେପିଅଛି ମାର
ଅବକଳ ହଳ— ପ୍ରିୟ-କଳୀ-ଗୁଳ
ବିଜୁଳିଜାଳ ଜାମୁକା ତାର । ୧୦ ।
ଅବଶ୍ୟ ମଲେ ବିଯୋଗି-ଯୁବା
ଅଖିଳେ ତାଙ୍କୁ ରଖିବ କେ ବା
ଅଙ୍ଗନା-ପୟୋଧ— ର-ପରବତରେ
ପଶିଲେ ପ୍ରାଣ ପାଇବେ ଅବା । ୧୧ ।

---

୭ମ ପଦ ଠାରୁ ୧୧ଶ ପଦ ପର୍ଯ୍ୟନ୍ତ କାମଙ୍କର ବିଜୟଯାତ୍ରାରୂପେ ବର୍ଷା ବର୍ଣ୍ଣନା । ୮ । ଅଟଳ···ଠାଣି—ଅଟଳ (ଅଟଳ) ସହଜରେ ଅତିକ୍ରମ କରି ନ ହେବା ଭଳି ପାହାଡ଼ ପାଖରେ ଗଡ ବାନ୍ଧି ରହିଲେ ବିଜୟୀ ରାଜାର ଶତ୍ରୁ-ଆକ୍ରମଣ-ଭୟ ନ ଥାଏ । ୯ । ଧଳାବଗରୂପ ଘୋଡ଼ାରେ ଯିବା ଆସିବା କରୁଛି । ବର୍ଷାକାଳରେ ମେଘ ପାଖରେ ବକ ଉଡିବା ସ୍ୱାଭାବିକ । ୧୦ । ଗୁଣ୍ଡି—ତୋପ, ରେପିଅଛି—ସଜାଡ଼ି ରଖିଛି । ମାର—କାମ । ଅବକଳ—ସମ୍ଭାବନା କରୁଛି । ହଳପ୍ରିୟ-କଳୀ—ବଳଦେବଙ୍କର ପ୍ରିୟ କଦମ୍ବକଳି । ଅଙ୍ଗନା ପୟୋଧର ପରବତ—କାମିନୀର କୁଚରୂପ ପର୍ବତ । ଭୀତବ୍ୟକ୍ତି ପ୍ରାଣରକ୍ଷା ପାଇଁ ପର୍ବତଗୁହା ଆଶ୍ରୟ କରେ । ଜାମୁକା—ଯେଉଁ

ଅନଙ୍ଗରଙ୍ଗେ ତରଙ୍ଗ ହୋଇ
ଅଧ୍ୱନେ ପାନ୍ଥକୁ ବାଳା ଚାହିଁ
ଅଳ୍ପବୟସେ ଏଥେ ପରବାସେ ମୋର
ବର ବରଷା ବଞ୍ଚିବେ କେହ୍ନେ । ୧୨ ।

ଅପାର ଚେଷ୍ଟ କାନ୍ତକୁ ଦୂଷି
ଅବଳା କେ ରୋଷେ ଥିଲା ବସି
ଅମିତ ନିର୍ଘାତ— ଘାତ ଉତପାତ—
ପାତେ ପତିକୋଳେ ଗଲା ପଶି । ୧୩ ।

ଅନ୍ତର ମଣି କେ କାଢ଼ି ହାର
ଅମୃତ-କୁଚ-କଳଶ ଭାର
ଅକାଣ୍ଡ କାନ୍ତକୁ ସକାଣ୍ଡ ଭୁଜରେ
ଉକାଣ୍ଡଦେଲା କନ୍ଦର୍ପଶୂର । ୧୪ ।

ଅଙ୍ଗନା-କୁଚ-କନ୍ଦରେ କେହ୍ନେ
ଅନଙ୍ଗ-ଅନର୍ଥେ ଲୁଚ ରହ୍ନେ
ଅଶ୍ମକ ଚୁମ୍ବକେ ଲଗିଲା ପରି କେ
ଭିଡିଲା ତନୁରେ ତନୁ ଦେଇ । ୧୫ ।

ଅଜାଗ୍ରତେ ଦେଖିଲେ ଏ ରୀତି
ଅସଭ୍ୟ କରି ନ ଘେନେ ମତି
ଅନ୍ଧକ-ବିନାଶୀ ଏହା କାଳେ ଆସି
ମିଳିଲେ ତରୁଣୀ-ମଣି-କଣ୍ଠ । ୧୬ ।

ଅନେକ ପ୍ରକାରେ ଗୃହ୍ୟ କରି
ଅଙ୍କରେ ପଙ୍କଜାକ୍ଷୀକି ଧରି
ଅଧରୁ ମଧୁର ମଧୁକୁ ଆହାର
କଲେ କି ବନ୍ଧୁର ମନ ହରି । ୧୭ ।

---

ବାଉ ବା ରଜ୍ଜୁଖଣ୍ଡର ଅଗରେ ନିଆଁ ନେଇ ତୋପରେ ଲଗାନ୍ତି । ୧୨ । ତରଙ୍ଗ—ଅସ୍ଥିର । ଅଧ୍ୱନେ—ବାଟରେ । ବର—ସ୍ୱାମୀ । ବରଷା ବଞ୍ଚିବେ କେହ୍ନେ—ବର୍ଷା ଋତୁ କିପରି କଟାଇବେ ।୧୩। ନିର୍ଘାତ—ଗର୍ଜ୍ଜନ । ୧୪ । ଅନ୍ତର—ବ୍ୟବଧାପକ, ଯେ ଅଲଗା କରି ରଖେ । ଅଶ୍ମକ—ପଥର । ୧୬ । ଅଜାଗ୍ରତେ—ସ୍ୱପ୍ନରେ ।

ଅବଲମ୍ବ କରି କୁଚକୁମ୍ଭ
ଅବଲମ୍ବେ କଲେ ପରିରମ୍ଭ
ଅନା ଧନ ! କହୁ     ଅନ୍ତର୍ଦ୍ଧାନ ହୋଇ
ଯାନ୍ତେ ଗଲା ତାହାଁ ନିଦ୍ରାରମ୍ଭ । ୧୮ ।
ଅକ୍ଷି ଫିଟାଇ ଦିଅନ୍ତେ ଗୃହୁ
ଅନ୍ତରେ ନାହାନ୍ତି ପ୍ରାଣସାଇଁ
ଅକାଳ-ଚତୁର     ସେକାଳେ ମସ୍ତକ—
ପରେ ପଡ଼ିଲା ବଜ୍ର ହୋଇ । ୧୯ ।
ଅରି ଆକାରି କରୁଣ ଧନୁ
ଅଗ୍ରେ ପ୍ରହାରେ କୁସୁମଧନୁ
ଅହ୍ନ ଚକ୍ରବାକ     କାନ୍ତା ସଙ୍ଗ ପରି
ସ୍ୱପନ ଭିନ୍ନ କୋହିଲା ମନୁଁ । ୨୦ ।
ଅକ୍ଷି ବୁଜନ୍ତି ଦେଖିବା ପାଇଁ
ଅନୁଭବ ଆଉ ହେବ ତାହିଁ
ଅନୁବିଗେ ଅନୁ—     କ୍ଷଣେ ଈକ୍ଷଣରେ
ପ୍ରକାଶିଲେ କାଶୀପୁର-ସାଇଁ । ୨୧ ।
ଅସମ୍ଭାଳ ଶୋକେ ଦୁଃଖୀ ହୋଇ
ଅଶକ୍ତ ହେଲେ ଚନ୍ଦ୍ରମୁହୀଁ
ଅସରି ନ କରି     ଅସମ-ଶାୟକ
ଅସଂଖ୍ୟ ଶାୟକ ଦେଲା ଛାଇ । ୨୨ ।
ଅନ୍ଧକାରି ଦିଶେ ଦଶଦିଶ
ଅନ୍ଧକାରି ଭବ ଦିଗବାସ

---

୧୮ । ପରିରମ୍ଭ—ଆଲିଙ୍ଗନ । ନିଦ୍ରାରମ୍ଭ—ନିଦ୍ରାର କାର୍ଯ୍ୟ । ୨୦। ଅର ଆକାର—ଚନ୍ଦ୍ରପରି ବୃତ୍ତାକାର । ଅହ୍ନଚକ୍ରବାକ—ଦିବସର ଚକ୍ରବାକ । ଦିନରେ ଚକୁଆ-ଚକୀର ମିଳନ ଓ ରାତିରେ ବିଚ୍ଛେଦ ହୋଇଥାଏ ।୨୧। ଆଖି ବୁଜିଲେ କେଜାଣି ବା ଆଉ ଥରେ ସ୍ୱପ୍ନ ଦେଖିବ ଏହି ଆଶାରେ । ଅନୁବିଗେ—ଚାରିଆଡ଼େ । ଅନୁ-କ୍ଷଣେ—ପ୍ରତି ମୁହୂର୍ତ୍ତରେ । କାଶୀପୁର ସାଇଁ—ମହାଦେବ ।୨୨। ଅସରି—ଅବ-ସର । ଅସମଶାୟକ—ବିଷମେଷୁ, କାମ । ଦେଲା ଛାଇ—ଭରିଦେଲା, ସର୍ବାଙ୍ଗରେ ବିଦ୍ଧ କଲା ।୨୩। 'ହେ ଅନ୍ଧକଧ୍ୱଂସୀ,ହେ ଭବ,ହେ ଦିଗମ୍ବର,ହେ ଅଗତିର ଗତି'

ଅଗଡଗଡ଼ ଶି— ବ ହର ଶଙ୍କର
ନାମ ଅଧରରେ କଲେ ବାସ । ୨୩ ।
ଅହି-ଭୂଷଣ ଅହଂସାପର
ଅହିତ ସୁହିତ ସମ ଯାର
ଅହିମକର-ହି— ମକର ଅନଳ—
ଅକ୍ଷ ପକ୍ଷକରେ ଭଞ୍ଜିବୀର । ୨୪।

## ତ୍ରୟୋଦଶ ଛାନ୍ଦ

### ପାର୍ବତୀ-ବିବାହ

ରାଗ—ଆଷାଢ଼ଶୁକ୍ଳ
[ପ୍ରାନ୍ତ ଯମକ]

ଅଚଳ-ଦୁଲାଲୀ ଅତ ଦୁଃଖରେ
ଅର୍ଦ୍ଦିତ ହୋଇ କାମ-ବଶିଖରେ
ଅମ୍ବୁ ପୂର୍ଣ୍ଣକର ଅମ୍ବୁଜାକ୍ଷରେ
ଅପ୍ରସନ୍ନଭାବ ରଖି ମୁଖରେ
ଅଙ୍ଗ-ବସୁଖରେ
ଅତ ଦୀର୍ଘଶ୍ୱାସ ତେଜନ୍ତ ଖରେ । ୧ ।

---

ଇତ୍ୟାଦ ନାମ ଉମାଙ୍କ ଓଷ୍ଠରେ ବାସ କଲା । ୨୪ । ଅହିଭୂଷଣ—ସର୍ପଭୂଷିତ । ଅହଂସାପର—ହଂସାଶୂନ୍ୟ । ଅହିତ—ଅମଙ୍ଗଳ । ସୁହିତ—ମଙ୍ଗଳ, ଉଭୟ ଯାହାର ସମାନ ଓ ଯାହା ପବିତ୍ର ଗଙ୍ଗା ଓ ଚିତାଭସ୍ମ ଧାରଣଦ୍ୱାରା ସୁସ୍ପଷ୍ଟ । ଅହିମକର—ସୂର୍ଯ୍ୟ । ହିମକର—ଚନ୍ଦ୍ର । ଅନଳ—ଅଗ୍ନି । ଏମାନେ ଯାହାଙ୍କର ଅକ୍ଷ । ମହାଦେବଙ୍କର ଦକ୍ଷିଣ ଚକ୍ଷୁ ସୂର୍ଯ୍ୟ, ବାମ ଚକ୍ଷୁ ଚନ୍ଦ୍ର ଓ ଲଲାଟସ୍ଥ ଚକ୍ଷୁ ଅନଳ ବୋଲି ଶାସ୍ତ୍ରପ୍ରସିଦ୍ଧି ଅଛି । ପକ୍ଷ—ସହାୟ ।

ତ୍ରୟୋଦଶ ଛାନ୍ଦ

୧ । ଅମ୍ବୁଜାକ୍ଷ—ପଦ୍ମନେତ୍ର । ଅର୍ଦ୍ଦିତ—ପୀଡିତ । ବଶିଖ—ବାଣ ।

ଅନ୍ତର୍ଗତରେ ପଡ଼ନ୍ତେ ସ୍ୱପନ
ଅକ୍ଷେ ଦିଶନ୍ତି ଧବଳ ଲପନ
ଅପଘନରେ ପ୍ରକଟେ କମ୍ପନ
ଅନ୍ତରେ ଜଳେ ବିରହ ତପନ
ଅଗ୍ନି ଉତ୍ତପନ
ଅଧିକେ କରେ ଚନ୍ଦନ-ଲେପନ । ୨ ।
ଅନାଦର ହେଲା ନାନା ଭୋଗରେ
ଅମୃତ-ଅଶନ ମଣିଲେ ଗରେ
ଅକ୍ଷି ପଲକ ଲେଖିଲେ ଯୁଗରେ
ଅସିତଗଳ ସକଳ ଦିଗରେ
ଅଗ୍ରେ ସଗ୍ଗରେ
ଅନାଶେ ଦିଶିଲେ ଦୃଶଯୁଗରେ । ୩ ।
ଅଙ୍ଗତପତ୍ତ ସଂସାର-ବାହାର
ଅନାଶେ ଛୁଟେ ଫୁଟି ପଡ଼େ ହାର,
ଅବଲୋକନ ତ ନାହିଁ ଯାହାର
ଅଧୈର୍ଯ୍ୟ ଏଥି ନୋହିବ କାହାର
ଅକ୍ଷିରୁ ତାହାର
ଅନ୍ତର ହେଲା ପଲକବହାର । ୪ ।
ଅନୁମାନ କଲେ ସଖୀନିକର
ଅଟେ ଏ ପୀଡ଼ା ଋତୁନାୟକର
ଅନ୍ୟ ବେଦନା ନୁହଇ ନିକର
ଅତନୁ-ସାନ୍ତ୍ୱନା ଚଳସ୍ତ୍ରା କର
ଅଙ୍ଗେ ଦିଅ କର
ଅନାଅ ପୂରିଛୁ ତପ୍ତି-ପ୍ରକର । ୫ ।

---

ଅପ୍ରସନ୍ନ—ବିରସ । ଖରେ—ଶୀଘ୍ର ଶୀଘ୍ର । ୨ । ଧବଳଲପନ—ଧଳାମୁଖ, ଶିବ । ବିରହତପନ—ବିରହସୂର୍ଯ୍ୟ । ୩ । ଗରେ—ବିଷରୂପରେ । ଲେଖିଲେ—ମନେ କଲେ । ଅସିତଗଳ—ନୀଳକଣ୍ଠ, ମହାଦେବ । ଦୃଶଯୁଗରେ—ଦୁଇ ଆଖିରେ । ୪ । ବିରହ ତାପରେ ଦେହ ମୁକ୍ତାହାର ଫୁଟିବା କବି ପ୍ରୌଢ଼ୋକ୍ତି ସିଦ୍ଧ । ପଲକବହାର—ଆଖିପତାର ପଡ଼ିବା ଖୋଲିବା । ୫ । ଅତନୁସାନ୍ତ୍ୱନା—କାମସ୍ୱବଶାନ୍ତି । ଅନ୍ୟ ପକ୍ଷେ ଅଧିକ ସାନ୍ତ୍ୱନା । ଅତନୁ—ଅଧିକ, ତନୁ (ଅଳ୍ପ) ନୁହେଁ ।

ଅବଜ-ପଲ୍ଲବେ ଅଳକ୍ତ ରଚିଲେ
ଅବଳାମଣିଙ୍କ ତହିଁ ସଞ୍ଚିଲେ
ଅନିଳବଳେ ଉଦର ପାଞ୍ଚିଲେ
ଅଳପ ଧୀରେ ପଲ୍ଲବେ ବଞ୍ଚିଲେ
        ଅଶ୍ରୁ କେ ମୁଞ୍ଚିଲେ
ଅବ୍ଜ-କଳା-ତୁଳା ବାଳା ଅର୍ଚ୍ଚିଲେ । ୬ ।
ଅପରାଜିତା ଚଣ୍ଡୀ-ଚରଣ
ଅଭ୍ୟର୍ଥି ସ୍ତୋତ୍ର କଲେ ବରଣ
ଅର୍ତ୍ତିନାଶନ ଆର୍ତ୍ତ-ତାରଣ
ଅଭ୍ୟଙ୍କର ନାମ ଉଚ୍ଚାରଣ
        ଅଘ-ନିବାରଣ
ଅତି ଚେତରେ କେ କରେ ସ୍ମରଣ । ୭ ।
ଅରିଷ୍ଟବଳ ଦିଏ କେ ସୁ-ବାରେ
ଅଭୀଷ୍ଟ ପଚ୍ଛରେ ଗଣକବାରେ
ଅଙ୍ଗୁଳି-ଯୋଗେ କେ ନିଃଶ୍ୱାସ ବାରେ
ଅବଧ୍ନ-ଖଡ଼ି ପାତଇ କେ ବାରେ
        ଅନିଷ୍ଟ ନିବାରେ
ଅମୃତ-ଭୋଗ ଯାଚେ କେ ଦେବାରେ । ୮ ।
ଅଙ୍ଗନା କେ ପିକ-ଡ଼ାକ ବାରୁଛି
ଅଳି-ଝଙ୍କାର ଧ୍ୱନି ନିବାରୁଛି

---

୬ । ଅବ୍ଜ ପଲ୍ଲବେ—କୋମଳ ପଦ୍ମପଦରେ । ସଞ୍ଚିଲେ—ଥୋଇଲେ, ଶୁଆଇଲେ । ବାମଙ୍କନତ କୃଶତା ଉଡ଼ିଯିବା ପ୍ରତି ହେତୁ । ଅବ୍ଜ···ବାଳା—ଚନ୍ଦ୍ରର ଏକ କଳା ପରି ଅତି କ୍ଷୀଣ । ଅର୍ଚ୍ଚିଲେ—ସେବା କଲେ । ୮ । ଅରିଷ୍ଟବଳ—କାକବଳି । 'ଅରିଷ୍ଟଃ କରଟଃ କାକୋବଳିପୁଷ୍ଟଃ ସକୃତ୍ପ୍ରଜଃ' ଇତି ହଳାୟୁଧଃ । ସୁ-ବାରେ—ଉତ୍ତମ ବାରରେ (ରବିବାର ପ୍ରଭୃତି ଦିନରେ) । ଅଭୀଷ୍ଟ—ମନକଥା । ଗଣକବାର—ଜ୍ୟୋତିଷୀମାନଙ୍କୁ । ବାରେ—ପରୀକ୍ଷା କରେ । ଅବଧ୍ନ···ବାରେ—ଭଲ ହେବ କି ମନ୍ଦ ହେବ କଳନା କରି 'ରାମ ଲକ୍ଷ୍ମଣ ସୀତା' ପ୍ରଭୃତି ତାଙ୍କ ଗାର କାଟୁଛି ।

ଅନିଳ-ମାର୍ଗ ନିରୁନ୍ଧ କରୁଛି
ଅବ୍ଜ-କର କେ ପିଧାନ କରୁଛି
ଅଙ୍ଗୁଳି ଠାରୁଛି
ଅଗାର-ସାକ୍ଷୀ-ପଠନେ ଡରୁଛି । ୯ ।

ଅଙ୍ଗଦାହ ଗୃହୁଁ ବେଗି ଭୁଲଇ
ଅବ୍ଜକରଜ ମଳୟଜ ଗୋଳଇ
ଅବଳାମଣି-ତନୁରେ ବୋଳଇ
ଅଧିକେ ହୃଦ ଲେପନେ ଜଳଇ
ଅଧୀରେ ଚଳଇ
ଅଚେଷ୍ଟାରୁ କେ ଉଶୀର ଖୋଳଇ । ୧୦ ।

ଅନ୍ତଃକବନକୁ ଚଳି ତ୍ୱରିଏ
ଅମ୍ବୁପେଟୀ ସପୁରି କେ ପରିଏ
ଅସିତଗ୍ରୀବ-ସେବକ କେ ରିଏ
ଅମ୍ବୁ-ଅମ୍ବୁଜରେ ସେବା କରିଏ
ଅଧର ଥରିଏ
ଅଶ୍ରୁବନରେ ନୟନ ପୂରିଏ । ୧୧ ।

ଅନିଶେ ବାଳା ହେବାରୁ ଆକୁଳ
ଅଧଇର୍ଯ୍ୟ ହୋଇ ସଖୀ-ସଂକୁଳ
ଅନଙ୍ଗ-ବ୍ରତବଧି-ଦ୍ରବ୍ୟକୁଳ
ଅଣାଇ କଲେ ପୁନଃ ଅନୁକୂଳ
ଅଶୋକ ମୁକୁଳ
ଅମ୍ବୁଜ ନୀଳଉତ୍ପଳ ବକୁଳ । ୧୨ ।

ଅଦ୍ଭୁତେ ଆସି ଏହି କାଳରେ
ଅନ୍ତକେ ବସି ବକୁଳ-ଡାଳରେ

---

୯। ବାରୁଛି—ନିଷେଧ କରୁଛି । ଅନିଳମାର୍ଗ—ଝରକା । ଅବ୍ଜକର—ଚନ୍ଦ୍ରକିରଣ। ପିଧାନ କରୁଛି—ଘୋଡ଼ାଇ ପକାଉଛି । ଅଗାରସାକ୍ଷୀ—ଘରପୋଷା ସାରି । ୧୦ । ଅବ୍ଜକରଜ—କର୍ପୂରଚୂର୍ଣ୍ଣ । ମଳୟଜ—ଚନ୍ଦନ । ଉଶୀର—ବେଣାଚେର । ୧୧ । ତ୍ୱରିଏ—ଶୀଘ୍ର । ଅମ୍ବୁପେଟୀ—ପଇଡ । ପରିଏ—ତୋଳାଉଛି । ଅସିତଗ୍ରୀବ-ସେବକ—ଶିବପୂଜକ । ରିଏ—ଡ଼କାଉଛି । ଅଶ୍ରୁବନ—ଲୁହପାଣି । ୧୨ । ସଖୀ-

ଅଣ୍ଡୀର କୋକିଳ ଠେକ କୁଳରେ
ଅଛିରେ କୁହୁ ଡାକେ ଉତ୍ତାଳରେ
        ଅନଳଜାଳରେ
ଅଜାଣିଲି କି ଘୃତ ପ୍ରବଳରେ ।୧୩ ।
ଅଧୀରେ ଧୀର୍ ଚମକି ପଡ଼ିଲି
ଅତନୁଙ୍କ ଶରେ ତନୁ ପୀଡ଼ିଲି
ଅନାଉଁ ଅନାଉଁ ଚେତା ବୁଡ଼ିଲି
ଅନାଇଁ ସଖୀଙ୍କ ନାଡ଼ୀ ଛାଡ଼ିଲି
        ଅମ୍ବୃକେ ଲୋଡ଼ିଲି
ଅଳକେ ଆଳୀ କେ କର ଭାଳିଲି ।୧୪ ।
ଅର୍ଦ୍ଧଘଡ଼ି ସେ ହୋଇଲେ ଅଜ୍ଞାନ
ଅନେକ ଯତନେ ଲଭିଲେ ଜ୍ଞାନ
ଅନିଳ ଧୀରେ ଏ କାଳେ ବହିଲା
ଅନଳ ପରାଏ ଦେହ ଦହିଲା
        ଅଙ୍ଗନା-ବିରସେ
ଅତିଦୁଃଖେ ତାକୁ କହଇ ସ୍ନେହେ ।୧୫ ।
ଅଟେ ମନ୍ଦଭାବ ତୋର ତ ଗୁଣ
ଅସ୍ଥିରେ କରୁ ନିରତେ ଭ୍ରମଣ
ଅହି ବିଷମୁଖୁଁ ଉଦ୍‌ଗାର ହୋଇ
ଅଙ୍ଗ କାହିଁ ପାଇଁ ଦହୁ ନାହିଁ ?
        ଅଗ୍ନିସଖା ପୁଣି
ଅଙ୍କେ ଶୀତଳ ବୋଲନ୍ତି ନ ଜାଣି ।୧୬ ।

---

ସଙ୍କୁଳ—ସଖୀଗଣ । ମୁକୁଳ—କଳୀ ।୧୩। ଠେକକୁଳରେ—କୋକିଳମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଉତ୍ତାଳରେ—ଉଚ୍ଚତାଳରେ ବା ତାଳକୁ ଅତିକ୍ରମ କରି । ଏତ ଉନ୍ମାଦନା ଏପରି ହେବାର ହେତୁ ।୧୪। ସଖୀଙ୍କ—ଏଠାରେ ପାର୍ବତୀଙ୍କି । ଆଳୀ—ସଖୀ । ୧୬ । ଅହିବିଷମୁଖୁଁ—ସର୍ପର ବିଷପୂର୍ଣ୍ଣ ମୁଖରୁ । ମଳୟ ପର୍ବତର ଚନ୍ଦନ ଗଛରେ ବହୁତ ସାପ ଅଛନ୍ତି । ସେମାନେ ପବନକୁ ଆହାର କଲାବେଳେ ସେମାନଙ୍କ ବିଷରେ ଦକ୍ଷିଣାପବନ ବିଷାକ୍ତ ହୋଇଥିବାର କବି ପ୍ରୌଢୋକ୍ତିସିଦ୍ଧ । ଅଗ୍ନି-

( ନିନ୍ଦାଗର୍ଭ ସ୍ତୁତି )

ଅଖିଳ ପାଦପରେ ତୋ ବିଶ୍ରାମ
ଅଟେ ତ ସ୍ୱତଃ ପ୍ରଭଞ୍ଜନ ନାମ
ଅଦୋଷେ ଶାଖିଗଣ ନାଶକରୁ
ଅନେକ ସୁମନଙ୍କ ବାସ ହରୁ
ଅନ୍ତରୀକ୍ଷେ ସ୍ଥିତ
ଅଟେ ମାରୁତ ବୋଲି ତୋର ଖ୍ୟାତ । ୧୭ ।
ଅମୃତକରକୁ ବୋଲନ୍ତି ଗିର
ଅବକଳଇ ତୁ ତ ଦୋଷାକର
ଅର୍ଦ୍ଧ ତଲମ୍ବୌଳ ଶିରେ ବସିଲେ
ଅର୍ଦ୍ଧାଙ୍ଗି କ୍ୱାପାଁ ନ କରିବୁ ଭଲେ
ଅଟୁ ତ କଲଙ୍କୀ
ଅଧର୍ମକୁ ତୋର ଡର ଥିଲେ କି । ୧୮ ।

---

ସଖା – ବାୟୁ । ଅଗ୍ନିଙ୍କର ନାମ ବାୟୁସଖ । ୧୭ । ନିନ୍ଦାଗର୍ଭସ୍ତୁତି—ଲକ୍ଷଣ । ଯହିଁରେ ସ୍ତୁତି ଉକ୍ତ ହୁଏ ଓ ଗୌଣରୂପେ ନିନ୍ଦା ବୋଧପଡ଼େ । ସ୍ତୁତି-ଅଖିଳ ପାଦପରେ—ବୃକ୍ଷ ଉପରେ ତୁ ବିଶ୍ରାମ କରୁ । ତୋର ଅପର ନାମ 'ପ୍ରଭଞ୍ଜନ' । ଏହି ସମୟରେ (ଶାଖୀ) ବୃକ୍ଷମାନଙ୍କୁ ବିନାଶ କରିଥାଉ, ଅନେକ (ସୁମନ) ଫୁଲର ( ବାସ ) ଗନ୍ଧ ହରଣ କରୁ ( ଅନ୍ତରୀକ୍ଷରେ ) ଆକାଶରେ (ସ୍ଥିତ) ଅବସ୍ଥାନ କରୁ, ତୋର ମାରୁତ ବୋଲି ( ଖ୍ୟାତ ) ପ୍ରସିଦ୍ଧି ଅଛି । ନିନ୍ଦା—(ଅଖିଳ) ସମସ୍ତଙ୍କର ( ପାଦ ) ଗୋଡ଼ଉପରେ ବିଶ୍ରାମ କରୁ । (ପ୍ରଭ-ଞ୍ଜନ) ଘରଭଙ୍ଗା – କଳଙ୍କୀ ନାମ ଧରୁ । ବିନା ଦୋଷରେ (ଶାଖୀ)ସାକ୍ଷୀମାନଙ୍କର ପ୍ରାଣନାଶ କରୁଁ । ଅନେକ (ସୁମନ) ଉତ୍ତମ ବ୍ୟକ୍ତିଙ୍କର ବାସ (ଲୁଗା) ଉଡ଼ାଇ ନେଉ, (ଅନ୍ତରୀକ୍ଷେ) ଆକାଶରେ ତୋର (ସ୍ଥିତି) ଅବସ୍ଥାନ; ତେଣୁ ତୁ ଭୂତ; ଭୂତ ଅନ୍ତରୀକ୍ଷରେ ରହେ । କଥାରେ କହନ୍ତି ସେ "ଅନ୍ତରୀକ୍ଷିଆ" ହୋଇ ବୁଲୁଛି ଅର୍ଥାତ୍ ତାହାର ଘରଦ୍ୱାର ନାହିଁ, ତୁ ଜଗତ୍‌କୁ ମାରୁ ତ ! ତେଣୁ ତୋ ନାମ 'ମାରୁତ' । ୧୮ । ଅମୃତକର—ଚନ୍ଦ୍ର । ଅବକଳଇ—ଜାଣିଲି । ଦୋଷାକର—ରାତ୍ରି-କାରୀ, ଅପର ପକ୍ଷେ ଦୋଷର ଆକର । ଚନ୍ଦ୍ର (ଈଶ୍ୱର) ଶିବଙ୍କର ସେବକ ହେବା ଉଚିତ; କିନ୍ତୁ ଶିବଙ୍କ ଅନୁଗ୍ରହରୁ ତାଙ୍କ ମୁଣ୍ଡରେ ବସିଛି । ଅତଏବ "ନୀଚଃ ଶ୍ଳାଘ୍ୟ-ପଦଂ ପ୍ରାପ୍ୟ କର୍ତ୍ତାରଂ ହନ୍ତୁମିଚ୍ଛତି" ବାକ୍ୟକୁ ସାର୍ଥକ କରୁଛି । କୋଡିଆ ମହା-ଦେବଙ୍କୁ ନ ଡରିଲା ପରି କଳଙ୍କୀ (ପାପୀ) ସେ ଅଧର୍ମକୁ ଜାହିଁକି ଡ଼ରିବ ?

ଅଟେ ଯେ ମିତ୍ର ଉଦୟରେ ମ୍ଳାନ
ଅବଶ୍ୟ ତାମସୀ-ଯୋଗେ ପ୍ରସନ୍ନ
ଅଭୀଷ୍ଟ ଜରେ ଯେ ବାରୁଣୀ-ସେବା
ଅସ୍ତ ଉଦୟ ତା ନିଶ୍ଚିତ ଅବା
    ଅବଳାଙ୍କୁ ମାରୁ
ଅଛୁ ଯେ ଚନ୍ଦ୍ର ଏହା ନ ବିସ୍ମରୁ । ୧୯ ।
ଅଶନିପାତ ପିକବାଣୀ ଶୁଣି
ଅତି ଦୁଃଖେ ତାକୁ କହନ୍ତି ପୁଣି
ଅଟଇ ମୁକୁଳବତୀ ତ ସତ
ଅଶନ କରିବୁ କି ପରଭୃତ
    ଅଗ୍ନି ତୋ ଏ ଗିର
ଅଙ୍ଗ ତ ଜାଳି ଦେଉଅଛୁ ମୋର । ୨୦ ।
ଅନଙ୍ଗଙ୍କୁ ପୁଣି ବୋଇଲନ୍ତି ଚଳି
ଅନ୍ଧକାର ତ ତୋତେ ଦେଲେ ଜାଳି
ଅଇଲୁ ପୁଣି ଦେହ ପ୍ରାଣ ପାଇ
ଅଡ଼ୁ କି ସାରୁଅଛୁ ମୋର ତହିଁ
    ଅତି ବିଚକ୍ଷଣ
ଅବଳା-ଜନକୁ ସମସ୍ତେ ଠାଣ । ୨୧ ।

---

୧୯ । ମିତ୍ର—ସୂର୍ଯ୍ୟ ଓ ବନ୍ଧୁ; ସୂର୍ଯ୍ୟ ଉଦୟ ହେଲେ ଚନ୍ଦ୍ର ମଳିନ ହୁଏ । ଅପର ପକ୍ଷରେ ( ମିତ୍ର ) ସଖାର ଉଦୟ (ଉନ୍ନତି)ରେ କଳା ପଡ଼ିଯାଏ । ତାମସୀ—ରାତ୍ରି ଓ ତମୋଗୁଣଯୁକ୍ତା ସ୍ତ୍ରୀ । ରାତ୍ରିରେ ଚନ୍ଦ୍ର ଉଜ୍ଜ୍ୱଳ ହୁଏ । ଅପର ପକ୍ଷରେ ତମୋଗୁଣଯୁକ୍ତ ସ୍ତ୍ରୀ ସହିତ ମିଳିତ ହେଲେ ଆନନ୍ଦ ହୁଏ । ବାରୁଣୀ ସେବା—ପଶ୍ଚିମ ଦିଗକୁ ଗତି ଓ ମଦ୍ୟ (ସେବା) ପାନ ଯାହାର (ଅଭୀଷ୍ଟ) ବାଞ୍ଛନୀୟ । ୨୦ । ମୁଁ (କୁଳବତୀ) କୁଳୀନା ସ୍ତ୍ରୀ ତ ଅଟେଁ ଏହା ସତ, ତୁ ମୋତେ କାଅଣ ( ମୁକୁଳବତୀ ) ବଉଳଯୁକ୍ତା ଚୂତଲତିକା ଭଳି ( ଅଶନ ) ଭକ୍ଷଣ କରିବୁ କି ? ୨୧ । ଅଡ଼ୁକରିବା—ପ୍ରତିଶୋଧ ନେବା । ଅବଳା—ସ୍ତ୍ରୀ, ବଳହୀନ ।

ଅଳିମାଳ ଗୁଣ ଫୁଲ କୋଦଣ୍ଡ
ଅଶୋକ ନିଆଳୀ ଫଳୀତ କାଣ୍ଡ
ଅଦେହ ସ୍ୱଭାବେ ପୁଣି ରତୀଶ ।
ଅବଳା କିପାଁ ନ କରିବୁ ନାଶ
        ଅଲଙ୍ଘ୍ୟ ଶୃଙ୍ଖଳ
ଅନାଛି ଯାହା ଭଲେ ବିଗରେଲ । ୨୨ ।
ଅକଳଙ୍କ କୁଳେ ଲଗାଉ ଅଙ୍କ
ଅବ୍ଜାସନ ସୁତା-ରସେ ଉତ୍ସୁକ ।
ଅସ୍ପୃଶ୍ୟ ନାରୀ ହରେ ପରଶର
ଅଧନ ସୀତାଯୋଗେ ଦଶଶିର
        ଅଘଟ ଘଟାଉ
ଅଙ୍ଗନା--ପାଦେ ଯତିକା ଲୋଟାଉ । ୨୩ ।
ଅଙ୍କୁଶହୀନ ହସ୍ତୀ ପରି ତୁହି
ଅମତା ମାତି ଯାଉ ଯହିଁ ତହିଁ
ଅଣୁ ଜୀବଠାରୁ ସ୍ଥାଣୁ ସରିକି
ଅସ୍ଥିର କରୁ ପୁରୁଷ ନାରୀଙ୍କି
        ଅଗମ୍ୟା ଗମନ
ଅଧର୍ମ-କର୍ମ-କାରଣ ତୁ ହୀନ । ୨୪ ।
ଅବନୀଭୂଷାର ଏ ଦଶା ଦେଖି
ଅନଙ୍ଗପ୍ରଭା ନାମେ ପ୍ରିୟସଖୀ

---

୨୨ । (ଅଳିମାଳ) ମାଳା ଆକାର ଭ୍ରମରଗଣ ତୋହର (ଧନୁର) ଗୁଣ । ଫୁଲ ତୋର (କୋଦଣ୍ଡ) ଧନୁ । ଅଶୋକ ନିଆଳୀ ଆଦି ତୋର ଶର, ତୁ ଅଦେହ ଅର୍ଥାତ୍ ତୋର ଦେହ ନାହିଁ, ଏପରି ଉପକରଣ ଘେନି ତୁ (ଅବଳା) ବଳ-ହୀନା ସ୍ତ୍ରୀ ନ ମାରି ଆଉ କଣ ବୀରପୁରୁଷକୁ ମାରିବୁ ? ଅନା'ଛି ବିଚାର ଦେଖ, ଦର୍ଶନାର୍ଥକ ଧାତୁ ଜ୍ଞାନାର୍ଥକ ହୁଏ । ୨୩ । ( ଅବ୍ଜାସନ ) ବ୍ରହ୍ମା ( ସୁତାରସେ ) କନ୍ୟା ସରସ୍ୱତୀଙ୍କଠାରେ ଆସକ୍ତ ହେବା କଥା ପୁରାଣପ୍ରସିଦ୍ଧ । ୨୪ । ଅଣୁ ( ପରମାଣୁ ) ଆକାର ଜୀବଠାରୁ (ସ୍ଥାଣୁ) ଶିବ ( ବ୍ରହ୍ମ ) ପର୍ଯ୍ୟନ୍ତ । ଅଧର୍ମ-କାରଣ—ଅଧର୍ମ କାର୍ଯ୍ୟର ହେତୁ ।

ଅଳଙ୍କାର-ରୂପ ପଟ୍ଟେ ଲେଖିଲ
ଅଙ୍ଗେ ବାଳାର ନେଇ ଦେଖାଇଲ ।
ଅନାଇଁ ତା ପ୍ରମା
ଅନେକ ସୁଖ ଲଭେ ଧର-କେମା । ୨୫ ।
ଅନୁକ୍ଷଣେ ପଟ୍ଟ ହୃଦରେ ଥୋଇ
ଅନଙ୍ଗଚାପ-ଶାନ୍ତି କି ଭଜଇ
ଅହି ଅମରନଦୀ ଅବଜକଳା
ଅଳକ-ଧର ଅରୁଣାବ୍ଜ-ଡୋଳା
ଅର୍ଦ୍ଧ-ଯୁଗ-ଦଣ୍ଡେ
ଅଳପରିଏ ଭଞ୍ଜିବ୍ରଜା ଭଙ୍ଗେ । ୨୬ ।

---

୨୫ । ଅବନୀଭୂଷା—ପୃଥିବୀର ଅଳଙ୍କାରସ୍ୱରୂପା । ଧରକେମା—ପର୍ବତ କନ୍ୟା, ପାର୍ବତୀ । ୨୬ । ଅହି—ସର୍ପ । ଅମରନଦୀ—ଗଙ୍ଗା । ଅବ୍‌ଜକଳା—ଚନ୍ଦ୍ରକଳା । ଏ ସମସ୍ତଙ୍କୁ (ଅଳକରେ) ମସ୍ତକରେ ଯେ ଧାରଣ କରନ୍ତି । (ଅରୁଣ) ସୂର୍ଯ୍ୟ (ଅବ୍‌ଜ) ଚନ୍ଦ୍ର, ଏ ଦୁହେଁ (ଡୋଳା) ନେତ୍ର ଯାହାଙ୍କର ।



# ଚତୁର୍ଦ୍ଦଶ ଛାନ୍ଦ

## ପାର୍ବତୀଙ୍କ ତପସ୍ୟା ଓ ବରପ୍ରାପ୍ତି

ରାଗ—ବସନ୍ତ

ଅନ୍ତର ହେବାରୁ ହର | ହରଣୀନୟନା ହର—
ଷଣ୍ଡ ସେହି ସଙ୍ଗେ ହେଲା ଦୂର,
ଅସାର ମଣିଲେ ସାର— | ସଂସାର-ସୁଖ ତୁଷାର—
କର-ଶିର-ରୂପ ହୃଦେ କଲା ପୂର ସେ । ଅଦ୍ରି ସୁତା ।
ଅନ୍ତର୍ଗତେ କରଣ ବଶ୍ୟର
ଅଭୀଷ୍ଟଦ ତପ-କରଣେ ତତ୍ପର ସେ । ୧ ।
ଅମ୍ବୁଦ-କାଳରେ ଜଳ | ଭିତରେ ପଶି ପ୍ରବଳ
ତପସ୍ୟା କରନ୍ତ ଅହୋରାତ୍ର,
ଅଶନ କୋମଳ ପତ୍ର | ପିଅନ୍ତ ପବନ ମାତ୍ର
କେତେ କେତେ ବଡ କୃଶ ହେଲା ଗାତ୍ର ସେ । ଅଦ୍ରି ସୁତା ।
ଅଭିମତ କାର୍ଯ୍ୟେ ଲୋଭ ବହି
ଅପଘନ ଶୀର୍ଣ୍ଣ ହେଲା ଚନ୍ତା ନାହିଁ ସେ । ୨ ।
ଅଂଶୁକ ନ ରଖି ଦେହେ | ହିମ ଶିଶିର ସମୟେ
ସମୀର-ସମ୍ମୁଖେ କ୍ଳେଶ ସହି,
ଅଭ୍ୟାସ କରନ୍ତ ତପ | ଦିନକୁ ଦିନ ଅମାପ
ଜପ-ହୋମ-ତର୍ପଣାଦିମାନଙ୍କୁହି । ସେ ଅଦ୍ରି ସୁତା ।
ଅର୍କ ତେଜେ ନିଦାଘେ ବସନ୍ତ
ଅନ୍ୟ ବିଷୟରେ ଲେଶେ ନ ରସନ୍ତ ସେ । ୩ ।

---

ଚତୁର୍ଦ୍ଦଶ ଛାନ୍ଦ

୧ । ତୁଷାର···ରୂପ—ଚନ୍ଦ୍ରଙ୍କୁ ମସ୍ତକରେ ଧରିଥିବା ଶିବଙ୍କର ରୂପ । ଅଭୀଷ୍ଟଦ—କାମନାପୂରକ । ୨ । ଅମ୍ବୁଦ କାଳରେ—ବର୍ଷାଦିନେ । ଅଭି···ନାହିଁ—ନିଜ ଉଦ୍ଦେଶ୍ୟ ସିଦ୍ଧି ଉପରେ ଅଧିକ ଲୋଭ ଥିବାରୁ ଦେହ କ୍ଷୀଣ ହେଲେ ସୁଦ୍ଧା ସେ ବିଷୟରେ ଚିନ୍ତା ପର୍ଯ୍ୟନ୍ତ କରୁ ନ ଥିଲେ । ୩ । ଅଂଶୁକ—ଲୁଗା । ହିମଶିଶିର ସମୟେ—କାର୍ତ୍ତିକଠାରୁ ମାଘ ଶେଷ ଯାଏ । ସମୀର-ସମ୍ମୁଖେ—ବେଗ ବହୁଥିବା ବାଗକୁ ମୁଖ କରି । ନିଦାଘେ—ଖରାଦିନେ । ଅର୍କତେଜେ—ଖରାରେ ।

ଅଲ୍ପ ବେଳେ ଏହିରୂପେ          ବହିଲେ କଠୋର ତପେ
ପାଇବାକୁ ପ୍ରାଣପତି ସଙ୍ଗ,
ଅନ୍ନ ପୟଃ ଫଳ ମୂଳ          ପଲ୍ଲବ ଜଳ ଅନଳ
କ୍ରମେ ପାନ କରୁ ଝଡିଗଲା ଅଙ୍ଗ ସେ । ଅଦ୍ରିସୁତା ।
ଅଭୀଷ୍ଟ ଯେ ବେଳେ ନ ପାଇଲେ
ଅତି ତାପେ ତପ ଗ୍ରୀଷ୍ମେ ଆରମ୍ଭିଲେ ସେ । ୪ ।
ଅଷ୍ଟାର୍ଦ୍ଧ ଦିଗେ ଅନଳ          ଜାଳିଲେ ଅତି ପ୍ରବଳ
ଶିର ଉପରେ ଆତପ-ତାପ,
ଅବନୀ ଉପରେ ତପ୍ତି          କରୁଅଛି ଅଭିବ୍ୟାପ୍ତି
ତହିଁ ପରେ ବସି ଆରମ୍ଭିଲେ ତପ ସେ । ଅଦ୍ରିସୁତା ।
ଅମ୍ବୁଜ ଆସନ କୃତ କଲେ
ଅଷ୍ଟଦିଗପାଳ ଆଦିଙ୍କି ନମିଲେ ସେ । ୫ ।
ଅଙ୍ଗନ୍ୟାସ କରନ୍ୟାସ          କରି ସ୍ଫଟିକ-ସଙ୍କାଶ
କଇଲାସ-ଈଶ ରୂପ ଧ୍ୟାଇ
ଅକ୍ଷିକି ନାସାଗ୍ରସ୍ଥାନେ          ରଖିଣ ନିଶ୍ଚଳ ମନେ
ବସିଲେ ଇନ୍ଦ୍ରିୟ ସ୍ତମ୍ଭି ଦେଇ ସେ । ଅଦ୍ରିସୁତା ।
ଅକ୍ଷରୁଦ୍ରାକ୍ଷ ମାଳିକା ଧରି
ଅଭୀଷ୍ଟ ଯେ ମନ୍ତ୍ର ଜପିଲେ ଉଚ୍ଚାରି ସେ । ୬ ।
ଅଧଃ ପୁରୁଁ ଊର୍ଦ୍ଧ୍ୱ ପୁର—          ପରେ ରଖିଲେ ସମୀର
ଦଶଦ୍ୱାରେ ତାଲି ଯୋଗବଳେ

---

୪ । ଅଲ୍ପବେଳେ—କିଛିଦିନ । ପ୍ରଥମାବସ୍ଥାରେ (ଅନ୍ନ) ଭାତ, (ପୟଃ) ଦୁଗ୍ଧ ତତ୍ପରେ ଫଳ, ତତ୍ପରେ ମୂଳ, ତତ୍ପରେ ପତ୍ର, ତତ୍ପରେ ଜଳ ଓ ତତ୍ପରେ ପବନ—ଏହିପରି କ୍ରମରେ ଖାଦ୍ୟ ନିଷେଧ କରି ତପସ୍ୟା କରିବା ଯୋଗଶାସ୍ତ୍ରସମ୍ମତ । ୫ । ଅଷ୍ଟାର୍ଦ୍ଧ ଦିଗେ—ଚତୁର୍ଦ୍ଦିଗରେ । ଅତପତାପ—ଖରତେଜ । ଅମ୍ବୁଜ ଆସନ—ପଦ୍ମାସନ । ୬ । ସ୍ଫଟିକସଙ୍କାଶ—ସ୍ଫଟିକ ପରି ଧବଳବର୍ଣ୍ଣ । କଇଲାସ-ଈଶ—କୈଳାସ ପତି, ଶିବ । ଅକ୍ଷରୁଦ୍ରାକ୍ଷ ମାଳ—ପଚାଶ ଗୋଟି ରୁଦ୍ରାକ୍ଷର ଜପମାଳ । ୭ । ଅଧଃପୁରୁ—ମୂଳାଧାର ନାମକ ଚକ୍ରରୁ ।

ଅଇକ୍ୟ ହେବାରୁ ଜୀବ ପରମର ଇଷ୍ଟଦ୍ରବ୍ୟ
ପରକାଶ ଆସି ହେଲା ହୃଦସ୍ଥଳେ ସେ । ଅଦ୍ରିସୁତା ।
ଅନ୍ତରେ ଦେଖିଲେ ଜ୍ୟୋତମୂର୍ତ୍ତି
ଅକ୍ଷି-ସଙ୍ଗେ ମନ ଯୋଖି ରଖିଛନ୍ତି ସେ । ୭ ।

ଅନିଳବଶେ ଅନଳ ଜଳନ୍ତେ ହୋଇ ପ୍ରବଳ
ଝଳ ଅଙ୍ଗେ ଗଲା ପଡ଼େ ଝାଳ
ଅସ୍ଫୁଟ କେତକୀଦଳ— ନିନ୍ଦି କୁନ୍ଦନ-ଉଜ୍ଜ୍ୱଳ—
କାନ୍ତି ତପ୍ତିବଳେ ଦିଶିଲା ଶ୍ୟାମଳ ସେ । ଅଦ୍ରିସୁତା ।
ଅଙ୍ଗ ତେବେ ରହିଛି ନିଶ୍ଚଳେ
ଅଧରୋଷ୍ଠ ମାତ୍ର ଚଳେ ମନ୍ତ୍ରବଳେ ସେ । ୮ ।

ଅନୁରୂପ ତପ ପୁଣି କୋହିଲା ବୋଲି ତରୁଣୀ
ଅଗ୍ନି-ଅନ୍ତେ ଉଭା ହେଲେ ଯାଇଁ
ଅତ୍ୟନ୍ତେ ମନପବନ ରୁନ୍ଧି କଲେ ଅନୁଷ୍ଠାନ
ତଥାପିହିଁ ଇଷ୍ଟଫଳ ନ ଫଳଇ ସେ । ଅଦ୍ରିସୁତା ।
ଅଙ୍ଗଦେଶୁଁ ଶିର ମୋଡ଼ି ନେଇ
ଅଗ୍ନି-ଆହୁତି କରିବା ବଗ୍ଭରଇ ସେ । ୯ ।

ଅଗ୍ରେ ଏହି କାଳେ ଆସି ମିଳିଲେ କରୁଣାରାଶି
ହସି ଭାଷିଲେ ରେ ମୃଦୁଭାଷି,
ଅନଳ ଭିତରେ ପଶି ଦେହ ଯେ ଦେଉଛୁ ଝାସି
କହ କହ କାହିଁ ହୋଇ ଅଭିଳାଷୀ ରେ । ଅବ୍ଜବାସି !
ଅସମ ତପେ ତୋ ହେଲୁ ତୋଷି
ଅନ୍ତରକୁ ଆସ ଆସ ବାଣହ୍ୱାସି ରେ । ୧୦ ।

---

ଦଶଦ୍ୱାର—ଚକ୍ଷୁ ଦୁଇ, କର୍ଣ୍ଣ ଦୁଇ, ନାସିକା ଦୁଇ, ମୁଖ ଏକ, ଗୁହ୍ୟ ଏକ, ମୂତ୍ରଦ୍ୱାର ଏକ, ନାଭି ଏକ—ଦଶ । ଅଇକ୍ୟ ସ୍ଥଳେ—ଜୀବାତ୍ମା ସହିତ ପରମାତ୍ମାଙ୍କୁ ଏକ କରିବାରୁ ଇଷ୍ଟଦେବତା ହୃଦସ୍ଥରେ ପ୍ରକାଶ ପାଇଲେ । ୮ । ଅନିଳବଶେ—ପବନଦ୍ୱାରା । ଅଧରୋଷ୍ଠ—ତଳ ଓଠ । ଉପାଂଶୁଜପ—ଯେଉଁ ଜପରେ କେବଳ ଓଷ୍ଠ ଚଳିତ ହୁଏ; ମାତ୍ର ବର୍ଣ୍ଣ ବ୍ୟକ୍ତ ହୁଏ ନାହିଁ । ଅସ୍ଫୁଟ...... । ଭଲକରି ଫୁଟି ନ ଥିବା କେତକୀ ପାଖୁଡ଼ା ପରି ଗୌର ଓ ସୁନାଠାରୁ ଉଜ୍ଜ୍ୱଳ ପାର୍ବତୀଙ୍କ ଦେହକାନ୍ତି ଅଗ୍ନିତାପରେ (ଶ୍ୟାମଳ) କଳା ପଡ଼ିଗଲା । ୯ । ଅନୁରୂପ—ଯୋଗ୍ୟ ଅର୍ଥାତ୍ ଇଷ୍ଟଦେବତାଙ୍କ ମନ ତରଳାଇବା ପାଇଁ ଉପଯୁକ୍ତ । ଅଗ୍ନିଅନ୍ତେ—ନିଆଁ ଭିତରେ । ଅବ୍ଜବାସୀ—ଲକ୍ଷ୍ମୀସ୍ୱରୂପିଣୀ ।

ଅମର୍ ଈଶ୍ୱର୍ ପଦ                    କିବା କୁବେର୍-ସମ୍ପଦ
ଚନ୍ଦ୍ର ସୂର୍ଯ୍ୟ-ଢାର୍ଯ୍ୟ ନେବୁ ଅବା
ଅବ୍‌ଜାସନ ଅଧିକାର୍                ନୋହିଲେ ମୋ ପୁରସ୍କାର୍
ମାଗ ମାଗ ଘେନିଲୁ ତୋ ସେବାରେ । ଅଦ୍ରିଭୂବା ।
ଅଥବା ବଇକୁଣ୍ଠକୁ ଯିବା
ଅଭିଳାଷ ଥିଲେ ତାହିଁ ଦେଇଯିବା ରେ । ୧୧ ।
ଅଗତେ ପ୍ରାଣବଲ୍ଲଭ୍                  ଦୁର୍ଲ୍ଲଭ ରୂପ ସୁଲଭ୍
ହୋଇବାରୁ ବ୍ରହ୍ମାନନ୍ଦ ପାଇ
ଅଗ୍ରିଭଲେ ଦଣ୍ଡ ଜାଣି                 ପଡ଼ିଲେ ତରୁଣୀମଣି
ଉଠି ପୁଣି ପାଣି ଆଣି ଶିରେ ହୋଇ ସେ । ଅଦ୍ରିସୁତା ।
ଅଖିଳ ସଂସାର ଲୋକମାତା
ଅନୁସରୁ ଗୃହିଁ ଛନ୍ଦ ଦାସୀ ଯଥା ସେ । ୧୨ ।
ଅମିତ-ତପରେ ତନୁ                ତନୁ ହୋଇଲେହେଁ ଅତନୁ
ଶୋଭା ପ୍ରକାଶୁଛି ପ୍ରଭବରେ
ଅଶିଣ-ପୂର୍ଣ୍ଣ-ଚନ୍ଦ୍ରମା                 ପ୍ରଫୁଲ୍ଲ ପଦ୍ମ-ସୁଷମା
ଛାର୍ ତାରତର୍ ସାର୍ ମୁଖ ଉରେ ସେ । ଅଦ୍ରିସୁତା ।
ଅକ୍ଷିପାତଘୂର୍ଣ୍ଣନ ପ୍ରକାର୍
ଅପାଙ୍ଗର ରଙ୍ଗ ଗୃହୁ ଚମତ୍କାର୍ ସେ । ୧୩ ।
ଅଳସେ 'ଈଷି' ଭାଷିବା              ସଧୀରେ ଗୃହିଁଆସିବା
ମୃଦୁ ମଧୁରେ ହସିବା ଭଙ୍ଗୀ
ଅଧରେ ଦନ୍ତ ବସିବା              ଭ୍ରୂକୁ-ନୃତ୍ୟ ପ୍ରକାଶିବା—
ସ୍ୱୀତ, ପଶୁପତି-ଧୃତି ଦେଲ ଭାଙ୍ଗି ସେ । ଅଦ୍ରିସୁତା ।

---

୧୧ । ଅମର ଈଶ୍ୱର—ଇନ୍ଦ୍ର । ଅବ୍‌ଜାସନ—ବ୍ରହ୍ମା । ୧୨ । ପ୍ରାଣ......ରୂପ—ପ୍ରାଣପ୍ରିୟ ଶିବଙ୍କର ଦୁର୍ଲ୍ଲଭ ରୂପ । ଦଣ୍ଡ ଜାଣି—ଦଣ୍ଡ ପଡ଼ି । ୧୩ । ଅମିତ ତପରେ—ଅସଂଖ୍ୟ ବା କଠୋର ତପରେ । ତନୁ—ଶରୀର । ତନୁ—କୃଶ । ଅତନୁଶୋଭା—ଅଧିକ ଶୋଭା । ପ୍ରଭବରେ—କାନ୍ତିଦ୍ୱାରା । ଅଶିଣ ପୂର୍ଣ୍ଣଚନ୍ଦ୍ରମା—କୁଆଁରପୂର୍ଣ୍ଣିମା ଜହ୍ନ । ପ୍ରଫୁଲ୍ଲ-ପଦ୍ମସୁଷମା—ଫୁଟିଥିବା ପଦ୍ମର ଶୋଭା । ତାର-ତର—ଅତି ଉଜ୍ଜ୍ୱଳ । ସାର—ଶ୍ରେଷ୍ଠ । ଅକ୍ଷିପାତ—ଚାହିଁବା । ଘୂର୍ଣ୍ଣନ—ଚକ୍ଷୁକୁ ଭ୍ରମାଇବା । ଏ ସମସ୍ତ ଅନୁରାଗ ଲକ୍ଷଣ ।



ଅଙ୍ଘ୍ରି ତଳେ ନିଶିଦିନ ଅର୍ପିତ କରୁ ଏ ମନ

ଅନୁସରୁ ଥିବ ଦାସୀ ହୋଇ

ଅନ୍ୟ ଶରଧା ମୋ ନାହିଁ ସତ୍ୟ ସତ୍ୟ ଏ ଗୋସାଇଁ

× × × ×

ଅଳ୍ପ ଫୁଲେ ତିଳଫୁଲ ନାସା ।
ଅମୃତରୁ ସ୍ୱାଦୁ ଦରସ୍ଫୁଟ ଭାଷା ସେ । ୧୪ ।
ଅଣୁପର କୃଶୋଦର    ଉନ୍ନତ ଉରୋଜ-ଭର—
ଭରେ ଭାଜିଯିବା ଭଳି ହୋଏ ।
ଅମ୍ବିକାସ୍ୟ-ମଟକ    ଅଟକ କରେ ଫଟକ
ହାଟକ-ଘଟଣ ଦୀପ୍ତ କାଏ ସେ । ଅଦ୍ଭୁତା ।
ଅଭିରାମତାର ନାହିଁ ଅନ୍ତ
ଅପ୍ରକାଶ କୁନ୍ଦ ନିନ୍ଦେ ଦନ୍ତ ସେ । ୧୫ ।
ଅଯୁଗ୍ମନେତ୍ର ହରଷେ    ଗୃହ୍ନିଁ ଗୁରୁ ଈଷଦ୍ଧାସେ
ବୋଇଲେ ରେ ବାଳା ମାଗ ବର
ଅଞ୍ଜଳୀଭୂତ ଶ୍ରୀକର    କରୁଣ କାମିନୀବର
କହିଲ ହେ କୃପାକର କୃପା କର ହେ । ଅଳଙ୍କାର ।
ଅନ୍ତର୍ଯ୍ୟାମୀ ତୁମ୍ଭେ କି ନ ଜାଣ,
ଅନ୍ୟ ବର ଛାର ମୋର କି କାରଣ ହେ । ୧୬ ।
ଅଙ୍ଘ୍ରି ତଳେ ନିଶିଦିନ    ଅର୍ପିତ କରି ଏ ମନ
ଅନୁସରୁଥିବ ଦାସୀ ହୋଇ
ଅନ୍ୟ ଶରଧା ମୋ ନାହିଁ    ସତ୍ୟ ସତ୍ୟ ଏ ଗୋସାଇଁ
ତାହିଁ ପାଇଁ ଏତେ କହୁଛି ତୁମାଇଁ ହେ । ଅଳଙ୍କାର ।
ଅନୁଗ୍ରହ ଏତେ ମାତ୍ର କର ।
ଅନୁଚରୀ ଆଉ କି ମାଗିବ ବର ହେ । ୧୭ ।

---

୧୫ । ଉରୋଜ-ଭର—କୁଚଭର । ଭାଜିଯିବା ଭଳି—ଭାଙ୍ଗିଯିବା ପରି । ଅମ୍ବିକାସ୍ୟ ମହାଦେବଙ୍କର ତିନି ଆଖିର । ମଟକ-ଭଙ୍ଗୀ, ଉଜ୍ଜ୍ୱଳ ସ୍ୱର୍ଣ୍ଣପରି ଦୀପ୍ତ ଶରୀରକୁ ଅଟକ କରେ । ଶିବଙ୍କ ନେତ୍ରଭଙ୍ଗୀ ଦେଖି ପାର୍ବତୀଙ୍କ ଶରୀରରେ 'ସ୍ତମ୍ଭ' ସାତ୍ତ୍ୱିକ ଭାବ ଜାତ ହେଲା । ଅଭିରାମତା—ସୌନ୍ଦର୍ଯ୍ୟ । ଅପ୍ରକାଶ—ଫୁଟି ନ ଥିବା, କଳୀ । ୧୬ । ଅଯୁଗ୍ମନେତ୍ର—ଶିବ । ଈଷଦ୍ଧାସେ—ମୁରୁକେଇ ହସି । ଶ୍ରୀକର ଅଞ୍ଜଳୀଭୂତ କରି—ହାତ ଦୁଇକୁ ଅଞ୍ଜୁଳା କରି, ଯୋଡି । କୃପାକର—ଦୟାର ଖଣି । ୧୭ । ଅନୁଚରୀ—ଦାସୀ ।

ଅନୁଲପିତ ଏତେକ ନମ୍ର ସଲଜ୍ଜେ ମସ୍ତକ
ପୋତଲେ କ୍ଷିତକି ଦୃଷ୍ଟି ଦେଇ
ଅଲକ୍ଷ୍ୟ କଟାକ୍ଷ ତୀକ୍ଷ୍ଣ ବିଶିଖର ଲକ୍ଷ୍ୟ ତ୍ର୍ୟକ୍ଷ
ବକ୍ଷ କଲେ ସ୍ମିତ-ଜାତମୁଖୀ ହୋଇ ସେ । ଅଦ୍ରିସୁତା ।
ଅଟେ ମାରମାରଣ-ମନ୍ତ୍ର
ଅଥବା ସେ ଶିରୋଭୂଷା ଏ ରସାର ସେ । ୧୮ ।

ଅବଲମ୍ବେ ସ୍ମର-ଶର— ବାରେ ସ୍ମରହରଉର
ଚରଇ ରୁଚିରବେଣୀବଳେ
ଅନାଉଁ ଅନାଉଁ ଛନ୍ନ ହେଲେ ହରିଣଲାଞ୍ଛନ—
ମଣ୍ଡନ ସେ ବାଳା ଲୋଳା ଡୋଳା ଖେଳେ ସେ । ଅନ୍ଧକାରି ।
ଅନୁଜ୍ଞା କଲେ ରେ ବାମାବର
ଅସ୍ତୁ ହେଉ ଯେଉଁ ବର ଇଷ୍ଟ ତୋର ରେ । ୧୯ ।

ଅଳପ ଦିନେ ତ ପୁଣି ଭେଟ ହେବ ଗ୍ରାମଣି
ଥାଅ ବୋଲି ହୋଇଲେ ଅନ୍ତର
ଅପର୍ଣ୍ଣା-ପୂର୍ଣ୍ଣ-ଆନନ୍ଦ— ଅର୍ଣ୍ଣବର ଅର୍ଣ୍ଣବୃନ୍ଦ
ତୂର୍ଣ୍ଣେ ଶୀର୍ଣ୍ଣ କଲେ ଅଗସ୍ତିପ୍ରକାର ସେ । ଅଦ୍ରିସୁତା ।
ଅମୃତ ପିଉଁ ପଙ୍କିଲ ତଳେ
ଅଳିକରେ କରି ମାରେ ଶୋକବଳେ ସେ । ୨୦ ।

ଅନ୍ଧ ଦିବ୍ୟଚକ୍ଷୁ ପାଇ ଫିଟାଉଁ ଏକାଳେ ଯାଇଁ
ପଙ୍କିଲ ପବନେ ପୂର୍ଣ୍ଣ ଧୂଳି

---

୧୮ । ଅନୁଲପିତ—ଉବ୍ଟିତ । ରସାର—ପୃଥ୍ୱୀର । ଅଲକ୍ଷ୍ୟ—ଅତୁଳନୀୟ । କଟାକ୍ଷ ରୂପ ତୀକ୍ଷ୍ଣ (ବିଶିଖ) ଶରର ଲକ୍ଷ୍ୟ । ତ୍ର୍ୟକ୍ଷ—ତ୍ରିଲୋଚନ, ମହାଦେବ । ସ୍ମିତ···ହୋଇ—ମନ୍ଦେ ହସି । ୧୯ । ରୁଚିରବେଣୀ—ସୁକେଶୀ । ପାର୍ବତୀଙ୍କ (ବଳେ) ସହାୟତାରେ (ସ୍ମର) କାମ (ଶରବାରେ) ଶରସମୂହରେ (ସ୍ମରହରଉର) ମହାଦେବଙ୍କ ବକ୍ଷକୁ ଚରେ । ସ୍ମରହରପଦ ଏଠାରେ ଶମ୍ଭୁକୁ ସୂଚାଉଅଛି । ହରିଣ···ମଣ୍ଡନ—ଶିବ । ଲୋଳା—ଚଞ୍ଚଳତାଯୁକ୍ତ । ଅନୁଜ୍ଞା କଲେ—ଆଦେଶ ଦେଲେ । ଅସ୍ତୁ ହେଉ—ସିଦ୍ଧ ହେଉ । ୨୦ । ଅଗସ୍ତି ଉଦୟ ହେଲେ ଶରତ୍ କାଳରେ ଜଳ ନିର୍ମଳ ହୁଏ ଓ କମିଯାଏ । ମହାଦେବ ଅନ୍ତର୍ଦ୍ଧାନ ହୁଅନ୍ତେ ଅପର୍ଣ୍ଣାଙ୍କର ଆନନ୍ଦସମୁଦ୍ରର ଜଳ କମି ଆସିଲା ।

ଅଭିନବ ଘନ ରୁଚିଁ ରୁଚିର ଚଞ୍ଚଳ ହୋଇ
ଚଳନ୍ତେ ତା ଝଞ୍ଜାବାତ ଦେଲ୍ ଦଳି ସେ । ଅଦ୍ରି ସୁଝା ।
ଅନୁଭବ କଲେ ଯେବେ କ୍ଳେଶ
ଅଣୁମାତ୍ର କେ ତା କରିବ ପ୍ରକାଶ ଯେ । ୨୧ ।
ଅଗ୍ରେ ମୀନ କୂର୍ମ କୋଳ ନୃହରି ଖର୍ବ ମଞ୍ଜୁଳ
ପର୍ଶୁରାମ ରାମ ବଳରାମ
ଅନୁକମ୍ପାମୟ ବୁଦ୍ଧ କଳ୍କି ଦେବ ଦଶବଧ—
ରୂପ ହରି ପାପ କର ପୂର୍ଣ୍ଣକାମ ହେ । ଅନ୍ଧକାରି
ଅଶେଷ ସୁଖଦ ଶେଷସେବ୍ୟ
ଅବନୀଶ ବଳଭଦ୍ର ବଳ ଦେବ ହେ ।୨୨।

---

# ପଞ୍ଚଦଶ ଛାନ୍ଦ

## ଅବନା ନିୟମ—ପ୍ରାନ୍ତ ଯମକ

### ରାଗ—ମଙ୍ଗଳ

ଅତ୍ୟନ୍ତ ସଜ୍ଜନ-ଜନ ଶ୍ରବଣ କର
ଅସମଶର-ସରସ-ଚନ୍ଦ୍ରପ୍ରକର । ୧ ।
ଅନ୍ଧକପର କନ୍ଦର୍ପଶର-ଅବଶ
ଅନବରତ ମନ ତ ରତର ବଶ । ୨ ।
ଅଚଳ ଅପତ୍ୟ-ଅଙ୍ଗ-ସଙ୍ଗ-କରଣ
ଅହ୍ନ ଅନହ୍ନ ସକଳ କ୍ଷଣ ସ୍ମରଣ । ୩ ।

---

୨୨ । କୋଳ—ବରାହ । ଖର୍ବ—ବାମନ । ଅନୁକମ୍ପାମୟ—ଦୟାଳୁ । ପାପହର—ପାପବିନାଶ କର । ଅବନୀଶ—ରାଜା । ବଳ ଦେବ—ବଳପ୍ରଦାନ କରିବ ।

—o—

ପଞ୍ଚଦଶ ଛାନ୍ଦ

୧ । ଅସମଶର—କନ୍ଦର୍ପ । ୨ । କନ୍ଦର୍ପ ଶର ଅବଶ—କାମବାଣରେ କ୍ଳାନ୍ତ । ରତର ବଶ—ଅନୁରାଗ ଅଧୀନ । ୩ । ଅଚଳ ଅପତ୍ୟ—ପାର୍ବତୀ । ଅଙ୍ଗ… କରଣ—ଦେହର ମିଳନ । ଅହ୍ନ—ଦିନ । ଅନହ୍ନ—ଯେ ଦିନ ନୁହେଁ, ରାତ୍ରି ।

ଅଶନ ଅଙ୍ଗବସନ ରସ ପର୍ବତ
ଅକ୍ଷପତନ କ୍ଷଣ ତ ବରଷବତ । ୪ ।
ଅର୍କସମ ଚନ୍ଦ୍ରକର ମନ୍ଦପବନ
ଅନଳ ବତ ସଚନ୍ଦ୍ର ଚନ୍ଦନ-ବନ । ୫ ।
ଅବଜଚମ୍ପକ ଘନରସ ସ୍ମରଣ
ଅତ୍ୟନ୍ତ କର୍ଷଣକର ହୃତହରଷ । ୬ ।
ଅଚଳବତ କପର୍ଦ୍ଦ ମସ୍ତକପର
ଅସମ ନୟନତ୍ରୟ ଘର ଅପର । ୭ ।
ଅଙ୍ଗ ଥର ଚଳଦଳଦଳଦଳନ
ଅନଳ୍ପ କଷ୍ଟ ପଦର ପର ଚଳନ । ୮ ।
ଅଗମ୍ୟ ଗହନ ବନ ସମ ସଦନ
ଅନ୍ତକବତ କଷ୍ଟଦ ନଷ୍ଟମଦନ । ୯ ।
ଅନର୍ଥପ୍ରଦ ଭ୍ରମର-ଭ୍ରମଣ-ରଙ୍ଗ
ଅମଙ୍ଗଳକର ସ୍ମର-ଶର-ତରଙ୍ଗ । ୧୦ ।
ଅସହ୍ୟ କଳକଣ୍ଠର କଳବଚନ
ଅସ୍ତ୍ରପତନ ରତନ-ସଜ-ରଚନ । ୧୧ ।

---

୪ । ଅକ୍ଷପତନ କ୍ଷଣ—ଆଖି ପିଛୁଳିବା ବେଳ (ନିମେଷ) । ଅଶନ—ଭୋଜନ । ବସନ—ଲୁଗା ପର୍ବତ ପରି ଭାର ହେଲା । ବରଷ ବତ—ବର୍ଷ (୧୨ ମାସ ) ପରି, ଚନ୍ଦ୍ରକିରଣ ( ଅର୍କ ସମ) ସୂର୍ଯ୍ୟକିରଣ ପରି । ସଚନ୍ଦ୍ର—କର୍ପୂରଯୁକ୍ତ । ଚନ୍ଦନ ବନ—ଚନ୍ଦନ ପାଣି । ଅନଳବତ—ନିଆଁ ପରି । ହୃତହରଷ—ହରଷର ବିନାଶକ । ୬ । ଅବଜ—ପଦ୍ମ । ଘନରସ—ଜଳ । ୭ । କପର୍ଦ୍ଦ—ଶିବଙ୍କ ଜଟା । ଅଚଳବତ—ପର୍ବତ ପରି ଭାରି । ଅସମ······ଘର—ବିଷମ ଆଖି ତିନୋଟି (ଅପ) ଜଳର ଘର ( ସ୍ଥାନ ) ହେଲା । ୮ । ଅଙ୍ଗ ଥର—ଦେହ କମ୍ପନ । ଚଳଦଳ-ଦଳ-ଦଳନ—ଅଶ୍ୱତ୍ଥ ପତ୍ରକୁ ବଳି ପଡ଼େ । ଅନଳ୍ପ କଷ୍ଟ—ଅତି କଷ୍ଟ । ୯ । ସଦନ—ଘର । ଗହନ ବନସମ—ଘୋର ଜଙ୍ଗଲ ପରି । ଅଗମ୍ୟ—ଦୁର୍ଗମ । ନଷ୍ଟ—ବିନାଶପ୍ରାପ୍ତ । ମଦନ—କାମ । ଅନ୍ତକବତ—ଯମପରି । କଷ୍ଟଦ—ଦୁଃଖଦାୟକ । ୧୦ । ଭ୍ରମରର ବୁଲିବା ( ରଙ୍ଗ ) ଖିଆ ଅନର୍ଥଦାୟକ । ( ତରଙ୍ଗ ) ପ୍ରବାହ ପରି ପଡ଼ୁଥିବା କାମ ଶର । ୧୧ । କଳକଣ୍ଠ—କୋକିଳ । କଳବଚନ—ଅବ୍ୟକ୍ତ ଧ୍ୱନି । ଅସହ୍ୟ—ଦୁଃସହ । ରତନ-ସଜ-ରଚନ—ରତ୍ନ ଅଳଙ୍କାର ଧାରଣ । ଅସ୍ତ୍ର-ପତନ—ଶରପାତ ହେଲା ପରି ବୋଧ ହେଉଛି ।

ଅନ୍ୟ ପର୍ସଙ୍ଗ ର୍ଙ୍ଗର୍ସ ସ୍ୱପନ
ଅକ୍ଷ-ବନ-ଅପ୍ରସନ୍ନ-ଲକ୍ଷ୍ମୀ-ଲ୍ପଦ । ୧୨ ।
ଅବଇପଛିବ ଶୟ୍ୟନର୍ ଭଲପ
ଅଶବ୍ଦିତ ବଚନ ଅଲପ ଜଲପ । ୧୩ ।
ଅନନ୍ତର୍ * ବଡଗର୍ ସଙ୍ଗ ହୃଦର୍
ଅର୍ଦ୍ଧଚନ୍ଦ୍ର ମସ୍ତକର୍ ଦର୍ପ୍ରଦର୍ । ୧୪ ।
ଅଚ୍ଛ-ର୍ଇତ-ଧବଳ-ଆର୍ମ୍ଭ-ପର୍
ଅଙ୍ଗବର୍ଣ୍ଣ ଧର୍ଇ ଅର୍ସ ଖର୍ପର୍ । ୧୫ ।
ଅବର୍ଣ୍ଣ ଘଟନ ଗ୍ରନ୍ଥ କଷ୍ଟପ୍ରକର୍
ଅବର୍ଣ୍ଣ ସର୍ବନ୍ଧ ବଚ ଅଚଲ କର୍ । ୧୬ ।

---

୧୨ । ଅନ୍ୟ ପ୍ରସଙ୍ଗ – ଅନ୍ୟ ବିଷୟକ କଥା । ରଙ୍ଗରସ—ହାସ କୌତୁକ । ସ୍ୱପନ—ଅର୍ଥାତ୍ ଆଦୌ ଦେଖାଯାଉ ନାହିଁ । ଅକ୍ଷବନ…ଅପ୍ରସନ୍ନ— ନୈବକଲ ବା ଲୁହଦ୍ୱାରା ପଦ୍ମମୁଖ ବିରସ ହୋଇଛି । ୧୩ । ହୃଦର – ଜୀବନର । ସଙ୍ଗ—ଶରୀର ସହିତ ଅବସ୍ଥାନ ( ଅନନ୍ତ ) ଦାୟକର ଭରଠାରୁ ବଡ଼ ( ଗରୁ ) ଗରୁ ( ଗୁରୁତର ଭର )। ଦର୍ପ ପ୍ରଦର—ଅତି ଭୟପ୍ରଦାୟକ ହେଲା ମସ୍ତକର ଅର୍ଦ୍ଧଚନ୍ଦ୍ର । ୧୫ । ଅଚ୍ଛ– ନିର୍ମଳ । ଧବଳ ଆରମ୍ଭ—ଧବଳ ଗୁଣ; ଗୌରବ । ପର—ଶବ୍ଦ । ନିର୍ମଳ ରୂପର ଧବଳ ଗୁଣକୁ ଜଣିଥିବା ଅଙ୍ଗବର୍ଣ୍ଣ (ଆରସ) ମ୍ଳାନ (ଖର୍ପର) ପରି ଦେଖାଗଲାଣି । ୧୬ । ଅବର୍ଣ୍ଣ ଘଟନ....ଅବର୍ଣ୍ଣରେ ରଚନା କରିବା । କଷ୍ଟପ୍ରକର—ଅତି କଷ୍ଟଦାୟକ ଅବନା ନିୟମରେ ଲେଖିବା । ଅବର୍ଣ୍ଣ (ସର୍ବନ୍ଧ) ସବୁ ସ୍ଥଳରେ । ବଚ—ବାକ୍ୟର (ଅଚଳକର) ବାଧାଦାୟକ । ଅଥବା (ଅବର୍ଣ୍ଣ) ଅଯଶଃ ଅର୍ଥାତ୍ ଅଯଶଃ ଭୟରେ ବାକ୍ୟ ପ୍ରୟୋଗ କରି ହୁଏ ନାହିଁ ।

* ପ୍ରାଚୀନକାଳରେ 'ର୍' ସ୍ୱରବର୍ଣ୍ଣ ହେଲେହେଁ ତାହାକୁ ବ୍ୟଞ୍ଜନବର୍ଣ୍ଣରୂପେ ଗ୍ରହଣ କରୁଥିଲେ । ତେଣୁ ଅ, ଆ, ଇ, ଈ, ଉ, ଊ, , ଏ, ଐ, ଓ, ଔ-କାରମାନଙ୍କର ଯୋଗକୁ ବନା କୁହାଯାଉଥିଲା । 'ର୍'କୁ ଋ ଫଳା ବୋଲି କୁହାଯାଉଥିଲା । ଯ, ବ, ର ପ୍ରଭୃତି ଯୋଗ ଯେପରି ଯଫଳା, ବଫଳା ରଫଳା ନାମରେ କଥିତ ହେଉଥିଲା; ଋ ଯୋଗ ମଧ୍ୟ ସେହିପରି 'ର୍' ଫଳା ବୋଲି କଥିତ ହେଉଥିଲା । ଏଠାରେ ମଧ୍ୟ ସେହି ପନ୍ଥା ଅନୁସୃତ ହୋଇଛି ।

ଅଠର ପଦ ସରସ-ରସ ପ୍ରବନ୍ଧ
ଅଙ୍କ ଗଣହରିମଲ ବଣଶବବନ୍ଧ (?)। ୧୭।
ଅଞ୍ଜନବର୍ନ ଧର-ଚନ୍ଦ୍ର-ଚରଣ
ଅଘବନ୍ତ ବଳଭଦ୍ରଭଞ୍ଜ ଶରଣ। ୧୮।

---

# ଷୋଡଶ ଛାନ୍ଦ

ରାଗ—ଚକ୍ରକେଳି

[ ଅକ୍ଷର କ୍ରମବୃଦ୍ଧି ନ୍ୟୂନ ଯମକ ]

ଅଥ ସୁମନେ ଶୁଣ ହେ ସୁମନ
ଅଚେତନ ନିଦ୍ରାବଶେ ଈଶାନ। ୧।
ଅନ୍ତରେ ଦେଖିଲେ ସଂବେଶରେ
ଅଚଳଜା ବସିଛନ୍ତି ବେଷରେ। ୨।
ଅଧୀରେ ଅଲୁଅଛି ଅଧରେ
ଅମ୍ବୁଜାକ୍ଷି ହୋଇଛି ଲୁଅଧରେ। ୩।
ଅନାଇଁ ସେ ସୁବୀଣା-ବାଣୀ-ମାନ
ଅଗ୍ରେ କହନ୍ତି କାନ୍ତବାଣୀ-ମାନ। ୪।

---

୧୮। ଅଞ୍ଜନ—ଚନ୍ଦ୍ର। ଅଞ୍ଜନବର୍ଣ୍ଣ—ନୀଳବର୍ଣ୍ଣ (୯୮) ପର୍ବତରେ ଚନ୍ଦ୍ର—ଜଗନ୍ନାଥ।ଅଘବନ୍ତ—ପାପୀ।

---

୧। ଈଶାନ—ଶିବ। ସବେଶ—ନିଦ୍ରା। ୩। ଲୁଅ—ଲୁହ, ଅଶ୍ରୁ।
[ଗ୍ରନ୍ଥର ବହୁସ୍ଥଳରେ 'ଲୁଅ' ର ପ୍ରୟୋଗ ଦେଖି ତାହାକୁ ଲେଖକ ପ୍ରମାଦ ମନେକରି ମୁଁ 'ଲୁହ' କରିଥିଲି; କିନ୍ତୁ ଏ ସ୍ଥଳରେ ଯମକ ଅଳଙ୍କାରରେ 'ଲୁଅଧର' ଲେଖାଥିବାର ଦେଖି 'ଲୁଅ' ବୋଲି ଲେଖିଅଛି। ]

ଅହର୍ନିଶେ ମୁଁ ସହୁ ଆତପରେ
ଅଶ୍ମସମ କରି ହୃଆ ତପରେ । ୫ ।
ଅନୁସରଣ କଲୁ ତୋ ସେବାରେ
ଅନାଉଁ କି ନ କଲୁ ତୋଷେ ବାରେ । ୬ ।
ଅଙ୍ଗନା କି ଆଗରେ ଅକ୍ଷି ତମୁଁ—
ଅଛୁ , ଦଣ୍ଡ ଆଗରେ ଅଚ୍ଛୁ ତ ମୁଁ । ୭ ।
ଅକ୍ଷି ନୀରଜ-କାଣ୍ଡ ବରଷ ତ,
ଅଙ୍ଗେ କରଜକାଣ୍ଡବର ଶତ । ୮ ।
ଅଚ୍ଛ ଗଉରୀବରନା ସୁତରେ
ଅନା ଗଉରୀ-ବର ନାଶୁ ତରେ । ୯ ।
ଅଶିବରେ ନବ-ସର ଜୀବନ
ଅସିବରେ ନବ ସର ଜୀବନ ! ୧୦ ।
ଅନାଥରେ ନ ବହୁ ସରାଗରେ
ଅନା ଥରେ ନବ-ହାସ-ରାଗରେ । ୧୧ ।

---

୫ । ଆତପରେ—ଖରାକୁ । ଅଶ୍ମସମ—ପଥର ପରି । ହୃଆ—ଛାତି । ତପରେ—ତପସ୍ୟାଦ୍ୱାରା । ୬ । ମୁଁ ତୋ ସେବାରେ ଅନୁସରଣ କଲି, ଆଉ ଏପରି କଅଣ କଲି ଯେ, ଥରେ ହେଲେ ତୋଷରେ ଖୁସିରେ ଅନାଉ ନାହୁଁ । ୭ । ଅଙ୍ଗନେ ! ତୁ (ମୋର) କି (ଆଗରେ) ଅପରାଧରେ ଆଖିକି (ତମୁ ଅଛୁ) ତମ ତମ କରୁଅଛୁ । ମୁଁ ତ ଆଗରେ ସାମନାରେ ଅଛି । ମୋତେ ଦଣ୍ଡ ଦିଅ । ଏଥି ପଦ 'ଛ'ର 'ଚ୍ଛ' ସହିତ ଉଚ୍ଚାରଣସାମ୍ୟର ଉଦାହରଣ ସ୍ଥଳ । ୮ । ଆଖିରୂପ ନୀରଜ—ପଦ୍ମର କାଣ୍ଡକୁ ଓ କରଜ ନଖ ରୂପ କାଣ୍ଡବର ଉତ୍କୃଷ୍ଟ ଶରକୁ ଶତ ସଂଖ୍ୟାରେ ବର୍ଷଣ ବୃଷ୍ଟି କରତ । ୯ । ଅଚ୍ଛ—ନିର୍ମଳ । ଗୌରୀବରନା—ଗୌରବର୍ଣ୍ଣା ତୁ ସୁତରେ—ଅନ୍ୟର ଅଜ୍ଞାତରେ ବା ଭଙ୍ଗୀ ସହିତ ଅନା । ଗଉରୀବର—ଶିବ । ତରେ—ଉଦ୍‌ବେଗକୁ ନାଶ କରୁ । ୧୦ । ହେ ଜୀବନ—ପ୍ରାଣ ତୁଲ୍ୟ ପ୍ରିୟା । ଅଶିବରେ—ଅମଙ୍ଗଳ ଭାବେ । ନବସ୍ମର—ନୂତନ କନ୍ଦର୍ପ । ଅସିବରେ—ଉତ୍କୃଷ୍ଟ ଖଡ୍‌ଗଦ୍ୱାରା ଜୀବନ—ପ୍ରାଣ ନେବ, ଏହା ସ୍ମରଣ କର । ୧୧ । ଅନାଥରେ—ଅରକ୍ଷ ଲୋକଠାରେ । ସରାଗରେ—କ୍ରୋଧକୁ । ନ ବହ—ଧାରଣ କର ନାହିଁ । ଥରେ ମାତ୍ର ନବହାସରାଗରେ—ନୂତନ ହାସ ରାଗରେ, ଅନୁରକ୍ତି ସହିତ । ଅନା—ଚାହାଁ ।

ଅ-ପୂ ର୍ବ୍ବ-ତନୁ-ରସ-ବଶରେ
ଅପୂ ର୍ବ୍ବ-ତନୁ ରସ ବସରେ । ୧୨ ।

[ଅନୁଲୋମ ବିଲୋମ]

ଅନା ମତେ ରସେ ରତେ ମନାଅ
ଅପାଙ୍ଗର ସରସ-ରଙ୍ଗ ପାଅ । ୧୩ ।
ଅନିଶ ରସ, ଆସ, ରସ ନିଅ
ଅଧୀନକର ମାରକ ନ ଦିଅ । ୧୪ ।
ଅପର ନାହିଁ ମୋହୋର ସଂସାରେ
ଅପର ନାହିଁ ମୋ ହରଷ କରେ । ୧୫ ।
ଅମୃତ-ଅଧାରବଳିତ-ମୁହାଁ
ଅମୃତ ଅଧାର-ରୁ ଜୀଅାଁ ଦେଇ । ୧୬ ।

୧୨ । ଅପୂର୍ବ ତନୁ—ଯାହାର ଶରୀର ପରି ସୁନ୍ଦର ଶରୀର ପୂର୍ବେ ଦେଖାଯାଇ ନାହିଁ ଅଥବା ହେ ଅତି କ୍ଷୀଣାଙ୍ଗି ! ଅପୂର୍ବ ତନୁର—ଅତନୁର—କନ୍ଦର୍ପର । ରସ ବଶରେ – ରସରେ ବଶ ହୋଇ ରସ କ୍ରୀଡାକର, ମୋ ନିକଟରେ ବସ । ୧୩। ମତେ ରସେ—ଅନୁରାଗସହିତ । ଅନା—ଚାହିଁ । ରତେ। ସୁରତକ୍ରୀଡ଼ାରେ ମନାଅ, ମନକୁ ହରଣକର, ବଶୀଭୂତକର । ଅପାଙ୍ଗର—ନେତ୍ରପ୍ରାନ୍ତର । ସରସ ରଙ୍ଗ—ସରସ କ୍ରୀଡ଼ାକୁ ପାଅ—ଲାଭକର ଅର୍ଥାତ୍ ସକୌତୁକକଟାକ୍ଷରେ ଚାହାଁ ୧୪ । ଅନିଶ—ସର୍ବଦା । ରସ—ଅନୁରକ୍ତା ହୁଅ । ଆସ (ମୋ ପାଖକୁ) ରସ—ମୋର ଅନୁରାଗ (ନିଅ) ଗ୍ରହଣ କର । ମୋତେ ଅଧୀନ କର—ଦୁଃଖିତ କର ନାହିଁ । (ମାରକ) ମୃତ୍ୟୁ (ନ ଦିଅ) ଦିଅ ନାହିଁ । 'ମାରକୁ ନ ଦିଅ' ବୋଲି ପାଠ କଲେ କନ୍ଦର୍ପକୁ ନ ଦିଅ ବୁଝାଇବ । ୧୩ଶ ଓ ୧୪ଶ ପଦଦ୍ୱୟ ଅନୁଲୋମ ବିଲୋମ ଅର୍ଥାତ୍ ବାମରୁ ଡ଼ାହାଣକୁ ପଢିଲେ ଯାହା, ଡାହାଣରୁ ବାମକୁ ପଢିଲେ ତାହା । ୧୫ । ସଂସାରେ—ସଂସାରରେ ମୋହର ଅପର (ଅନ୍ୟ) ନାହିଁ । ଅପରନା—ଅପର୍ଣ୍ଣା, ପାର୍ବତୀ ହିଁ—କେବଳ । ମୋ—ମୋହର । ହରଷ—ଆନନ୍ଦ କରେ । ୧୬। ଅମୃତ ଆଧାର —ଚନ୍ଦ୍ର । ହେ ଚନ୍ଦ୍ରକୁ ବଳି ସୁନ୍ଦର ମୁଖବିଶିଷ୍ଟା ପାର୍ବତି ! ମୋତେ (ଅମୃତ ଆଧାର) ଅମୃତ ତୁଲ୍ୟ ଭୋଜନ (ବା ଅଧରାମୃତ) ଦେଇ (ଜୀଆଁ) ଜୀବନ ଦିଅ ।

ଅପଘନ-ଘନେ ଅକ୍ଷୁଁ କ ମୁଞ୍ଚ
ଅପଘନ ଘନେ ମୋ ଅଙ୍କେ ମୁଞ୍ଚ । ୧୭ ।
ଅମାନ-ନାଗରୀ-ବର-ମଣ୍ଡନା
ଅମାନ ନାଗର ! ବରେ କର ନା । ୧୮ ।
ଅନଳପର-ଉଷମ-ଶରରେ
ଅନଳପ ରତୀଶ ପରହାରେ । ୧୯ ।
ଅଧିକ କି କହିବ ମୋତ୍ତଦନ୍ତ !
ଅଧି-କ କି ନ କରିବୁ ପୀରତ । ୨୦ ।
ଅବଜାକ୍ଷୀକି ଦେଇ ଅନ-ବାର
ଅବଜାଙ୍ଘ୍ରି ଧଇଲେ ପୁନର୍ବାର । ୨୧ ।
ଅନୁପମ-ପ୍ରେମ-ସୃଷ୍ଟୁ ବଚନେ
ଅନୁଗ୍ରହେ ସୃହୁଁ ଖେଳ-ଲୋଚନେ । ୨୨ ।
ଅଧରରେ ଧରି ଧୀରୀ ହାସକୁ
ଅକ୍ଷେ ପ୍ରକାଶିଲେ ଖେଳରସକୁ । ୨୩ ।

---

୧୭ । ହେ ଅପଘନଘନେ—ଯାହାର ଶରୀରଟି (ଘନ) ଯଥାଯଥ-ଭାବେ ସନ୍ନିବଷ୍ଟ ଅର୍ଥାତ୍ ହେ ଶୋଭନାଙ୍ଗି ! (ମୋ) ଅକ୍ଷୁ—ଆଖିରୁ । କ—ଜଳ (ଲୋତକ) ମୁଞ୍ଚ—ପୋଛ ପକାଅ; ମୋତେ କନ୍ଦାଅ ନାହିଁ । ଅପଘନ—ଶରୀରକୁ । ଘନେ—ନିବିଡ ଭାବେ । ମୋ ଅଙ୍କେ—ମୋ କୋଳରେ (ମୁଞ୍ଚ) ସ୍ଥାପନ କର । ୧୮ । ଅମାନ—ଅସଂଖ୍ୟ; ନାଗରୀବର—ଶ୍ରେଷ୍ଠ ସ୍ତ୍ରୀମାନଙ୍କ ମଧ୍ୟରେ ଯେ (ମଣ୍ଡନା) ଅଳଙ୍କାରସ୍ୱରୂପ । ଯେତେ ଉତ୍ତମ ନାଗରୀ ଅଛନ୍ତି, ସେମାନଙ୍କ ମଧ୍ୟରେ ତୁ ଅଳଙ୍କାରସ୍ୱରୂପ ଅଟୁ । ହେ ନାଗର ! —ହେ ରସିକେ ! ବରେ—ପ୍ରାଣପ୍ରିୟଠାରେ (ଅମାନ) ଅସମ୍ମାନ କର ନାହିଁ । ୧୯ । ରତୀଶ—କାମ । (ଅନଳପର) ଅଗ୍ନିରୁ ଅଧିକ (ଉଷମ) ତାତିଲା ଶରରେ (ଅନଳପ) ଅତି ଅଧିକ ଭାବେ (ପରହାରେ) ପ୍ରହାର କରୁଅଛି ।୨୦। ହେ ମୋତ୍ତଦନ୍ତ ! ମୁଁ ଅଧିକ କି—କଣ କହିବ ? ତୁ (ପୀରତ) ପ୍ରୀତକୁ ଅଧି-କ ମସ୍ତକ ଉପରେ କରିବୁ ନାହିଁ ? ଅର୍ଥାତ୍ ସର୍ବାପେକ୍ଷା ଶ୍ରେଷ୍ଠ ସ୍ଥାନ ଦେବୁ ନାହିଁ କି ? ଅଥବା ଅ ଧିକ—ଧି କାରରହିତ, ପ୍ରଶଂସାଯୁକ୍ତ କରିବୁ ନାହିଁ କି ? ୨୧ । ଅବଜାକ୍ଷୀକି—ପଦ୍ମଲୋଚନା ଗୌରୀଙ୍କୁ (ଆନବାର) ବହୁତ ଗୁଣ ଦେଇ ପୁନର୍ବାର ଅବଜାଙ୍ଘ୍ରି—ପାଦପଦ୍ମକୁ ଧଇଲେ । ୨୨ ଓ ୨୩ । ଅନୁପମ—ଅତୁଲ୍ୟ । ପ୍ରେମପୂର୍ଣ୍ଣ ସୃଷ୍ଟୁବଚନ—ପ୍ରିୟବାକ୍ୟ ଦ୍ୱାରା ପ୍ରୀତା ହୋଇ ଅନୁଗ୍ରହରେ ଖେଳଲୋଚନେ—ସ୍ନେହାଣି ଛଟକଯୁକ୍ତ ଆଖିରେ ସୃହୁଁ, ସେହି ଧୀରୀ—ପଣ୍ଡିତା ଅଧରରେ ହସକୁ ଧଇଲେ । ଅକ୍ଷେ... ରସକୁ—ଚତୁର କ୍ରୀଡ଼ା ଭ୍ରୂବକ୍ଷେପ ପ୍ରଭୃତିକୁ ପ୍ରକାଶ କଲେ ।

ଅନୁରାଗରେ ଭ୍ରୂଲତା ନାଚିଲା
ଅଙ୍ଗହୀନ ଧନୁ ଧରି ଆଚିଲା । ୨୪ ।
ଅନିରୁଦ୍ଧପରି ଭାବ-ଉତ୍ସୁକେ
ଅବଳାକୁ ଧରି ଆଣନ୍ତେ ଅଙ୍କେ । ୨୫ ।
ଅନ୍ତ ଅଧୈର୍ଯ୍ୟେ ଗଲା ନିଦ୍ରା ଭାଙ୍ଗି
ଅନାଇଲେ ନାହିଁ ଲୋଲ-ଅପାଙ୍ଗୀ । ୨୬ ।
ଅନ୍ଧକାର ଦିଶିଲା ଦଶଦିଶ
ଅନ୍ଧକାର ଭାମେ ହେଲେ ଆବେଶ । ୨୭ ।

[ ହରିହର ସ୍ତୁତି ]

ଅୟେ ନୀଳଗିରିବର ମାଧବ
ଅର୍ଦ୍ଧ ଅଙ୍ଗେ ଧରଜା ବର ଶିବ । ୨୮ ।
ଅଙ୍ଘ୍ରି-ତଳୁରେ ତୁମ୍ଭର ଶରଣ
ଅଛି ପଶି ଏ ଭକ୍ତି ନୃପଗଣ । ୨୯ ।

---

ଭ୍ରୂବିକ୍ଷେପ— ଉତ୍କ୍ଷେପଃ ପାତନଂ ଚୈବ ଭ୍ରୂକୁଟୀ ଚତୁରଂ ଭ୍ରୁବୋଃ
କୁଞ୍ଚିତଂ ରେଚିତଂ ଚେତି ସହଜଂ ଚେତି ସପ୍ତଧା—'ନିନ୍ଦଦେବ'

୨୪। ଅନୁରାଗ ହେତୁ ଭ୍ରୂଲତା ନାଚିଲା; ତାହା ଦେଖି ଜଣାଗଲା ଅଙ୍ଗହୀନ—କାମ ଧନୁ ଧରି ଆଚ୍ଛିଲା—ଟାଣିଲା କି ? ୨୫। ଅନିରୁଦ୍ଧପରି—ମହାଦେବ । ଭାବ ଉତ୍ସୁକେ—ଭାବରେ ଉତ୍ସୁକ ହୋଇ । ନିର୍ବିକାର ଚିତ୍ତରେ ପ୍ରଥମେ ଯେଉଁ ବିକାର ଜାତ ହୁଏ, ତାହାକୁ ଭାବ କହନ୍ତି । ୨୬ । ଲୋଲ ଅପାଙ୍ଗୀ—ଚଞ୍ଚଳଲୋଚନା । ୨୮-୨୯ । ହେ ନୀଳଗିରିବର—ହେ ନୀଳଗିରି-ସ୍ୱାମି ! ମାଧବ—ବିଷ୍ଣୁ । ଧରଜା—ପାର୍ବତୀ । ତାଙ୍କର ବର—ସ୍ୱାମୀ, ଶିବ ।



# ସପ୍ତଦଶ ଛାନ୍ଦ

ରାଗ-ବଙ୍ଗଳାଶ୍ରୀ

ଅଥ ଶୁଣମନେ ଶୁଣ ହେ ସୁମନେ ଅମ୍ବିକା-ପ୍ରତ୍ୟଙ୍ଗ-ବର୍ଣ୍ଣନା
ଅମ୍ବୁନିଧି ବାନ୍ଧିବାକୁ ମୋର ବୁଦ୍ଧି ମେରୁ କରୁଅଛି ତୁଳନା ।
ଅନନ୍ତ
ଅନ୍ତ କେମନ୍ତରେ କରିବ,
ଅଞ୍ଜଳରେ ମୋର କେଉଁରୂପେ ସୁର-ନଦୀ-ନୀର ଧରି ପାରିବ ।୧।
ଅନାଦି ଅନନ୍ତ ଅତୁଲ୍ୟ ଅଚିନ୍ତ୍ୟ ଆଶ୍ଚର୍ଯ୍ୟ ଯାହାର ମହିମା
ଅଧମାଗ୍ରଗାର ହୋଇ ମୁଁ ତାଙ୍କର ବର୍ଣ୍ଣିବି ପ୍ରତ୍ୟଙ୍ଗ-ସୁଷମା
ଅତ୍ୟନ୍ତ
ସୁନ୍ଦର ଚରଣ-ଯୁଗଳ,
ଅମ୍ବୁରୁହ ଛାର କେଉଁ ଗୁଣେ ତାର ସୁଷମାସଙ୍ଗେ ହେବ ତୁଲ । ୨।
ଅରୁଣତ୍ୱ ପରିକାଶି ଯେ ଗୋଚର ନୁହଇ ଖୋଜିଲେ ଭ୍ରମରେ
ଅହର୍ନିଶ ସ୍ଫୁଟି ସୁବାସେ ଉଲ୍ଲଟି ଅଟେ ସର୍ବ ମନୋରମରେ
ଅଳତା—
ରଞ୍ଜେ ସେ ହୋଇଲା ରଞ୍ଜିତ,
ଅଶୋକ କୋରକ ଅଙ୍ଗୁଳି ହୀରକ-ନଖସ୍ରଜରେ ବିରାଜିତ । ୩ ।

---

### ସପ୍ତଦଶ ଛାନ୍ଦ

୧ । ସୁମନେ—ପଣ୍ଡିତମାନେ । ଅମ୍ବିକା—ପାର୍ବତୀ । ଅମ୍ବୁନିଧି—ସମୁଦ୍ର । ତୁଳନା – ଓଜନ କରିବା । ଅନନ୍ତ—ଆକାଶ । ସୁରନଦୀନୀର—ଗଙ୍ଗାଜଳ (ପ୍ରବାହ)। ପାର୍ବତୀଙ୍କର ରୂପ ବର୍ଣ୍ଣନା କରିବାକୁ ସାହସ କରିବା, ସମୁଦ୍ର ବାନ୍ଧିବା, ମେରୁ ଓଜନ କରିବା, ଆକାଶ ମାପିବା ଓ ଅଞ୍ଜୁଳାରେ ଗଙ୍ଗାସ୍ରୋତ ପୂରାଇ ରଖିବାର ଆଶା ସଙ୍ଗେ ସମାନ । ୨ । ଅଧମାଗ୍ରଗାର ଅଧମ ଲୋକମାନଙ୍କର ନାମ ଗଣିବା ବେଳେ ପହିଲେ ଯାହା ନାମରେ ଖଡିଗାର ପଡ଼େ । ଅମ୍ବୁରୁହ—ପଦ୍ମ । ୩ । ପଦ୍ମଠାରୁ ଚରଣର ଆଧିକ୍ୟ ଦେଖାଉଅଛନ୍ତି । ସାଧାରଣ ପଦ୍ମକୁ ଅରୁଣ—ସୂର୍ଯ୍ୟ ଫୁଟାଏ; କିନ୍ତୁ ଏ ଚରଣ (ଅରୁଣତ୍ୱକୁ) ସୂର୍ଯ୍ୟତ୍ୱକୁ ବା ପଦ୍ମାନ୍ତରେ ରକ୍ତିମାକୁ ପ୍ରକାଶ କରୁଅଛି । ଭ୍ରମରେ—ଭ୍ରମରମାନେ, ଭ୍ରାନ୍ତିଦ୍ୱାରା । ସାଧାରଣ ପଦ୍ମକୁ ଭ୍ରମରମାନେ ଅକ୍ଲେଶରେ ପାଆନ୍ତି; ମାତ୍ର ଏ ପଦ୍ମକୁ (ଭ୍ରମରେ) ବିଷୟାସକ୍ତି ହେତୁ ଭ୍ରାନ୍ତ ହୋଇ

ଅଛୁ ଊରୁଶୋଭା ବିପରୀତ-ରମ୍ଭାଠାବେ କହନ୍ତୁ ଯା କପଟ
ଅନୁମାନେ ବାଛି ଏହା ଯେ ଯୋଖିଛି ମଣୁଛି ବୁଝେ ସେ ଉଲଟ
ଅଂଶକେ
କରିକରେ ଶୋଭା କାହିଁଛି ?
ଅନୁସରି କାହିଁ ଉପମାନ ପାଇଁ କେଉଁ କବି ବୋଲି ଦେଇଛି । ୪ ।
ଅତି ତରଳତରମନା ବଙ୍କତର ଚକ୍ରକୁ ନିତମ୍ବେ ଗଣିଲ
ଅରି ହୋଇ କରଗତେ ଏଣୁ ଦର-ଯୋଗେଟି ଅଛି ନ ଜାଣିଲ
ଅଟେ କି
ପୁଳିନ ଜଘନକୁ ସମ,
ଅନଙ୍ଗର ହେମପ୍ରଭା ସେ ଚରମ ପରି ନୁହଇ ମନୋରମ । ୫ ।
ଅନାଇଁ ସେ କଟି-ଶୋଭା ସେବାଳଟି ଧୂର୍ଜଟିଙ୍କ ଭରେ ଡମ୍ବରୁ
ଅନୁମାନ କରି ସିଂହହିଁ ତାଙ୍କର କିଙ୍କର ହେଲା ଅସମରୁ ।
ଅଣୁକୁ
ଅଣୁ ବୁଦ୍ଧି ଗଣୁଥାଆନ୍ତି,
ଅଙ୍କ ବୋଲି ଜାଣୁ ଜାଣୁ ଗୃର ଅଙ୍କ ଉପମା କି ବୁଝି ଦିଅନ୍ତି? ୬ ।

---

ଖୋଜିଲେ ଦେଖାଦିଏ ନାହିଁ । ପଦ୍ମ କେବଳ ଦିନରେ ଫୁଟେ; କିନ୍ତୁ ଏ ପଦ୍ମ (ଅହର୍ନିଶ) ଦିନରାତି ସବୁବେଳେ ପ୍ରକାଶିତ । (ଅଶୋକ-କୋରକ) ଅଶୋକକଳି ପରି ଅଙ୍ଗୁଳିଗୁଡ଼ିକ ହୀରାପରି ଉଜ୍ଜ୍ୱଳ ନଖରେ ଶୋଭା ପାଉଅଛି । ୪ । ଊରୁ—ଆଣ୍ଠୁର ଉପରଭାଗ । ବିପରୀତ ରମ୍ଭା—ଓଲଟ କଦଳୀ ଗଛ । କପଟ—ଛଳ, ମିଥ୍ୟା । ଯେ ଏହା ଅନୁମାନବଳରେ (ବାଛି ଯୋଖିଛି) ଉପମା ଦେଇଛି, ମୁଁ ମନେ କରୁଛି ସେ ଓଲଟା ବୁଝେ, ଅର୍ଥାତ୍ ପାର୍ବତୀଙ୍କ ଊରୁପରି ଓଲଟ ରମ୍ଭା ବୋଲି କୁହାଯାଇପାରେ; କିନ୍ତୁ ରମ୍ଭାକୁ ଉପମାନ ଓ ପାର୍ବତୀଙ୍କ ଊରୁକୁ ଉପମେୟ କରାଯିବା ସଙ୍ଗତ ନୁହେଁ । ଉପମାନ—ଉତ୍କୃଷ୍ଟ ଦ୍ରବ୍ୟ, ଉପମେୟ—ନିକୃଷ୍ଟ ଦ୍ରବ୍ୟ । କରିକରେ—ହାତୀ ଶୁଣ୍ଢରେ । ଅଂଶକେ ଟିକିଏ ହେଲେ । ହାତୀଶୁଣ୍ଢ ଉପମାନ ହେବାପାଇଁ ବହୁତ ଅନୁସରଣ କରିବାରୁ କୌଣସି କବି ଏପରି କହିଦେଇଛି । ୫ । ଅତି ତରଳତରମନା— ଅତି ଚଞ୍ଚଳମନା କୌଣସି କବି । ବଙ୍କତର—ଅତି ବଙ୍କା । ନିତମ୍ବ—ପିଚୁ । ଗଣିଲ—ସମାନ କଲା; କିନ୍ତୁ ପାର୍ବତୀଙ୍କ ନିତମ୍ବ ସଙ୍ଗେ ପ୍ରତିଯୋଗିତା କରିବାରୁ ଯେ (ଅରି) ଚକ୍ର ନାମ ଧାରଣ କରିଛି ଓ ବିଷ୍ଣୁଙ୍କ ହାତରେ (ଦର ଯୋଗରେ) ଭୟ ଯୋଗରେ, ଅନ୍ୟ ପକ୍ଷରେ ଶଙ୍ଖ ସହିତ ଅବସ୍ଥାନ କରୁଛି । ଏହା ଯେ କବି ଜାଣି ପାରିଲା ନାହିଁ । ପୁଳିନ—ନଦୀ ଜଳ ପାଖରେ ଥିବା ବାଲୁକାଶଯ୍ୟା । ୬ । ଧୂର୍ଜଟି—ଶିବ । ତାଙ୍କର କିଙ୍କର—ପାର୍ବତୀଙ୍କର କିଙ୍କର (ବାହନ) । ଅସମରୁ—ସମାନ ନ ହେବାରୁ । ଅଣୁକୁ—ପରମାଣୁକୁ ।

ଅନୁପମ ନାଭି—ଶୋଭାସାର ଭାବ ବସୁଧାରେ ଲକ୍ଷ୍ୟ ଭ୍ରମି ବା
ଅନାଉଁ ଅନାଇଁ ଅନ୍ଧପର ଆଉ ତାହାଙ୍କ ତୂପରେ ପଡିବା
ଅଥିବା
ହୋଇ ବିଶୃଙ୍ଖଳ ସରସୀ,
ଅଳପରେ ସର ନୋହେ ତା କ ବର ଲକ୍ଷ୍ୟ ଦେବା ଅବା ଭ୍ରମି ।୭।
ଅଚ୍ଛିନ୍ନ ରୋମାଳୀ ଅଳମାଳ ଢାଳୀ ବର୍ତ୍ତାବଳୀ ବଳ ଶୋଭୁଛି
ଅର୍କ ସୁତାଧାର କ ସେ ହେମ ଧରାପରେ ବହି ତୋର ବହୁଛି
ଅସିତ—
ଫଣୀ ନାଭିବଲ୍ଲ ବାହାର
ଅତ ଉଚ କୁଚ ଅଚଳକୁ ସେ ଚଳୁଛି କ ଧୀର ଗତ ବର ।୮।
ଅସମ ବର୍ତ୍ତୁଳ ବଶାଳ କୋମଳ ସ୍ନିଗ୍ଧ ଶ୍ରୀଳ କରଯୁଗଳ
ଅମଳ କମଳ ସ୍ୱଚ୍ଛ ଚମ୍ପାମାଳ ମଞ୍ଜୁଳ ମୃଣାଳ ଅତୁଳ

---

କାଳାନ୍ତରଗତେ ଭ୍ରମୌ ଯତ୍ସୂକ୍ଷ୍ମଂ ଦୃଶ୍ୟତେ ରଜଃ
ତସ୍ୟ ଷଷ୍ଠିତମୋଭାଗଃ ପରମାଣୁଃ ସ ଉଚ୍ୟତେ ।

ଅଣୁ ବୁଦ୍ଧି – ଅଳ୍ପ ବୁଦ୍ଧି । ପାର୍ବତୀଙ୍କ କଟିକୁ ସ୍ୱରଅଙ୍କ (୪) ସଙ୍ଗେ କେହି କେହି ତୁଳନା କରନ୍ତି । ଯାହାର ନାମ ଅଙ୍କ ଅର୍ଥାତ୍ କଳଙ୍କ,ସେ ତାଙ୍କର ନିର୍ମଳ ଅଙ୍ଗର କଟି ସଙ୍ଗେ କପର ତୁଳିତ ହେବ ? ୬ । ଅନୁପମ – ଅତୁଲ୍ୟ (ନାଭିଶୋଭାସାର) ନାଭିର ଶ୍ରେଷ୍ଠ ଶୋଭା ବିଷୟ ଚିନ୍ତା କରି ଭାବିଲେ (ଭ୍ରମି) ଜଳ ଭଉଁରୀ ବା (ଲକ୍ଷ୍ୟ) ଉପମା ହେବ ? ଲକ୍ଷ୍ୟ ଭ୍ରମି ବା ? ବୋଲି କହିବା ଦ୍ୱାରା ସେମାନେ ଛଳରେ କହି-ଦେଲେ ଯେ 'ଲକ୍ଷ୍ୟ ଭ୍ରମିବା' ଅର୍ଥାତ୍ ଭଉଁରୀ ସଙ୍ଗେ ପାର୍ବତୀଙ୍କ ନାଭିକୁ ଲକ୍ଷ୍ୟ କରିବା ନାହିଁ ଯେ – ଲକ୍ଷ୍ୟଭ୍ରଷ୍ଟ ହେବା । ଏପରି ଉପମା ଦେଲେ ଅମ୍ଭେମାନେ (ଲକ୍ଷ୍ୟ) କବିଯଶଃରୁ ଭ୍ରଷ୍ଟ ହେବା । ଅନାଉଁ……ପଡିବା – ଅନ୍ଧପରି କୂଅରେ ପଡିବା ସଙ୍ଗେ ସମାନ । ଅତଏବ ତାହା କାହିଁକି କରିବା ? ସରସୀ – ପୋଖରୀ । ଅଚ୍ଛିନ୍ନ ରୋମାଳୀ – ଅଖଣ୍ଡିତ ରୋମାବଳୀ,ନାଭିଠାରୁ ସ୍ତନ ମଧ୍ୟ ପର୍ଯ୍ୟନ୍ତ ଯାଇଥିବା ସୂକ୍ଷ୍ମ ଲୋମରେଖା । (ଅଳମାଳ ଢାଳୀ ବର୍ତ୍ତାବଳୀ) ଭଅଁରମାନଙ୍କର କଳା ବର୍ତ୍ତୁଳ (ଦେହ) ଭଳି (ଶୋଭୁଛି) ଶୋଭାପାଉଛି । ହେମ ଧରାପରେ – ସୁନା ଭୂଇଁରେ । ଅର୍କସୁତାଧାର— ଯମୁନାର ସୁଅ । ଅସିତ ଫଣୀ – କଳାସାପ । ନାଭିବଲ୍ଲ – ନାଭି ରୂପକ ଗର୍ତ୍ତରୁ । କୁଚ-ଅଚଳକୁ—କୁଚ ରୂପ ପର୍ବତକୁ । ଧୀର ଗତିରେ – ଅସ୍ତେଅସ୍ତେ ।୯। ବର୍ତ୍ତୁଳ – ଗୋଲ-ଗୋଲ । ସ୍ନିଗ୍ଧ – ଚିକ୍କଣ,ଲବଣ୍ୟଯୁକ୍ତ । ଶ୍ରୀଳ – ଶୋଭାଯୁକ୍ତ । ଅମଳ – ଦୋଷରହିତ ।

ଅଶେଷ—

ବ୍ରହ୍ମାଣ୍ଡରେ ନାହିଁ ଉପମା,
ଅନ୍ୟରୂପେ ବିହି ବିହିପାରି ନାହିଁ ତାହାକୁହିଁ ସେହି ସୁଷମା ।୯।
ଅଙ୍ଗୁଳୀ ଆବଳୀ ଚମ୍ପାକଳୀବଳି ଦଳିତ ଗଳିତ ନୁହଇ
ଅତନୁ କାଞ୍ଚନ ସଞ୍ଚ ପଞ୍ଚଶରି ରଚନା କରିଛି କି ବହି

ଅମଳ

କାନ୍ତ-ଦଳରୁ ନଖ-ତୋରି
ଅବଜ ଯୋନି ସୃଷ୍ଟି ଗଢ଼ିଥିଲେ ନୋହିଲାଟି ଏ ପରି ଶୋଭାତୋରି ।୧୦ ।
ଅଛି ଯେଣୁ ବଳି ବିପୁରି ତ୍ରିବଳୀ ଏଣୁ ସେ ତ୍ରିବଳୀ ବୋଲାଇ
ଅନଙ୍ଗପୁର-କେଳି-ସରସୀର ପାବଛି ପରି ପ୍ରତେ ହୋଇ

ଅପରେ

ନୋହିବ ନୋହିଛି ନୋହୁଛି,
ଅଧ ଊର୍ଦ୍ଧ୍ୱ ମଧ୍ୟରେ କି ଏହି ସିଦ୍ଧ ବିଧି ତିନଗାର ଦେଇଛି ।୧୧।
ଅମାନ-କଠିନ ପୀନ ଘନସ୍ତନ ଭୁବନ-ନୟନମୋହନ
ଅମ୍ବୁଜ-କୋରକ ଛେକ ସମ୍ପୁଟକ ଚକ୍ରବାକ କି ତା ସମାନ

---

କମଳ—ପଦ୍ମ । ସୁରୁ—ମନୋହର । ଚମ୍ପାମାଳ—ଚମ୍ପାହାର । ମଞ୍ଜୁଳ ମୃଣାଳ—ସୁନ୍ଦର (ଏଠାରେ କୋମଳ) ପଦ୍ମନାଳ ଆଦି (ଅତୁଳ) ଉପମାଯୋଗ୍ୟ ନୁହନ୍ତି । ୧୦। ଚମ୍ପାକଢ଼ି ସମୟରେ (ଦଳିତ) ପ୍ରସ୍ଫୁଟିତ ଓ ତପରେ (ଗଳିତ ହୁଏ) ଝଡ଼ିପଡ଼େ;କିନ୍ତୁ ପାର୍ବତୀଙ୍କ ଅଙ୍ଗୁଳି ସେପରି ନୁହେଁ । ଅତନୁ—କନ୍ଦର୍ପ । (କାଞ୍ଚନ-ସଞ୍ଚ ପଞ୍ଚଶର) ସୁନାରେ ସୁନ୍ଦର ପାଞ୍ଚଗୋଟି ଶର ତିଆରି କରିଛି କି ? ନଖ (କାନ୍ତଦଳ) ମାଳତୀ ପାଖୁଡ଼ାଠାରୁ ଆହୁରି ଉଜ୍ଜ୍ୱଳ । (ଅବଜଯୋନି) ବିଧାତା ଏହି ନଖକୁ ସୃଷ୍ଟି ତନ୍ଦ୍ରା ନକ୍ଷତ୍ରକୁ ଗଢ଼ିଥିଲେ ସେ,ସେ ଏପରି ହେଲାନାହିଁ ।୧୧। ଶୋଭାରେ ତିନପୁରକୁ (ବଳି) ଜିଣିଥିବାରୁ ପାର୍ବତୀଙ୍କର ଉଦରର 'ତ୍ରିବଳୀ' ତ୍ରି-ବଳି ନାମକୁ ଧାରଣ କରିଛି ପରି ! ଅନଙ୍ଗ...ହୋଇ । କାମ ନଗରରେ କ୍ରୀଡ଼ା ପାଇଁ ଯେଉଁ ପୋଖରୀ ଅଛି, ତାହାର (ପାବଛି) ପାହାଚ ପରି ବୋଧ ହେଉଛି । ତ୍ରିବଳୀକୁ ଉତ୍ପ୍ରେକ୍ଷା କରୁଅଛନ୍ତି—ପାର୍ବତୀଙ୍କ ପରି ସ୍ତ୍ରୀ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ଲୋକରେ ଅତୀତ, ଭବିଷ୍ୟତ୍ ଓ ବର୍ତ୍ତମାନ କାଳରେ ନୋହିଥିଲା, ନୋହିବ ଓ ନାହିଁ—ଏହି ତିନି କଥାକୁ ତିନଗାର ପକାଇ ଦୃଢ଼ କରି ଜଣାଇଦେଇଛି ପରି ! ୧୨ । ଅମାନ କଠିନ—ଅତି କଠିନ । ପୀନ—ସ୍ଥୂଳ । ଘନ—ନିବିଡ଼, ଲଗାଲଗି । ଭୁବନ...ମୋହନ—ସଂସାରଯାକ

ଅଚଳ
ଉପମା ଦେଖି ଦେବା ଅବା
ଅସମାନ ବୀଜପୂର ତୃଣରାଜ ଘଟ ଥିଲେ ଦେଖି ଯୋଖିବା । ୧୨ ।
ଅନଙ୍ଗର ଖେଳ-କନ୍ଦୁକ ଶ୍ରୀଫଳ ବୋଲିବାରୁ ଅଛି କି ଫଳ ?
ଅନୁମାନ କରି କବା ସେ ତାହାର ବଜା-ବୀଣା-ତୁମ୍ବୀ-ଯୁଗଳ ।
ଅଟଇ
ଦୃଢ଼ିମ ଗୁଣେ ସେ ଅତୁଳ,
ଅଗ୍ରଭାଗେ ନୀଳଚୂଚୁକ କମଳ-କୋରକ ପରେ କି ଭ୍ରସଳ । ୧୩ ।
ଅନୁମାନ କରେ କଣ୍ଠଶୋଭା ଦରେ ନ ଥିବ କି ସମ କରିବା
ଅଖିଳ ଶୋଭନ ପ୍ରସନ୍ନ-ବଦନ-ମୁକୁର-ମୁଠି ସେ କି ଅବା
ଅଟେ ସେ
ଭୁଜଯୁଗଳ-ଲତା-ମୂଳ,
ଅହର୍ନିଶି ବସି ବଗୁରିଲେ ଦିଶିଲା କି ଉପମା ତାହା ତୁଲ । ୧୪ ।

---

ଲୋକଙ୍କର ନେତ୍ରକୁ ମୋହୁଥିବା । ଅମ୍ବୁଜ-କୋରକ – ପଦ୍ମକଢ଼ । ଚେକ ସଂସ୍ପୃଷ୍ଟକ – ଉତ୍ତମରୂପେ ତିଆର ହୋଇଥିବା ଉଇ ଫରୁଆ । ଚକ୍ରବାକ – ଚକୁଆଚକୀ ପକ୍ଷୀ । ଅଚଳ – ପର୍ବତ । ବୀଜପୂର – ଟେଭ୍ରଲେମ୍ବୁ । ତୃଣରାଜ – ତାଳ । ଘଟ – ମାଠିଆ ।

ତରପ୍ରବାସିଂସ୍ତବ ବାଷ୍ଟିକାସ୍ୟାଂ ବଭର୍ତ୍ତି ଚଷ୍ଟାର ଫଳାନି ବୀଚୂତ୍
ସୌବୀର-କର୍ମୀରକ-ବୀଜପୂର-ତାଳାନ୍ୟସୌ ଧାସ୍ୟତ କିଂ ନୁ ପଶ୍ଚାତ୍ ।

ସୌବୀର-ବରକୋଳି । ୧୩ । କନ୍ଦୁକ—ପେଣ୍ଡୁ । ଶ୍ରୀଫଳ—ବେଲ୍ ବା ନଡଆ । ତାହାର (କାମର) ବାଜା ବୀଣାତୁମ୍ବୀ ଯୁଗଳ—କାମ ଯେଉଁ ବୀଣା ବଜାଏ, ତାହାର ଲାଉ ଦୁଇଟି । ଦୃଢ଼ିମ – କଠିନତା । ନୀଳଚୂଚୁକ—ସ୍ତନର ଅଗ୍ରଭାଗ । କମଳକୋରକ – ପଦ୍ମକଢ଼ । ଭ୍ରସଳ—ଭଅଁର ।

ବନେଷୁ ଗଚ୍ଛସ୍ତୁ ନିତାନ୍ତପୀବରଂ
ତଦୀୟମାନୀଳମୁଖଂ ସ୍ତନଦ୍ଵୟଂ ।
ତିରସ୍କାର ଭ୍ରମରାଭଲୀନୟୋଃ
ସୁଜାତୟୋଃ ପଙ୍କଜକୋଷୟୋଃ ଶ୍ରିୟଂ । ରଘୁବଂଶ

୧୪ । ଦରେ—ଶଙ୍ଖ ସହିତ; ସମକରିବା -ତୁଳିବା । ଅଖିଳ ଶୋଭନ—ସମସ୍ତ ଶୋଭାର ଆଧାର (ପ୍ରସନ୍ନବଦନ) ପ୍ରଫୁଲ୍ଲ ମୁଖ ରୂପ (ମୁକୁର) ଦର୍ପଣର (ମୁଠି) ଧରିବା ବେଣ୍ଟ କି ? ଅଥବା (ଭୁଜଯୁଗଳ ଲତା) ହାତ ରୂପ ଲତା ଦୁଇଟିର ମୂଳ ।

ଅତୁଳ ଅମଳ ଶ୍ୟାମଳ କମଳ ଅକ୍ଷି ସଙ୍ଗେ ଲକ୍ଷି ନ ପାରି
ଅସମରୁ ଡରି ବନବାସ କରି ରହିଲେ ଖଞ୍ଜନ ଶଫରୀ ।
ଅପିତ—
ଉତ୍ପଳ କି ଗୁଣେ ଲକ୍ଷିବା,
ଅବଶ୍ୟ କଥାଏ କହି ଏହି ନ୍ୟାୟେ ହରିଣୀକି ଆଣି ଯୋଖିବା ।୧୪।

ଅପାଙ୍ଗ-ତରଙ୍ଗକୁ ରଙ୍ଗ-ତରଙ୍ଗ-କୁରଙ୍ଗ ହିଁ କାହିଁ ପାଇବେ
ଅଛି ପରମ୍ପରା କଣ୍ଠପାଶ ପରି ବୋଲି ବୋଲିବା ଅବା ଏବେ
ଅଟେ ସେ
ବଦନ-ଦର୍ପଣ-କବାଟୀ
ଅବା ସେ ନଅଙ୍କ ବୋଲନ୍ତାଇ ଅଙ୍କ ଅଛି ତା ଦେହି ଦୋଲୁବାଟି ।୧୫।

---

। ଅମଳ ଶ୍ୟମଳ କମଳ—ଦୋଷହୀନ ନୀଳପଦ୍ମକୁ । ଅସମରୁ—ସମାନ ହୋଇବାରୁ । ଖଞ୍ଜନ—କଜଳପାଣ୍ଡି । ଶଫରୀ--ମହୁରାଳି ମାଛ; (ଏ ଦୁହେଁ) ବନବାସ କରି—ଖଞ୍ଜନ ପକ୍ଷରେ (ବନ)ଜଙ୍ଗଲରେ ଓ ଶଫରୀ ପକ୍ଷରେ (ବନ) ଜଳରେ ଅପିତ ଉତ୍ପଳ—ସୌଗନ୍ଧିକ, ନୀଳକଇଁ । ଅବଶ୍ୟ·····ଯୋଖିବା—ଲେଖି ବସିଲେ କାହିଁ ଗୋଟିଏ ଉପମା ଦେବାକୁ ପଡିବ; ତେଣୁ କର୍ତ୍ତବ୍ୟ ଅନୁରୋଧରେ 'ହରିଣୀ'କୁ ଆର୍ଯ୍ୟାଙ୍କ ଚକ୍ଷୁ ସଙ୍ଗେ ସମାନ କରିବା ସିନା; କିନ୍ତୁ ପ୍ରକୃତରେ ସେ ତଦ୍‌ଯୋଗ୍ୟା ନୁହେଁ। ୧୫ ଅପାଙ୍ଗ-ତରଙ୍ଗ—ବାରମ୍ବାର କଟାକ୍ଷ ନିକ୍ଷେପ କରିବା । ରଙ୍ଗ-ତରଙ୍ଗ-କୁରଙ୍ଗ—ଲୀଳାଚଞ୍ଚଳ ମୃଗ । ପରମ୍ପରା—ପୁରୁଷାନୁକ୍ରମେ ଚଳି ଆସୁଥିବା । ପାଶପରି—ପାଶ ପରି । କବିମାନେ ପରମ୍ପରାକ୍ରମେ କଣ୍ଠକୁ ପାଶ ସଙ୍ଗେ ତୁଳନା କରିଥାନ୍ତି; ତାଙ୍କ ମର୍ଯ୍ୟାଦାରକ୍ଷା ପାଇଁ ତାହାହିଁ କହିଦେଉଛୁଁ ସିନା ! ବଦନ-ଦର୍ପଣ କବାଟୀ—ମୁଖରୂପକ ଦର୍ପଣର ଘୋଡଣି । ଅଥବା ତାହାକୁ 'ନଅଙ୍କ' ୯ ବୋଲି କହନ୍ତେ; କିନ୍ତୁ ତା । କହିବା କାପର ? ଯେହେତୁ କଳଙ୍କବାଚକ ଅଙ୍କପଦ ତାହା ସଙ୍ଗେ ମିଶିଛି ।

ନୈଷଧ—ଅନ୍ୟା ଯଦଷ୍ଟାଦଶ ସଂବିଭଜ୍ୟ ବିଦ୍ୟାଃ ଶ୍ରୁତୀ ଦଧ୍ରତୁରର୍ଦ୍ଧମର୍ଦ୍ଧଂ
ନେତ୍ରାନ୍ତରୁତ୍କୀର୍ଣ୍ଣଗଭୀରରେଖଃ କିଂ ତସ୍ୟ ସଂଖ୍ୟୈବ ନବାନବାଙ୍କଃ ।୭।୩୭।

ଅଧର ସୁରଙ୍ଗସଙ୍ଗେ ହେଉଁ ଯୋଗ୍ୟ ତନୁ ଫୋଡ଼ା ହେଲେ ପ୍ରବାଳ
ଅନାଉଁ ଅନାଉଁ ଅଳ୍ପଦିନେ ହେଉଅଛି ଆନବର୍ଣ୍ଣ ପ୍ରବାଳ
ଅରୁଣ
କାନ୍ତି ଏହିରୂପେ ତେଜୁଛି,
ଅନୁରୂପ ନୋହି ପାଚଲ ବିମ୍ବ କି ଧୂସରଭାବକୁ ବହୁଛି । ୧୭ ।
ଅଣୁମାନ ତାର ଶୋଭା-ପଠାନ୍ତର ନୁହନ୍ତି ବନ୍ଧୁଲୀ ମନ୍ଦାର
ଅମୃତ ଆଧାର ମଧୁରୁଁ ମଧୁର ସ୍ମିତ-କ୍ରୀଡ଼ା-ଗୃହ-ମନ୍ଦିର ।
ଅମୂଲ୍ୟ
ହୀରପଂକ୍ତି ତୋଷ ଦଶନ
ଅପୂର୍ବ ମାଣିକ୍ୟ କୁନ୍ଦକଳୀ ପକ୍ୱ ଡାଳିମ ନୋହେ ତା ସମାନ ।୧୮।
ଅଙ୍ଗୁଳି-ଯନ୍ତ୍ରଣା ଶିବଙ୍କର ଗଣା ନୋହେ ସେ ଗୃହ ଶବୁକକୁ
ଅମୃତାଂଶୁ ଗୃହ କଳାକୁ ବଗୃହ କବଏ ବର୍ଣ୍ଣନ୍ତି ତାହାକୁ
ଅତନୁ

---

୧୭ । ଅଧର ସୁରଙ୍ଗ—ଓଠର ଉତ୍ତମ ରକ୍ତ ବର୍ଣ୍ଣ । ପ୍ରବାଳ—ପୋହଳା । ତନୁ ଫୋଡ଼ା ଦେହ ଫୋଡା ହେଲା । ପ୍ରବାଳ—କଅଁଳ ପତ୍ର ଅଳ୍ପସମୟ ପରେ (ସମାନ ହୋଇ ନ ପାରିବାରୁ) ଅନ୍ୟ ରଙ୍ଗ (ଶ୍ୟାମଳ) ହେଉଛି । (ଅରୁଣ) ସୂର୍ଯ୍ୟ ମଧ୍ୟ ଅଳ୍ପକ୍ଷଣପରେ ନିଜକାନ୍ତି (ରକ୍ତକାନ୍ତି) ଛାଡ଼ୁଛି । ବିମ୍ବ—କଇଁଚିକାକୁଡ ବା ଗୋରୁଖିଆ ଫଳ (ଅନୁରୂପ) ରୂପର ଯୋଗ୍ୟ (ସମାନ) ନ ହୋଇ (ଧୂସରଭାବ) ପାଉଁଶିଆ ରଙ୍ଗକୁ ଧରୁଛି । ୧୮ । ବନ୍ଧୁଲୀ– ଦ’ପହରିଆ ଫୁଲ । ପଠାନ୍ତର—ଅନ୍ୟ ଉପମା । ଅମୃତ ଆଧାର—ଅମୃତର ଭଣ୍ଡା । ମଧୁରୁ—ମହୁ ଅପେକ୍ଷା । ସ୍ମିତ—ମନ୍ଦ-ହାସ । ତାହାର କ୍ରୀଡ଼ାର ଗୃହମନ୍ଦିର—ମନୋହର କେଳିଗୃହ । ଅମୂଲ୍ୟ—ଉତ୍କୃଷ୍ଟ । ତୋଷ—ଉଜ୍ଜ୍ୱଳ । ଦଶନ—ଦନ୍ତ । କୁନ୍ଦକଳୀ—କୁନ୍ଦକଢ଼ି । ଡାଳିମ—ଡାଳିମ୍ବ ବୀଜ । ୧୯ । ଅଙ୍ଗୁଳିଯନ୍ତ୍ରଣା—ଆଙ୍ଗୁଠିଦାଗ । ଅମୃତାଂଶୁ—ଚନ୍ଦ୍ର । ଗୃହକଳା—ପୂର୍ଣ୍ଣଚନ୍ଦ୍ର ଗୃହଭାଗରୁ ଏକ ଭାଗ (ଚତୁର୍ଥୀଚନ୍ଦ୍ରାକାର) । ଅତନୁ ତୂଣୀ—କାମର ଶର ରଖିବା ଖୋଳ । ବଡାଇ ସେହି ନେତ୍ର ପ୍ରୀତ—ଆଖିର ଆନନ୍ଦ ପ୍ରଦାନ କରେ । “ମୁଖଦର୍ପଣ ବୃନ୍ତେନାଙ୍ଗୁଳିଯନ୍ତ୍ରଣସ୍ୟ ତଥା” ରସକଳ୍ପଦ୍ରୁମ । ଏ ପଦରେ ଶିବଙ୍କର ଅଙ୍ଗୁଳିଯନ୍ତ୍ରଣା ବୋଲି ଯେଉଁ ଲେଖା ଅଛି, ତାହା ଆଦର୍ଶ ଲେଖକଙ୍କର ଭୁଲ । ନୈଷଧରେ ଚିବୁକ ବର୍ଣ୍ଣନା ପ୍ରସଙ୍ଗରେ “ବିଲୋକିତାସ୍ୟା ମୁଖମୁନ୍ନମଯ୍ୟ କିଂ ବେଧ-ସେୟଂ ସୁଷମାସମାପ୍ତୌ, ଧୃତ୍ୟୁଞ୍ଚବା ଯଚ୍ଚିବୁକେ ଚକାସ୍ତି ନିମ୍ନେ ମନାଗଙ୍ଗୁଳି-

ତୂଣୀର ତିଳଶୁଙ୍କୁ ପ୍ରତି,
ଅପାର-ସୁଷମ-ନାସିକା ତା ସମ ବଢ଼ାଇ ସେହୁ ନେବଗ୍ରୀଷ୍ଠ ।୧୯।
ଅମୃତ-ଶରୀର ଶ୍ରୀମୁଖ-ସୁନ୍ଦରପଣ ଗୃହୁଁ ମହାଚଞ୍ଚଳେ
ଅନୁସରି ଯାଇ କ୍ଷୀଣତାକୁ ପାଇ ରହିଲି ତାହାର ପୁରତେ ।
ଅଟନ୍ତି
ଦୟାହୃଦୟ ସେ ଜନନୀ,
ଅନୁଗତ ହୋଇବାରୁ ଶିରେ ନେଇ ବହିଲେ ତାର ସେବା ଘେନି ।୨୦।
ଅମ୍ବୁଜକୁ ଅବା କେହି ଲକ୍ଷ୍ୟ ଦେବା ଦିବାରେ ସିନା ସେ ରୁଚିର
ଅନଙ୍ଗ-ମୁକୁର ତାର ତାର-ତାରତମକୁ ଛାର ପରକାର
ଅଛନ୍ତି
ଏମାନଙ୍କରୁ ରୁଚିର ବା
ଅବ୍ଜ-ଭବ-ଭବେ ଉପମା ଏ ହେବେ ଏଥିର ଲକ୍ଷ୍ୟ କେହି
ଦେବା । ୨୧ ।
ଅଳକ-ଆବଳୀ-ଶୋଭା ସଙ୍ଗେ ଭଲ ଯୋଖିଥାନ୍ତି ଶିଶୁ-ମଧୁପେ
ଅର୍ଦ୍ଧଚନ୍ଦ୍ରଖଣ୍ଡ ଯେ ଜାଣିଅଛନ୍ତି ଭଲେ ଯୋଖନ୍ତି ସେ କରୁପେ
ଅତନୁ –
ମୁକୁର ଗାରୁଥାନ୍ତି ଗଣ୍ଡେ
ଅପୂର୍ବ-ପଣ୍ଡିତ ମଧୁକରମିତ-ଦ୍ୟୁତିକି ଲକ୍ଷ୍ୟ ଦ୍ୟନ୍ତି ତୁଣ୍ଡେ ।୨୨।

---

ଯନ୍ତ୍ରଣେବ" ଏହି ଶ୍ଳୋକଦ୍ଵାରା ଚବୁକ-ଚିହ୍ନକୁ ବିଧାତାର ଅଙ୍ଗୁଳଦାଗ ବୋଲି କୁହା-ଯାଇଅଛି । ତିଳଶୁଙ୍କୁ ପରିବର୍ତ୍ତେ ତିଳପୁଷ୍ପ ପାଠ ଠିକ୍ ବୋଲି ଜଣାଯାଏ । ୨୧ । ତାରତାରତମ – ଉତ୍କୃଷ୍ଟ ଉଜ୍ଜ୍ୱଳତାକୁ । ଅବ୍ଜଭବଭବେ – ବିଧାତାର ସଂସାରରେ । ୨୨ । ଅଳକ-ଆବଳୀ – ଚୂର୍ଣ୍ଣ କୁନ୍ତଳଗୁଡ଼ିକ (ମୁଖ ଦୁଇପାଖର ଛୋଟ ଛୋଟ କେଶ-ଗୁଡ଼ିକ)।ଶିଶୁ ମଧୁପ – ଛୁଆ ଭଅଁର। ଅର୍ଦ୍ଧଚନ୍ଦ୍ର – ଅଷ୍ଟମୀ ତିଥିର ଚନ୍ଦ୍ର ।ଗାରୁଥାନ୍ତି — ଲେଖୁଥାନ୍ତି, ସମାନ କରୁଥାନ୍ତି । ଗଣ୍ଡେ – ଗାଲସଙ୍ଗରେ । ଅପୂର୍ବ ପଣ୍ଡିତ—ଅପଣ୍ଡିତ ମୂର୍ଖ (ମଟୁକ) ଯଷ୍ଟିମଧୁ ପୁଷ୍ପର (ମିତ) ଅତିଅଳ୍ପ ଦ୍ୟୁତିକି ( ତୁଣ୍ଡେ ଲକ୍ଷ୍ୟ ଦ୍ୟନ୍ତି ) କଥାରେ କେବଳ କହୁଥାନ୍ତି । କେଶ ବର୍ଣ୍ଣନରେ କବିସମ୍ପ୍ରଦାୟ—

ତମଃ-ଶୈବାଳ-ପାଥୋଦବର୍ହି-ଭ୍ରମରଚାମରୈଃ
ଯମୁନାବୀଚି-ନୀଳାଶ୍ମ-ନୀଳାମ୍ଭୋଜୈଃ ସମଃ କଚଃ
ସଙ୍କୁଚଃ ସୈଂହିକେୟନ କୌଟିଲ୍ୟଂ ତଦ୍‌ଗୁଣଃ ସ୍ମୃତାଃ ।
– ରସ କଳ୍ପଦ୍ରୁମ

ଅତି ବନ୍ଧୁରତର ଚକ୍‌କଣ ଚକୁର-ଭାର ଅଟେ କେତେ ସୁଷମ
ଅଞ୍ଜନ ଅନ୍ଧାର ଅଳି ଅମ୍ବୁଧର ଅଂଶରେ ଅଟନ୍ତି ଅସମ ।
ଅର୍ଦ୍ଧଭା—
ତରଙ୍ଗେ ଯାକୁ ତୁଳ ନୋହି,
ଅଧୋମୁଖୀ ହୋଇ ଯାଉଛନ୍ତି ପଳାଇ ଏବେ ହେଉଛନ୍ତି ଲଜ ପାଇ ।୧୪।
ଅଶ୍ମ ହେଲା ନୀଳମଣି ସେ କୁନ୍ତଳକୁଳ ଶୋଭିବାକୁ ଅନାଇ
ଅଦ୍ୟାପି ଶୈବାଳ ଛଳେ ନୋହି ତୁଳ ଜଳରେ କେବଳ ଭାସଇ ।
ଅଟଇ
କେକୀବର କେତେ ବିବେକୀ,
ଅମ୍ବାକେଶ-ଦ୍ରୋହୀ ହେବା ହେଜଯାଇ କୁମାର ଆଶ୍ରେ କଲାଟି ସେ ।
ଅନଳରେ ପୁନଃ ପୁନଃ ଅପଘନ ଦହନ କଲେ ହେଁ କାଞ୍ଚନ
ଅଙ୍ଗର ଗଉରତାରୁ ତେବେ ତା'ର ତାର ହେଲା ଅତି ନିଉନ
ଅପାର—
ପେଷଣ-ସ୍ନିଗ୍ଧ-ହରିତାଳ
ଅସ୍ପୃଷ୍ଟେ କେତକୀ ଚମ୍ପା ଗଉରୀଙ୍କ କରିବା ତାହା ତୁଲେ ତୁଲ । ୧୫ ।
ଅନନ୍ତହିଁ ଅନ୍ତ କରି ସେ ଶ୍ରୀଅଙ୍ଗ-ଶୋଭା ତ ବର୍ଣ୍ଣି ନ ପାରିବେ,
ଅବିବେକୀବର ଅଳ୍ପ ବୁଦ୍ଧି ମୋର ନର-ଜନ୍ମ ପୁଣି ଦଇବେ
ଅସ୍ପଷ୍ଟ
ହେଲେ ଏଣୁ ଧୀରେ ନ ଧର,
ଅଚଳାପତି ଭଞ୍ଜବୀର ନିରତେ ଚନ୍ତେ ଅଚଳ-ସୁତାବର । ୧୬ ।

---

୧୪ । ଅଶ୍ମ—ପଥର । କୁନ୍ତଳ—କେଶ । ଶୈବାଳ—ଶିଉଳି ( ଦଳ ) । କେକୀବର...ମୟୂରଶ୍ରେଷ୍ଠ । ଅମ୍ବା—ମାତା ( ପାର୍ବତୀ ) । କେଶଦ୍ରୋହୀ—କେଶର ପ୍ରତିପକ୍ଷ । ହେଜ—ଭାବି । ଦୋଷ ଦୂର ପାଇଁ ( କୁମାର ) କାର୍ତ୍ତିକେୟଙ୍କୁ ଆଶ୍ରୟ କଲା । ୧୫ । ଅନଳରେ—ଅଗ୍ନିରେ । ଅପଘନ—ଦେହ । କାଞ୍ଚନ—ସୁନା । ଅଙ୍ଗ-ଗଉର........ନିଉନ । 'ତାର' ( ସୁନାର ) ତେଜ ପାର୍ବତୀଙ୍କର ଦେହର ଗୌର-ବର୍ଣ୍ଣଠାରୁ ତେବେ ସୁଦ୍ଧା ରଙ୍ଗରେ କମିଗଲା । ଅପାରପେଷଣ—ଭଲ କରି ଘୋଟା ହୋଇଥିବା । ସ୍ନିଗ୍ଧ—ଚକ୍‌କଣ । ୧୬ । ଅନନ୍ତ—ବାସୁକି । ଅବିବେକୀବର—ଅବି-ବେକୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅଚଳାପତି—ପୃଥ୍ୱୀପତି, ରାଜା । ନିରତେ—ସର୍ବଦା । ଅଚଳସୁତାବର—ପାର୍ବତୀଙ୍କ ସ୍ୱାମୀ, ଶିବ ।

# ଅଷ୍ଟାଦଶ ଛାନ୍ଦ

ରାଗ—ରସପଞ୍ଚକର ସଂଚାର ବୋଲି ବୃତ୍ତରେ

ଅମୃତ ରସ, ଶୁଣ ବିବୁଧ
ଅନ୍ତେ ନ ପାଇବ ଅନ୍ତକ କ୍ଳେଶ । ୧ ।
ଅମ୍ବିକା ବାଳୀ ଶୋଭୁଛିରେ ଝଳି
ଅକ୍ଷିମନର ସେ ବନ୍ଦୀଶାଙ୍କୁଳୀ । ୨ ।
ଅମ୍ବା ପିତାର ଚିନ୍ତା ଅପାର
ଅନୁରୂପେ ସେ ଲୋଡ଼ୁଥାନ୍ତି ବର । ୩ ।
ଅନେକ ଦୂରେ ଖୋଜିଲେ ସ୍ମରେ
ଅମରପୁର ନରନାଗପୁରେ । ୪ ।
ଅଂଶକେ ସର କୁମାରୀ ପର
ଅଭିରାମ ତାର ନାହିଁ ବିପୁରି । ୫ ।
ଅଇଲେ ଦୂତେ ବିମନମତେ
ଅତି ଚିନ୍ତା ହେଲ ଅଦ୍ରୀଶ-ଚିତ୍ତେ । ୬ ।
ଅମୃତରସ ଦେବଙ୍କ ଗ୍ରାସ
ଅନ୍ୟ ଜାଣେ କି ତା ଭୋଗ ବିଳାସ । ୭ ।
ଅମ୍ବୁଜାସନୀ ଅଚ୍ୟୁତେ ମାନି
ଅମରବରକୁ ଶଚୀ କାମିନୀ । ୮ ।

---

## ଅଷ୍ଟାଦଶ ଛାନ୍ଦ

୧ । ବିବୁଧ—ପଣ୍ଡିତ । ଅନ୍ତକକ୍ଳେଶ—ଯମଦଣ୍ଡ । ବନ୍ଦୀଶାଙ୍କୁଳୀ—ବାନ୍ଧିବାର ବେଡ଼ି ( ଜଞ୍ଜିର ) । ଅମ୍ବା ମାତା । ଅନୁରୂପ—ଯୋଗ୍ୟ । ୪ । ସ୍ମର—ଦୂତ । ୫ । ଅଭିରାମ—ସୁନ୍ଦର । ବିମନମତେ—ଦୁଃଖିତ ମନରେ । ଅଦ୍ରୀଶ—ହିମାଳୟ । ୭ । ଅମୃତରୂପ ରସ । ଗ୍ରାସ—ଆହାର । ଦେବତାଙ୍କ ବ୍ୟତୀତ ଅମୃତକୁ ଯେପରି ଅପର କେହି ଭୋଗ କରି ନ ପାରେ । ୮ । ଅମ୍ବୁଜାସନୀ—ଲକ୍ଷ୍ମୀ (ଅମ୍ବୁଜାସନା) ଅଚ୍ୟୁତ—ନାରାୟଣ, ବିଷ୍ଣୁ, ଅମରବର—ଇନ୍ଦ୍ର । ଶିବ (ଶକ୍ତି) ପାର୍ବତୀ ଏ ଦୁହେଁ ଏକ । ଅତଏବ ସ୍ୱୟମ୍ବର ନ କରଇ ।

ଅଛି ପୁରାଣ        ବେଦ-ପ୍ରମାଣ,
ଅଭିନ୍ନ ଶିବଶକ୍ତି ବେନି ଜଣ । ୯ ।
ଅତଃକାରଣେ        ସକଳ ଗୁଣେ;
ଅମ୍ବିକା-ଯୋଗ୍ୟ ନୁହଇ ବରଣେ । ୧୦ ।
ଅନୁସନ୍ଧାନ        କର ଈଶାନ;
ଅନ୍ତିକେ ପେଷିଲେ ସେ ଶିଷ୍ଟ ଜନ । ୧୧ ।
ଅନ୍ଧକ-ଘାତୀ        ଲେଖି ସମ୍ମତି;
ଅଦ୍ରୀଶଠାରୁ ପେଷିଦେଲେ ପତ୍ରୀ । ୧୨ ।
ଅନ୍ୟୋଽନ୍ୟେ ଶୁଭ        ଜାତକ ସର୍ବ
ଅଷ୍ଟଦ୍ୱିମେଳକ ମେଳେ ଅପୂର୍ବ । ୧୩ ।
ଅଂଶ ମହତ        କୁଳାଦି ଗୋତ୍ର
ଅନୁରୂପ ଗୁଣ ଗ୍ରାମ ସମସ୍ତ । ୧୪ ।
ଅଥ ସୌନ୍ଦର୍ଯ୍ୟ        ଐଶ୍ୱର୍ଯ୍ୟ ଧୈର୍ଯ୍ୟ
ଅଚ୍ଛ ବିବେକତା ଗାମ୍ଭୀର୍ଯ୍ୟ ଶୌର୍ଯ୍ୟ । ୧୫ ।
ଅବ୍ଜସମ୍ଭବ        ଇତ୍ୟାଦି ସ୍ତବ
ଅବିକଳ ସମ କରନ୍ତି ସର୍ବ । ୧୬ ।
ଅଛି ପ୍ରଶସ୍ତେ        ବିବାହକୃତ୍ୟେ
ଅଙ୍ଗନା-ରାଶିକି ଗଣନା ଯେତେ । ୧୭ ।
ଅର୍କ ଗୀଷ୍ପତି,        ଶୁଦ୍ଧତା ଚନ୍ଦ୍ର
ଅନୁସନ୍ଧାନେ କଲେ ବିଶୁଦ୍ଧଥି । ୧୮ ।

---

୧୧ । ଅନୁସନ୍ଧାନ କର...ଈଶାନ—ମହାଦେବଙ୍କ ଅନ୍ତିକକୁ—ନିକଟକୁ । ଶିଷ୍ଟଜନ—ଅଙ୍ଗିର ପ୍ରଭୃତି ଋଷିଙ୍କୁ । ୧୨ । ପତ୍ରୀ—ଚିଠି । ଅନ୍ଧକଘାତୀ—ଶିବ । ୧୩ । ଅଷ୍ଟଦ୍ୱିମେଳକ—ଦଶମେଳକ । ୧୪ । ଗୁଣଗ୍ରାମ—ଗୁଣସମୂହ । ୧୫ । ଐଶ୍ୱର୍ଯ୍ୟ—ପ୍ରଭୁତା । ଅଚ୍ଛବିବେକତା—ନିର୍ମଳ ବିବେଚନା ଶକ୍ତି । ୧୬ । ଅବ୍ଜସମ୍ଭବ—ବ୍ରହ୍ମା । ୧୭ । କନ୍ୟା ରାଶିକି ଯେତେ ପ୍ରକାର ଗଣନା ଉତ୍କୃଷ୍ଟ, ସେ ସମସ୍ତ ଅଛି । ଅର୍କ—ସୂର୍ଯ୍ୟ । ଗୀଷ୍ପତି—ବୃହସ୍ପତି । ବିବାହରେ ସୂର୍ଯ୍ୟ ଓ ବୃହସ୍ପତିଙ୍କର ଶୁଦ୍ଧି ବେଶୀ ପ୍ରୟୋଜନୀୟ । ଦେଶପ୍ରଚଳିତ 'ରବିଶୁଦ୍ଧି, ଗୁରୁଶୁଦ୍ଧି' । ଅଜ—ମେଷ । ଏଠାରେ ବୈଶାଖ । ବୃଷ ମାସ—ଜ୍ୟେଷ୍ଠ ମାସ । ଅର୍ଜୁନ ପକ୍ଷ—ଶୁକ୍ଳପକ୍ଷ । ଅତ୍ୟୁତ—ବିଷ୍ଣୁ । ବାସବ—ଇନ୍ଦ୍ର ।

ଅଜ ଶେଷରେ ବୃଷମାସରେ
ଅର୍ଜୁନପକ୍ଷ ଶୁକ୍ଳ-ପଞ୍ଚମୀରେ । ୧୯ ।
ଅଚ୍ୟୁତ ଦେବ ବ୍ରହ୍ମା ବାସବ
ଅତୁଲ୍ୟ ଏହୁ ତିଥି କଲେ ଠାବ । ୨୦ ।
ଅନୁସମ୍ମତେ ସେ ପୁରୋହିତେ
ଅଇଲେ ଲଗ୍ନ-ନିର୍ଣ୍ଣୟ ନିମନ୍ତେ । ୨୧ ।
ଅଦ୍ରି ଈଶ୍ୱର ବନ୍ଧୁ-ସମ୍ଭାର
ଅର୍ଥେ ଅହର୍ନିଶି ଅତି ସତ୍ୱର । ୨୨ ।
ଅତି ଅପୂର୍ବ, ଅମୂଲ୍ୟ ଦ୍ରବ୍ୟ
ଅଷ୍ଟରତ୍ନ ଶିଷ୍ଟବାସାଦି ସର୍ବ । ୨୩ ।
ଅନିର୍ବଚନ ଅସଂଖ୍ୟ ଧନ
ଅଚଳେନ୍ଦ୍ରା ନାନା ସାମଗ୍ରୀମାନ । ୨୪ ।
ଅପାର ଦୂର ପଠାଇ ଗୃହ
ଅଣାଇ ପରିପୂର୍ଣ୍ଣ କଲେ ପୁର । ୨୫ ।
ଅମୃତ ଦ୍ୟୁତ ଅଦ୍ରି-ଦୁହିତା
ଅର୍ଦ୍ଧମଣ୍ଡନ ଭକ୍ତିରକ୍ଷ ଗତ । ୨୬ ।

---

୨୧ । ଅନୁସମ୍ମତେ—ଅନୁମତି ପାଇ । ୨୪ । ଅନିର୍ବଚନ—ଯାହା ନିରୂପଣ କରି ନ ହେବ । ୨୬ । ଅମୃତଦ୍ୟୁତ—ଚନ୍ଦ୍ର । ଅଦ୍ରି ଦୁହିତା—ପାର୍ବତୀ । ଅର୍ଦ୍ଧଚନ୍ଦ୍ର —ଯାହାଙ୍କର ମଣ୍ଡନ ଓ ପାର୍ବତୀ ଯାହାଙ୍କ ଅର୍ଦ୍ଧାଙ୍ଗରେ ମଣ୍ଡନ । ଗତ—ଶରଣ ।



# ଊନବିଂଶ ଛାନ୍ଦ

## କାଶୀ-ବର୍ଣ୍ଣନା

### ରାଗ—କେଦାରଗୌଡ଼

ଅକାଳ-କାଳ-ହାରକ ଅତ୍ୟନ୍ତ ସୁଖକାରକ—
ଚରିତ ଗୁଣଧାରକ କର ଶ୍ରବଣ
ଅମରାବତୀ-କଟକ— ଟେକ କରିଛି ଅଟକ
ରଚି ଯାହା ଲୁଘଟକ ହେଲା ଦ୍ରୁହଣ ।
ଅମର-ସରିତ-ନିକଟେ
ଅଛି ଯେ ନଗରେ ନାମ କାଶୀ ପ୍ରକଟେ । ୧ ।
ଅଧଃପୁର ମହୀପୁରେ ସୁରାସୁରଯକ୍ଷପୁରେ
ରବି-ଚନ୍ଦ୍ର-ତାରାଲୋକ-ଧ୍ରୁବଲୋକରେ
ଅନୁପମ ଅଟେ ସେହି କଥନ ତହିଁକି ନାହିଁ
ତାକୁ ଉପମା ଘଟାଇ ନିତ୍ୟଲୋକରେ ।
ଅନୁରୂପ ବୁଦ୍ଧିରେ ମୋର
ଅଣୁମାନେ କରୁଛି ବର୍ଣ୍ଣନା ତାହାର । ୨ ।

---

ଊନବିଂଶ ଛାନ୍ଦ

୧ । ଅକାଳକାଳହାରକ—ଅସମୟ ମରଣଦୂରକାରୀ । ଗୁଣଧାରକ—ଗୁଣୀ ଲୋକ, ବିଦ୍ୱାନ୍ । ଅମରାବତୀ କଟକ—ସ୍ୱର୍ଗ ନଗର । ଟେକ—ଗୌରବ । ଅଟକ କରିଛି – ବନ୍ଦ କରିଦେଇଛି । ଏହି କାଶୀପୁର ନିର୍ମିତ ନ ହେବାଯାଏ ଅମରାବତୀର ଗୌରବ ଥିଲା । ତତ୍ପରେ ତାହାକୁ କେହି ପସନ୍ଦ କଲେ ନାହିଁ । ଯାହାକୁ ରଚନା କରି ଦ୍ରୁହଣ—ବ୍ରହ୍ମା, (ଲୁ-ଘଟକ) ପୃଥିବୀର ନିର୍ମାତା ବୋଲି ନାମ ପାଇଲା । ଅମର-ସରିତ—ଗଙ୍ଗା ନିକଟେ ନଗରେ – ଗୋଟିଏ ନଗର ଅଛି । ଯାହାର ନାମ କାଶୀ ବୋଲି ( ପ୍ରକଟ ) ବିଖ୍ୟାତ ହୋଇଛି । ୨ । ଅଧଃପୁର—ପାତାଳ । ମହୀପୁରେ—ମର୍ତ୍ତ୍ୟରେ । ସୁରାସୁରଯକ୍ଷପୁରରେ, ସୂର୍ଯ୍ୟଲୋକ, ଚନ୍ଦ୍ରଲୋକ, ତାରାଲୋକ ଓ ଧ୍ରୁବଲୋକ ପ୍ରଭୃତିରେ ଏ ନଗରୀ ( ଅନୁପମ ) ଅତୁଳନୀୟ ଅଟେ । ( ନିତ୍ୟଲୋକ ) ବୈକୁଣ୍ଠରେ ମଧ୍ୟ ତାହାକୁ ଉପମା ଦେବା ଭଳି କଥା ନାହିଁ । ଅନୁରୂପ ବୁଦ୍ଧିରେ — ବୁଦ୍ଧି ଅନୁସାରେ । ଅଣୁମାନେ—ସଂକ୍ଷେପରେ ( ଟିକିଏ ମାତ୍ର ) ।

ଅମୂଲ୍ୟତର ଅଗାର ତୁଲେ ଗାରିବାକୁ ଗାର
ନାହିଁ ତ ଚଉଦ ଏଗାର ଭୁବନେ କେହି
ଅଛି ଦ୍ୱୋପରସ୍ତି ପୁରୀ— ଠାରୁ ସାତପୁରୀ ପରି—
ଯତ୍ନେ, ତା ପରି ତ୍ରିପୁରୀ କ୍ଷିତରେ କାହିଁ ।
ଅତି ଉଣା ଯେଉଁ ମନ୍ଦିର
ଅମର ଅଧିପର ସେ ଅମୂଲ୍ୟତର । ୩ ।

[ ଶ୍ଳେଷରେ ନବଗ୍ରହ ସାମ୍ୟ ]

ଅର୍କବତ ଦୀପ୍ତତର ପଦ୍ମାନନ୍ଦବୃଦ୍ଧିକର
ଉଦୟ-ଅଚଳ-କର-ରତନ-ବର

---

୩ । ସେହି କାଶୀପୁରୀ ( ଅମୂଲ୍ୟତର ) ଅତି ଅମୁଲ୍ୟ । ଅଗାର ତୁଲ—ଗୃହ ସଙ୍ଗରେ । ଗାର ଗାରିବାକୁ—ସମାନ କରିବାକୁ । ଚଉଦ ଏଗାର ଭୁବନେ—ଚଉଦ ବ୍ରହ୍ମାଣ୍ଡରେ । ଦ୍ୱୋପରସ୍ତି—ଦ୍ୱିତଳ; ସାତ-ପରସ୍ତି—ସପ୍ତତଳ; ତ୍ରିପୁରୀ-ତିନିଲୋକ । ମନ୍ଦିର—ଘର । ଅତି ଉଣା—ଅତି ଛୋଟ । ଅମର-ଅଧିପ—ଇନ୍ଦ୍ର । ଅମୂଲ୍ୟତର—ଅତି ଉତ୍କୃଷ୍ଟ । ୪ । ସେହି କାଶୀ ପୁରୀର କୌଣସି ଗୃହ ( ଅର୍କବତ ) ସୂର୍ଯ୍ୟଙ୍କ ପରି ହୋଇଛି (ଶ୍ଳେଷଦ୍ୱାରା) ତାହା ଦେଖାଉଅଛନ୍ତି । ଦୀପ୍ତତର—ଅତି ଉଜ୍ଜ୍ୱଳ । ସୂର୍ଯ୍ୟ ଓ ଗୃହ ପକ୍ଷେ ସମାନ । ପଦ୍ମାନନ୍ଦବୃଦ୍ଧିକର—( ସୂର୍ଯ୍ୟପକ୍ଷେ ) ପଦ୍ମଗଣର ଆନନ୍ଦବର୍ଦ୍ଧକ ( ଗୃହପକ୍ଷେ ) ପଦ୍ମା—ଲକ୍ଷ୍ମୀ ଓ ଆନନ୍ଦର ବର୍ଦ୍ଧକ । ( ଶୁଭଯୋଗରେ ନିର୍ମିତ ଗୃହ ଲକ୍ଷ୍ମୀ ତଥା ଆନନ୍ଦ ବୃଦ୍ଧି କରିଥାଏ ) ଉଦୟ ଅଚଳକର ରତନବର ( ସୂର୍ଯ୍ୟପକ୍ଷେ ) ଉଦୟ ପର୍ବତରେ ଯାହାଙ୍କର କିରଣରୂପ ଶ୍ରେଷ୍ଠ ରତ୍ନମାନେ ଦେଖାଯାନ୍ତି ( ସୂର୍ଯ୍ୟକିରଣକୁ ନାନା ରଙ୍ଗ ବିଶିଷ୍ଟ ରତ୍ନ ସଙ୍ଗେ ତୁଳନା କରିଯାଇଅଛି ) ଗୃହପକ୍ଷେ (ଉଦୟ) ଉନ୍ନତିକୁ (ଅଚଳ) ସ୍ଥିର କରନ୍ତି, ଯେଉଁ ଶ୍ରେଷ୍ଠ ରତ୍ନମାନ ସେମାନେ ଯେଉଁଠାରେ ଅଛନ୍ତି । ଗୃହସବୁ ନାନା ଉନ୍ନତିଦାୟକ ଶ୍ରେଷ୍ଠ ରତ୍ନମାନଙ୍କରେ ଖଚିତ । ଅମୃତ-ଆଧାର ସମ—ଚନ୍ଦ୍ରପରି । କେଉଁ ( ସଦନ ) ଗୃହ ( ସୁଷମ ) ସୁନ୍ଦର । ସୁଧାମୟ—ଚନ୍ଦ୍ର ପକ୍ଷରେ ଅମୃତମୟ, ଗୃହ ପକ୍ଷରେ-ଚୂର୍ଣ୍ଣଲିପ୍ତ । ତାରିବୃନ୍ଦ ଆନନ୍ଦ-କର—ଚନ୍ଦ୍ର ପକ୍ଷରେ ତାରାମାନଙ୍କର ଆନନ୍ଦଦାୟକ, ଗୃହ ପକ୍ଷରେ--ଲୋଚନ ତାରାର ଆନନ୍ଦଦାୟକ । ଅଙ୍ଗାରକ—ମଙ୍ଗଳ । ଅନନ୍ତା—ପୃଥିବୀ । ମଙ୍ଗଳ ପୃଥିବୀର ପୁତ୍ର ଥିବାରୁ ତାହାର ଆନନ୍ଦଦାୟୀ । ଗୃହପକ୍ଷେ—ଅପରିମିତ ଆନନ୍ଦ ଦାୟକ । ରଙ୍ଗବାସେ ରୁଚିର ( ମଙ୍ଗଳ ପକ୍ଷେ ) ରକ୍ତବର୍ଣ୍ଣ ଲୁଗାରେ ସୁନ୍ଦର

ଅମୃତ ଆଧାର ସମ ଯେଉଁ ସଦନ ସୁଷମ
ସୁଧାମୟ ଭାବ୍‌ବୃନ୍ଦ-ଆନନ୍ଦକର ।
ଅଙ୍ଗାରକ ପରି ଯେ ସ୍ଥିର
ଅନନ୍ତାନନ୍ଦଦ-ରଙ୍ଗବାସେ ରୁଚିର । ୪ ।
ଅତି ସୁନ୍ଦର-ବିଗ୍ରହ ଦୃଷ୍ଟିପାତେ ସୁଖବ୍ୟୂହ
ଦେବାରୁ ଯେବଣ ଗୃହ ବୁଧ ପ୍ରକାର
ଅମରଗୁରୁ ସମାନ ଜାତ କରେ ସୁଖମାନ
ଅପୂର୍ବ ସୁରକ୍ଷଣଦ ଭୃଗୁ-କୁମର ।
ଅର୍କି ମନ୍ଦଗତି ବିହାରେ
ଅଙ୍ଗହୀନ ବିସୁଖଦ ତମଃ ପ୍ରକାରେ । ୫ ।
ଅବଧି ପରି ଯେଉଁ ପୁରୀ ସୁରତରଙ୍ଗିଣୀ ବାରି
ଉଜ୍ଜ୍ୱଳ ରସରେ ମିଳି କରନ୍ତି କେଳି
ଅନନ୍ତ କି ସେ ଅଶେଷ କାନ୍ତିଧର ରାଜହଂସ
ଗତି-ବିହାରରୁ ଶୋଭା ଦିଶୁଛି ବଳି
ଅଚଳ ସେ ଗୃହ-ଶିଳରେ
ଅଚଳା ପରିଏ ଶୋଭା ରସକୁଳରେ । ୬ ।

---

ଗୃହପକ୍ଷେ—( ରଙ୍ଗ ) ଶ୍ୱେତ, ରକ୍ତ, ପୀତାଦି ନାନା ରଙ୍ଗ ଓ ( ବାସ ) ସୁଗନ୍ଧ ପ୍ରଭୃତିରେ ସୁନ୍ଦର ।୫। ଅତି ସୁନ୍ଦର ବିଗ୍ରହ—ସୁନ୍ଦର ଶରୀର । ଦୃଷ୍ଟିପାତେ—ଦେଖିଲା କ୍ଷଣି ( ସୁଖବ୍ୟୂହ ) ସୁଖସମୂହ ଦେବାହେତୁ ଯୋଉଁସି ଗୃହ ବୁଧଙ୍କ ପରି ଅଟେ । ବୁଧଙ୍କ ଶରୀର ସୁନ୍ଦର ଏବଂ ତାଙ୍କ ଦୃଷ୍ଟି ପଡିଲେ ଲୋକ ଶୁଭଫଳ ଲାଭକରିବା ଜ୍ୟୋତିଷପ୍ରସିଦ୍ଧ । ଅମରଗୁରୁ –ବୃହସ୍ପତି । ସମାନ—ପରି । ସୁଖମାନ—ସୁଖସମୂହ । ବୃହସ୍ପତି ସୁଖ ଓ ମାନ ( ସମ୍ମାନ ) ଉଭୟ ଜାତ କରନ୍ତି । ଯେଉଁ ଗୃହ (ଭୃଗୁକୁମର ) ଶୁକ୍ରଙ୍କ ପରି ଅପୂର୍ବ ସୁରକ୍ଷଣଦ । ଅପୂର୍ବସୁର – ଅସୁର । କ୍ଷଣ —ଉତ୍ସବ । ଅପୂର୍ବସୁରକ୍ଷଣଦ – ଅସୁରମାନଙ୍କ ଆନନ୍ଦଦାୟୀ । ଗୃହପକ୍ଷେ – (ଅପୂର୍ବ) ଅଭିନବ (ସୁ-ରକ୍ଷଣଦ) ଉତ୍ତମ ବାସୋପଯୋଗୀ । ଅର୍କି— ଶନି । ବିହାରେ—ଭ୍ରମଣ ବିଷୟରେ । ମନ୍ଦଗତି – ଧୀରଗତି । ଜ୍ୟୋତିଷଶାସ୍ତ୍ରମତେ ଶନି ଛୋଟା ହୋଇ- ଥିବାରୁ ତାଙ୍କର ଗତି ଧୀର । ଶନିଙ୍କର ଏକ ନାମ ‘ମନ୍ଦ’ । ଗୃହପକ୍ଷେ – (ବିହାରେ) କ୍ରୀଡ଼ାକାଳରେ । ଯେଉଁଠାରେ ଲୋକମାନେ(ମନ୍ଦଗତି) ଧୀରେ ଧୀରେ ଚାଲନ୍ତି । ତମଃ ପ୍ରକାରେ—ରାହୁପରି । ରାହୁ ଅଙ୍ଗହୀନ (ବିସୁଖଦ) ଦୁଃଖଦାୟକ ପାପଗ୍ରହ । ଗୃହପକ୍ଷେ

ଅଚ୍ୟୁତ ଚନ୍ଦ୍ରଶେଖର ରଚନା ପରି ସେ ପୁର
ପ୍ରତେ ହୋଏ ଶ୍ରୀନିବାସ ହୋଇଥିବାରୁ
ଅଟେ ସେ ଅବା ତଡିତ ଅଙ୍କଭୃତ କୃଷ୍ଣଗାତ୍ର
ରୁଚିରତର ଘନ ଶୋଭା ପ୍ରକାଶତାରୁ ।
ଅଭିରାମ ବାସରେ ହୋଇ
ଅର୍କ ଅବ୍‌ଜ-ପୁଷ୍ପ ଚନ୍ଦ୍ରାତପ ପରିଇ ।୭।

---

(ଅଙ୍ଗହୀନ) କନ୍ଦର୍ପ; ତଜ୍ଜନିତ ବିଶେଷ ସୁଖ ଦାନକରେ । ୬। ପୁରୀ—ଗୃହ । ଅବ୍ଧି—ସମୁଦ୍ର । ସୁରତରଙ୍ଗିଣୀ—ଗଙ୍ଗା । ଉଜ୍ଜ୍ୱଳ ରସରେ—ନିର୍ମଳ ଜଳ ସହିତ ମିଳି, କେଳି (କ୍ରୀଡ଼ା) କରେ । ସୁରତରଙ୍ଗିଣୀ—କାମକୁତୁକିନୀ, ରତିପ୍ରବୀଣା । (ବାଳୀ) ସ୍ତ୍ରୀମାନେ (ଉଜ୍ଜ୍ୱଳ ରସ) ଶୃଙ୍ଗାର ରସରେ (ମିଳି) ଯୁକ୍ତା ହୋଇ କ୍ରୀଡା କରନ୍ତି । ଅନନ୍ତ—ଆକାଶ । ଆକାଶ ( ଅଶେଷ କାନ୍ତିଧର ) ଅକଥନୀୟ ଶୋଭାକୁ ଧାରଣ କରିଥିବା (ରାଜା) ଚନ୍ଦ୍ର (ହଂସ) ସୂର୍ଯ୍ୟଙ୍କ (ଗତିବିହାରରୁ) ଭ୍ରମଣ ହେତୁ (ବଳି) ଅଧିକଭାବେ ଶୋଭା ଦିଶୁଛି । ଏ ନଗରୀ ଅକଥନୀୟ ଶୋଭାଧାରିଣୀ ରାଜହଂସପରି ଗତିବିଶିଷ୍ଟା ସ୍ତ୍ରୀମାନଙ୍କ ବିହାରଦ୍ୱାରା ଶୋଭା ଦିଶୁଛି । ଅଥବା ରାଜହଂସ ପକ୍ଷୀମାନଙ୍କ ଗତିଦ୍ୱାରା । (ଅଚଳ) ପର୍ବତ ପରି (ରୁଚିରଶିଳ) ଶିଳାରେ ରୁଚିର ବା ସୁନ୍ଦର । ନଗରର ଗୃହମାନ (ଶିଳା) ନାନା ପ୍ରକାର ପ୍ରସ୍ତରରେ ନିର୍ମିତ ହୋଇ (ରୁଚିର) ସୁନ୍ଦର ଦିଶୁଛି । (ଅଚଳା) ପୃଥିବୀ ଯେପରି (ରସକୁଳରେ) ଜଳସମୂହରେ ଶୋଭା ପାଏ, ସେହିପରି (ରସକୁଳ) ଧାତୁନିର୍ମିତ ଗୃହମାନଙ୍କରେ ଶୋଭା ପାଉଛି । ୭। ଅଚ୍ୟୁତ—ବିଷ୍ଣୁ । ଚନ୍ଦ୍ର-ଶେଖର—ମହାଦେବ । ଏ ଦୁହିଙ୍କର (ରଚନା) ନିର୍ମାଣ ପରି ଏ ପୁର (କାଶୀ ନଗର) ହୋଇଛି । (ଅଚ୍ୟୁତ) ଶ୍ରୀନିବାସ ବା ଲକ୍ଷ୍ମୀଙ୍କର ଆଶ୍ରୟସ୍ଥଳ । ଲକ୍ଷ୍ମୀ ବିଷ୍ଣୁଙ୍କ ବକ୍ଷରେ ବାସ କରୁଥିବା କଥା ପୁରାଣପ୍ରସିଦ୍ଧ । (ଚନ୍ଦ୍ରଶେଖର) (ଶ୍ରୀ) ଗୌରୀନିବାସ ଓ ତାଙ୍କର ଅପର ଏକ ନାମ ଶ୍ରୀକଣ୍ଠ । ଏ ପୁର (ଶ୍ରୀ) ଶୋଭା ଓ ସମ୍ପତ୍ତିର (ନିବାସ) ଆଶ୍ରୟସ୍ଥଳ ଅଟେ । ତେଣୁ ଏ ଉଭୟ ଶିବ ଓ ବିଷ୍ଣୁଙ୍କ ସଦୃଶ । ତଡିତପକ୍ଷେ—ଅଙ୍କଭୃତ—ଚନ୍ଦ୍ରଙ୍କର କଳଙ୍କଦ୍ୱାରା ଧୃତ ହୋଇଥିବା; (କୃଷ୍ଣ ଗାତ୍ର) କୃଷ୍ଣବର୍ଣ୍ଣ ଶରୀର; ତଦ୍‌ବତ୍ (ରୁଚିରତର) ସୁନ୍ଦର ଘନ—ମେଘ; ତାହାର ଶୋଭା—ସୌନ୍ଦର୍ଯ୍ୟର ପ୍ରକାଶ ହେତୁ । ଅର୍ଥାତ୍ ଚନ୍ଦ୍ରଙ୍କର କଳଙ୍କ ପରି କୃଷ୍ଣବର୍ଣ୍ଣ ସୁନ୍ଦର ମେଘର ଶୋଭାକୁ ପରିବର୍ଦ୍ଧିତ କରୁଥିବାରୁ । ନଗରପକ୍ଷେ—ଅଙ୍କରେ—କୋଡ଼ରେ (ଶରୀରରେ)ଭୃତ—ଧୃତ;କୃଷ୍ଣ—ଆକର୍ଷଣକାରୀ । ଗାତ୍ରର—ଶରୀରର । ରୁଚିରତର—ଅତିସୁନ୍ଦର ଓ ଘନ ପ୍ରଚୁର । ଶୋଭା—ସୌନ୍ଦର୍ଯ୍ୟର ପ୍ରକାଶ ହେତୁ । ଅର୍କ—ସୂର୍ଯ୍ୟ । ଅବ୍‌ଜପୁଷ୍ପ—ପଦ୍ମ । ଚନ୍ଦ୍ରାତପ—ଚାନ୍ଦୁଆ । ପରିଇ—ପ୍ରାୟ । ଅଭିରାମ—ସୁନ୍ଦର । ବାସରେ (ଅର୍କପକ୍ଷେ)—ଦିବସରେ । (ଅବ୍‌ଜ ପକ୍ଷେ) ବାଃ (ବାର୍) ସରେ—ଜଳମୟ ପୁଷ୍କରିଣୀରେ (ଚନ୍ଦ୍ରାତପ ପକ୍ଷେ)—ବାସରେ—ଲୁଗାଦ୍ୱାରା ।

ଅନ୍ଧକାର ଅଧିକାର　　ନାହିଁ ଯହିଁରେ ପ୍ରାକାର—
ପରିନଦ୍ଧ ମଣିଗଣ-ପରିଚତରେ
ଅନବଚ୍ଛିନ୍ନ ଆଲୋକ　　ଆଲୋକନରୁ ସେ ଲୋକ
ନ ଜାଣନ୍ତି ସିତାସିତ ପକ୍ଷ-ସନ୍ଧିରେ ।
ଅର୍କ-ଉଦୟାସ୍ତ ଅନାଇଁ
ଅହର୍ନିଶି ପରିମାଣ ଜାଣନ୍ତି ଯାଇଁ ।୮।
ଅଧନ ହୋଇ ନିସ୍ପୃହୀ　　କେବଳ ଅଛନ୍ତି ଯହିଁ
ଅଛି ଚଳଦଳ ତହିଁ ଚଞ୍ଚଳ ହୋଇ
ଅକ୍ଷିହୀନ କରି ପକ୍ଷୀ　　ଶିଶୁ ସମୟରେ ଦେଖି
ପକ୍ଷହୀନ ଥିବା ହୋଇ ସେକାଳେ ସେହି ।
ଅଛି ବାଦ ଶାସ୍ତ୍ରବିବାଦେ
ଅଚାତୁର୍ଯ୍ୟ ପରଦୋଷ କଥନ ବାଦେ । ୯ ।

---

୮ । ଯହିଁରେ—ଯେଉଁ କାଶୀ ନଗରୀରେ । ପ୍ରାକାର—ପ୍ରାଚୀର ବା ପାଚିରି । ପରିନଦ୍ଧ—ଖଚିତ । ମଣିଗଣପରିଚିତରେ—ମଣିସମୂହରେ ଯୁକ୍ତ ହୋଇଥିବାରୁ ସେଠାରେ ଅନ୍ଧକାରର ପ୍ରବେଶାଧିକାର ନାହିଁ । ଅନବଚ୍ଛିନ୍ନ—ନିରନ୍ତର । ଆଲୋକ ଆଲୋକନରୁ—ଆଲୋକ ଦେଖୁଥିବାରୁ । (ସିତାସିତ ପକ୍ଷରେ) ଶୁକ୍ଳ ଓ କୃଷ୍ଣପକ୍ଷରେ (ସନ୍ଧି) ସନ୍ଧି ବିଷୟରେ ଜାଣନ୍ତି ନାହିଁ । ସବୁବେଳେ ଆଲୋକ ପାଉଥିବାରୁ ଶୁକ୍ଳ ଓ କୃଷ୍ଣ ପକ୍ଷର ଭେଦ ସେମାନେ ଜାଣନ୍ତି ନାହିଁ । ସୂର୍ଯ୍ୟଙ୍କ ଉଦୟ ଓ ଅସ୍ତରେ ଦିନରାତିର ପରିମାଣ ନିର୍ଣ୍ଣୟ କରନ୍ତି ଅର୍ଥାତ୍ ଆକାଶରେ ସୂର୍ଯ୍ୟଙ୍କୁ ଦେଖିଲେ ଦିନ ଓ ନ ଦେଖିଲେ ରାତି ହେଲା ବୋଲି ଜାଣନ୍ତି, ନଚେତ୍ ସର୍ବଦା ସେ ପୁରୀ ଆଲୋକିତ । ୯ । ଯେଉଁ କାଶୀରେ କେବଳ (ନିସ୍ପୃହ) ବା ବୈରାଗୀ, ଯେଉଁମାନେ (ଧନ) ଇଚ୍ଛା-ବିରହିତ, ସେହିମାନେ ହିଁ (ଅଧନ) ଧନହୀନ ହୋଇ ରହିଅଛନ୍ତି । କେବଳ (ଚଳ-ଦଳ) ଅଶ୍ୱତ୍ଥପତ୍ର ସେଠାରେ (ଚଞ୍ଚଳ) ଅସ୍ଥିର ଅଟେ, ଅର୍ଥାତ୍ ଅପର କୌଣସି ଲୋକ ଚପଳତାଦୋଷଦୁଷ୍ଟ ନୁହନ୍ତି । ସେଠାରେ (ଶିଶୁସମୟରେ) ପିଲାବେଳେ ପକ୍ଷୀମାନେ ହିଁ (ଅକ୍ଷିହୀନ) ଚକ୍ଷୁହୀନରୂପେ ଦେଖାଯାନ୍ତି । ଅନ୍ୟ କେହି ଅନ୍ଧ ହୋଇ ନାହିଁ । ପୁଣି ସେତେବେଳେ ସେହି ପକ୍ଷିଶାବକମାନେ (ପକ୍ଷହୀନ) ଡେଣାଶୂନ୍ୟ ହୋଇଥାନ୍ତି; କିନ୍ତୁ ଅନ୍ୟ କେହି (ପକ୍ଷହୀନ) ସହାୟଶୂନ୍ୟ ହୋଇ ନ ଥାନ୍ତି । (ବାଦ) କଳି ବା ଶତ୍ରୁତା କେବଳ (ଶାସ୍ତ୍ର ବିବାଦ କାଳରେ) ଶାସ୍ତ୍ରଆଲୋଚନା ବେଳେ ଥାଏ; କିନ୍ତୁ ଜମିବାଡି ବା ଟଙ୍କା କଉଡି ଘେନି ବାଦ ନାହିଁ । କେବଳ ପରଦୋଷ କହିବା ବିଷୟରେ ସମସ୍ତଙ୍କର ଅପଟୁତା ଅଛି, ଅନ୍ୟ କୌଣସି ବିଷୟରେ ନାହିଁ । ଏଠାରେ ପର···ବାଦେ ଇତ୍ୟାଦି ପଦରେ 'କଥନ' ଟି ଅଧିକ ପଦ ।

ଅଛନ୍ତି ମୁଣ୍ଡନ ଦଣ୍ଡ ଦୁଇ, ଦଣ୍ଡିମାନେ ଦଣ୍ଡ
ଘେନନ୍ତି ସେହି ସେ ମୁଣ୍ଡନରେ ଘେନନ୍ତି
ଅମ୍ବୁଗର୍ଭରତ ଗଣ୍ଡ ମାର୍ତ୍ତଣ୍ଡ ଶବ୍ଦ ଚଣ୍ଡ—
କର ମାଟିପାଦ ଭଣ୍ଡ ବୋଲି ଜାଣନ୍ତି ।
ଅଙ୍ଗହୀନ ହର-ବଇରୀ
ଅଛନ୍ତି କେବଳ କାଳୀ ହୋଇ ଗଉରୀ । ୧୦ ।
ଅଙ୍ଗନା-ଅଧର ରସ— ପାନେ ନିର୍ଘୃଣ ପୁରୁଷ—
ମାନେ କହନ୍ତି ବିଶେଷ ବିନୟବାଦ
ଅମରଗୁରୁ-ଅର୍ଚ୍ଚନା— ଈଶ-ଅବସର ବିନା
ଅନ୍ୟଥା ବେଳେ ଅବନୀ ନ ଛୁଏଁ ପାଦ ।
ଅଧମ ସେ ଜୀବ ମାରଣେ ।
ଅତୃପ୍ତ ଅଟନ୍ତି ମାତ୍ର ଧର୍ମକରଣେ । ୧୧ ।

---

୧୦ । ସେଠାରେ 'ମୁଣ୍ଡନ' ଓ 'ଦଣ୍ଡ' ଏ ଦୁଇଟି କଥା ଅଛି; କିନ୍ତୁ (ଦଣ୍ଡୀ) ସନ୍ନ୍ୟାସୀ 'ମୁଣ୍ଡନ' ଓ 'ଦଣ୍ଡ' ଯଷ୍ଟିକୁ (ନିଜ ଧର୍ମ ବୋଲି) ଘେନନ୍ତି ବା ଗ୍ରହଣ କରନ୍ତି । ଅପର କେହି ଦଣ୍ଡିତ ହୋଇ ମୁଣ୍ଡିତ ହୁଏ ନାହିଁ । 'ଗଣ୍ଡ' ପଦ ସେଠାରେ (ଅମ୍ବୁଗର୍ଭରେ) ପାଣି ଭିତରେ ଥାଇ ଜଳର ଗଭୀରତା ସୂଚାଏ, ଅନ୍ୟଥା କୌଣସି ଲୋକ ସେଠାରେ (ଗଣ୍ଡ) ବୁଦ୍ଧିହୀନ ନୁହେଁ । ସେହିପରି 'ଚଣ୍ଡକର' କେବଳ (ମାର୍ତ୍ତଣ୍ଡ) ସୂର୍ଯ୍ୟଙ୍କର ପ୍ରତିଶବ୍ଦରୂପେ ବ୍ୟବହୃତ ହୁଏ; କିନ୍ତୁ (ଚଣ୍ଡକର) ଉଗ୍ର କାର୍ଯ୍ୟକାରୀ ଲୋକ ନ ଥିବାରୁ ସେ ଅର୍ଥରେ ତାହା ବ୍ୟବହୃତ ହୁଏ ନାହିଁ । ଗଉରୀ (ପାର୍ବତୀ) କାଳୀ ନାମ ଧାରଣ କରିଅଛନ୍ତି; କିନ୍ତୁ ଅପର କେହି କାଳୀ କୃଷ୍ଣବର୍ଣ୍ଣା ନୁହନ୍ତି । ୧୧ । ସେଠାକାର ପୁରୁଷମାନେ (ଅଙ୍ଗନା) ସ୍ତ୍ରୀର ଅଧରକୁ ପାନ କଲାବେଳେ (ନିର୍ଘୃଣ) ଘୃଣାଶୂନ୍ୟ ହୋଇଥାନ୍ତି; କିନ୍ତୁ ଅନ୍ୟ ବେଳେ (ନିର୍ଘୃଣ) ଦୟାଶୂନ୍ୟ ହୁଅନ୍ତି ନାହିଁ । ସେମାନେ ସେତିକିବେଳେ (ବିନୟବାଦ) ଗୁଡ଼ିକଥା କହନ୍ତି; କିନ୍ତୁ ଅନ୍ୟ ବେଳେ (ବିନୟବାଦ) ନୀତିବିଗର୍ହିତ କଥା କହନ୍ତି ନାହିଁ । ଅମରଗୁରୁ—ଦେବଶ୍ରେଷ୍ଠ । ଶିବଙ୍କର (କାଶୀର ଅଧିଷ୍ଠାତ୍ରୀ ଦେବତା ଶିବ) ପୂଜା ଅବସର ବା ପୂଜାବେଳ ଛଡ଼ା ଅନ୍ୟ ସମୟରେ ସେମାନଙ୍କର ପାଦ ଭୂମି ସ୍ପର୍ଶ କରେ ନାହିଁ, ଅର୍ଥାତ୍ ଅନ୍ୟ ବେଳେ ବାହନ ପ୍ରଭୃତିରେ ଯାତାୟାତ କରନ୍ତି । ଜୀବମାରଣେ—ପ୍ରାଣିହିଂସା କରିବା ବିଷୟରେ ସେମାନେ ଅପାରଗ । ଅନ୍ୟ କାର୍ଯ୍ୟରେ ନୁହନ୍ତି । ସେମାନେ ଧର୍ମ କରିବା ବିଷୟରେ (ଅତୃପ୍ତ) ସନ୍ତୁଷ୍ଟ ନୁହନ୍ତି, ଅନ୍ୟ ସବୁଥିରେ ସନ୍ତୁଷ୍ଟ । ୯ । ୧୧ ପଦମାନଙ୍କରେ ପରିସଂଖ୍ୟା ଅଳଙ୍କାର । ତାହା ଶ୍ଳେଷାନୁପ୍ରାଣିତ ହୋଇଥିବାରୁ ଅତି ଚମତ୍କାରୀ ।

ଅଣୁମାନଙ୍କ ହିଁ ପର୍— ଗୁଣକୁ ଘେନନ୍ତି ପର୍—
ପର୍ବତ ପର୍କାର୍ ସେ ପୁର୍ନର୍
ଅବ୍ଧି-ସଦୃଶରେ ଦୋଷ ଥିଲେ କୁଶ-ଅଗ୍ର-ରସ
ପରି ଧର୍ବା ସହଜ-ରୀତ ତାଙ୍କର୍ ।
ଅହୋରାତ୍ର ପରୋପକାର୍—
ଅର୍ଥେ ତନୁ ତନୁ ହୋଇଅଛି ଯାହାର୍ । ୧୨ ।

[ ବିରୋଧାଭାସ ]

ଅତ୍ୟର୍ଥେ କରି କରଜ ଗୋଜା ଲେଖନ୍ତି ଉରୁଜ
ପରଜା ଅତନୁ ରାଜ ଅନ୍ୟାୟଭରେ
ଅଶନ-ଆଶାରେ ଭୋଗୀ ନିରତେ ବୁଲନ୍ତି ଯୋଗୀ
ବସି ନାନାରସ ଭୁଞ୍ଜୁଛନ୍ତି ନିର୍ଭରେ ।
ଅସିବରେ ପୃଥ୍ୱୀ ମାରନ୍ତି
ଅନୁକୂଳ ଲଗ୍ନ ହେଲେ ଯାଇଁ କରନ୍ତି । ୧୩ ।

---

୧୨ । ଅଣୁମାନଙ୍କହିଁ—ଅତି ଅଳ୍ପ । ପରଗୁଣକୁ—ଅନ୍ୟ ଲୋକର ଦୟା ଦାକ୍ଷିଣ୍ୟାଦି ଗୁଣକୁ (ପର) ବଡ଼ । ପରବତ ପରକାର—ପର୍ବତ ପରି । ଅବ୍ଧି—ସମୁଦ୍ର । କୁଶ—ଅଗ୍ର ରସ—କୁଶ ଅଗ୍ରର ଜଳପରି । ଧରିବା—ମନେ କରିବା । ରୀତ—ସ୍ୱଭାବ । ତନୁ—ଶରୀର । ତନୁ—କ୍ଷୀଣ । ୧୩ । ବିରୋଧ ପକ୍ଷ:— (ଉରୁଜ)—ବୈଶ୍ୟଜାତୀୟ ପ୍ରଜାମାନେ ଅତନୁରାଜ ଅନ୍ୟାୟଭରେ—ରାଜାଙ୍କର ପ୍ରବଳ ଅନ୍ୟାୟ ହେତୁ ଅତ୍ୟର୍ଥେ) ଅଧିକ ଧନ ଥିଲେ ଯୁଦ୍ଧ (କରଜ କରି) ଧାର କରି (ଗୋଜା) ଦଲିଲ ଲେଖନ୍ତି । ବୈଶ୍ୟଜାତିର ଲୋକ ଧନ ଥାଇ କରଜ କରିବା ଅସମ୍ଭବ । ଏଣୁ ବିରୋଧ । ପରିହାର—(ଅତନୁରାଜ ଅନ୍ୟାୟଭରେ)—କନ୍ଦର୍ପ ରାଜାଙ୍କର ଅନ୍ୟାୟ ହେତୁ, ପ୍ରଜାମାନେ (କରଜ) ନଖ (ଅତ୍ୟର୍ଥେ) ଅତିଶୟ (ଗୋଜା) ମୁନିଆ କରି (ଉରୁଜରେ) ନାୟିକାମାନଙ୍କର ସ୍ତନରେ ଲେଖନ୍ତି । ଓକାରକୁ ଉକାରରୂପେ ଉଚ୍ଚାରଣ କରିବା ରୀତି କେନ୍ଦୁଝରରେ ଆଜକାଲି ମଧ୍ୟ ପ୍ରଚଳିତ । ତେଣୁ କବି ଓରୋଜ ସ୍ଥାନରେ ଶ୍ଳେଷାନୁରୋଧରେ ଉରୁଜ ବ୍ୟବହାର କରିଅଛନ୍ତି । ଅଶନ···ନିର୍ଭରେ—ବିରୋଧ—ଭୋଗୀ ବିଳାସୀ ଲୋକ ଅଶନ—ଖାଇବା ଆଶାରେ ସର୍ବଦା ବୁଲନ୍ତି । ଯୋଗୀମାନେ ବସି ରହି ନାନାରସ—ମଧୁରାଦି ଷଡ଼-ରସ ଭୁଞ୍ଜୁଛନ୍ତି । ବିଳାସୀର ଖାଇବା ପାଇଁ ବୁଲିବା ଓ ଯୋଗୀର ବସି ଖାଇବା ଅସମ୍ଭବ । ପରିହାର—ଭୋଗୀ—ସର୍ପମାନେ । ଯୋଗୀ—ସଂଯୋଗୀ ପୁରୁଷମାନେ, ସ୍ତ୍ରୀ ସହ ବାସ କରୁଥିବା ବ୍ୟକ୍ତି । ଅସିବରେ·····ମାରନ୍ତି—ବିରୋଧପକ୍ଷେ—ଅଶିବରେ—ଅମଙ୍ଗଳରେ ପୃଥ୍ୱୀକୁ ମାରନ୍ତି । ପରିହାର—ଅଶିବରେ—ଶିବଭକ୍ତ ନୋହୁଥିବା

[ ଶ୍ଳେଷରେ ଦଶାବତାର ସାମ୍ୟ ]

**ଅଣ୍ଡଜ-ରୂପ ଏ ପୁର ସିନ୍ଧୁରେ ସୁନ୍ଦରତର**
**ଅନିମିଷ କରଣ ଯା କରିଛି ଖ୍ୟାତ**
**ଅଟେ ବହୁପଦ ଯେଣୁ କୂର୍ମ-ଅବତାର ତେଣୁ**
**ଦ୍ୱିଜ-ଗୃହୀତ-ଭୂଭାଗ ବରାହବତ ।**
**ଅଛି ବଢ଼ି କରଜଶିଖୀ**
**ଅରି-ଦର-କରି ଯେଣୁ ନୃସିଂହ ସରି । ୧୪ ।**
**ଅପୂର୍ବ ଖର୍ବ ଖଣ୍ଡିତ ବଳିରାଜା ଦାନରତ**
**ବାମନ ଏ ପରଶୁ କରରେ ଶୋଭନ**

---

ବ୍ୟକ୍ତିଙ୍କୁ ପୃଥ୍ୱୀରେ ନାଶ କରନ୍ତି । ଅଥବା ଅସିବରେ—ଖଡ୍‌ଗଦ୍ୱାରା ପୃଥ୍ୱୀ ମାରନ୍ତି ।

୧୪ । ଏ ପଦ୍ୟ ଓ ପରବର୍ତ୍ତୀ ପଦ୍ୟରେ ନଗରକୁ ଦଶାବତାର ସଙ୍ଗେ ସମାନବିଶେଷଣଦ୍ୱାରା ସମାନ କରାଯାଇଅଛି । ନଗର (ଅଣ୍ଡଜରୂପ) ମତ୍ସ୍ୟପରି ମତ୍ସ୍ୟ—(ସିନ୍ଧୁ) ସମୁଦ୍ରରେ ସୁନ୍ଦରତର ଓ (ଅନିମିଷ କରଣ) ପଲକରହିତ ଚକ୍ଷୁ ବୋଲି ପ୍ରସିଦ୍ଧ ଅଛି । ଏ ନଗର (ସିନ୍ଧୁର) ହସ୍ତୀଦ୍ୱାରା ଅତି ସୁନ୍ଦର ଓ (ଅନିମେଷ କରଣ) ଯେ ଏହାର ଶୋଭା ଦେଖେ, ସେ ଆଖିପତା ପକାଇ ପାରେ ନାହିଁ ଅର୍ଥାତ୍ ନିର୍ନିମେଷ ନୟନରେ ରହିଁଥାଏ । (ବହୁପଦ) କୂର୍ମପକ୍ଷେ ବହୁତ ପଦଯୁକ୍ତ ଓ ନଗର ପକ୍ଷେ ବହୁତ ସ୍ଥାନବିଶିଷ୍ଟ । (ଦ୍ୱିଜଗୃହୀତଭୂଭାଗ) ବରାହ ଅବତାରରେ ଭଗବାନ୍ (ଦ୍ୱିଜ) ଦନ୍ତରେ ପୃଥିବୀ ଧାରଣ କରିଥିଲେ । (ନଗର ପକ୍ଷରେ) ଯହିଁରେ (ଦ୍ୱିଜ) ବ୍ରାହ୍ମଣମାନେ ବହୁତ ଜମି ଦାନରୂପେ ଗ୍ରହଣ କରିଛନ୍ତି । କରଜଶିଖୀ—(ନୃସିଂହ ଅବତାର ପକ୍ଷେ) ନଖ ଶୋଭା ଓ ନଗର ପକ୍ଷେ (କରଜ) ଖଜଣାରୁ ଜାତ ସମ୍ପତ୍ତି । ଅରିଦରକର—ନୃସିଂହ ପକ୍ଷେ—ଚକ୍ର ଓ ଶଙ୍ଖ କରରେ (ହସ୍ତରେ) ଯାହାଙ୍କର । (ନଗର ପକ୍ଷେ) ଅରି—ଶତ୍ରୁର । ଦରକର—ଭୟ-ଉତ୍ପାଦକ ।

୧୫ । (ବାମନ) ଅପୂର୍ବ ବା ବିଚିତ୍ର ରକମ (ଖର୍ବ) ଖର୍ବାକାର । (ନଗର) ଅପୂର୍ଣ୍ଣ ଖର୍ବ ବା ଅଖର୍ବ ଅର୍ଥାତ୍ ଖର୍ବକାୟ ନୁହେଁ । ଅତି ଉନ୍ନତ ବା ସମୃଦ୍ଧ । [ବଳିରାଜା ଦାନରତ ବାମନାବତାରରେ ପ୍ରଭୁ ବଳିରାଜାଠାରୁ ଦାନ ନେବାରେ ଆସକ୍ତ ଥିଲେ । (ନଗର) ଏଠାକାର ବଳବାନ୍ ନରପତି ସର୍ବଦା ଦାନରେ ରତ ଥାନ୍ତି । (ପରଶୁରାମ) ପରଶୁ—ଅସ୍ତ୍ରବିଶେଷ । କରରେ—ହସ୍ତରେ । ଶୋଭନ—ସୁନ୍ଦର । (ନଗର) ଏଠାରେ (ପର) ଉତ୍କୃଷ୍ଟ । ଶୁକରରେ—ଶୁଭ୍ରଦ୍ୱାରା । (ରାମ) (ସଲକ୍ଷଣ) ଲକ୍ଷ୍ମଣଙ୍କ ସହ ବର୍ତ୍ତମାନା ସୀତାଙ୍କର (ରାମ) ମନୋହର, ଲକ୍ଷ୍ମଣ ଓ ସୀତାଙ୍କର ମନୋହର । (ନଗର) ସଲକ୍ଷଣ (ଲକ୍ଷ୍ମଣା) ମାଈହଂସଦ୍ୱାରା ଯୁକ୍ତ; ଅତଏବ (ସିତ) ଧବଳ (ଆରାମ) ଉପବନ, ବଗିଚାର ପୁଷ୍କରିଣୀମାନଙ୍କରେ ବହୁତ ହଂସୀ ସନ୍ତରଣ କରୁ-

ଅଟଇ ପରଶୁରାମ   ସଲକ୍ଷଣ-ସୀତା-ରାମ
ବାଳି-ଵରସ କାରଣେଁ ରଘୁନନ୍ଦନ ।
ଅଚ୍ଛନୀଳାଂଶୁକେ ସୁନ୍ଦର
ଅପ୍ରମିତ ବଳ ଯେଣୁ ଲଙ୍ଗଳଧର । ୧୫ ।
ଅକଳିତ ଯଜ୍ଞବଧି   ଶ୍ରୁତିରହିତ ଯା ସିଦ୍ଧି
ସାନୁକମ୍ପ ନରେ ଏଣୁ ବୁଦ୍ଧାବତାର
ଅଚ୍ଛ ଚନ୍ଦ୍ରହାସ କରେ   ଦିବ୍ୟରାମାଶ୍ୱଗତରେ
ଶୋଭି କରୁଣା ଲୋକରେ ଏ କଲ୍‌କିବୀର ।
ଅର୍ଥ ଶ୍ଳେଷ-ଖଣ୍ଡରେ ହୋଇ
ଅବତାରଦଶଙ୍କୁ ଏ ପୁର ବୁଝାଇ । ୧୬ ।

---

ଥିବାରୁ ତାହା ଧବଳବର୍ଣ୍ଣ ହୋଇଛି । ବାଳିବରସକାରଣୁ (ରାମ) ବାଳିନାମକ ବାନରର(ବରଷ) ଦୁଃଖର କାରଣ ହୋଇଥିବାରୁ । ନଗର(ବାଳୀ)ସ୍ତ୍ରୀମାନଙ୍କ (ବରଷ) ବିଶେଷ ଅନୁରାଗର କାରଣ ହୋଇଥିବାରୁ । (ବଳରାମ) ଅଚ୍ଛ—ନିର୍ମଳ । ନୀଳାଂଶୁକ—ନୀଳ ବସନ । ବଳରାମ, ନୀଳ ନିର୍ମଳ ବସ୍ତ୍ରପରିଧାନ କରିଥାନ୍ତି ଓ (ଅପ୍ରମିତ) ଅକଳନ୍ତ ବଳରେ ଯୁକ୍ତ । ନଗର ଉଜ୍ଜ୍ୱଳ ନୀଳବର୍ଣ୍ଣ ମଣିମାନଙ୍କ ତେଜରେ ସୁନ୍ଦର ଓ ( ଅପ୍ରମିତବଳ ) ଅସଂଖ୍ୟ ସୈନ୍ୟରେ ଯୁକ୍ତ । ୧୬ । ବୁଦ୍ଧାବତାର—( ବୁଦ୍ଧପକ୍ଷେ ) ଅକଳିତ—ଅସ୍ୱୀକୃତ । ବୁଦ୍ଧ ଯଜ୍ଞ-ବାଧିକୁ ସ୍ୱୀକାର କରନ୍ତି ନାହିଁ । ଯାହାଙ୍କର ସିଦ୍ଧି ବା କାର୍ଯ୍ୟର ଫଳ (ଶ୍ରୁତିରହିତ) ବେଦରହିତ । ନରେ—ନରମାନଙ୍କଠାରେ । ସାନୁକମ୍ପ—ଦୟାଳୁ । (ନଗର) ଅସଂଖ୍ୟ ଯଜ୍ଞ ଅନୁଷ୍ଠାନଦ୍ୱାରା ଯେ ଜଗତରେ ଖ୍ୟାତ । ସିଦ୍ଧି—ଖ୍ୟାତି । ଶ୍ରୁତିରହିତ—ଯାହା ପୂର୍ବରୁ କର୍ଣ୍ଣରେ ଶୁଣାଯାଇ ନାହିଁ । ଯେଉଁଠାରେ (ନରେ) ଲୋକମାନେ (ସାନୁକମ୍ପ) ଦୟାଳୁ । (କଳ୍କି) ଅଚ୍ଛ—ନିର୍ମଳ । ଚନ୍ଦ୍ରହାସ—ଖଡ୍ଗ । କରେ—ହସ୍ତରେ ।(ଦିବ୍ୟରାମ)ଦିବ୍ୟସୁନ୍ଦର। ଅଶ୍ୱଗତରେ—ଅଶ୍ୱାରୋହଣ କରି ଗତି କରିବାରେ ଓ ( କରୁଣାଲୋକରେ) କରୁଣାପୂର୍ଣ୍ଣ ଦୃଷ୍ଟିପାତରେ ଶୋଭି ସୁନ୍ଦର । (ନଗର) ଦିବ୍ୟରାମା—ମନୋହାରିଣୀ ରମଣୀ । ଅଚ୍ଛଚନ୍ଦ୍ରହାସକରେ—ନିର୍ମଳଚନ୍ଦ୍ରସଦୃଶ ନିଜର ହାସର କିରଣରେ । (ସ୍ୱଗତରେ) ନିଜ ଗମନଦ୍ୱାରା । (ଲୋକରେ) ପ୍ରଣୟୀ-ଜନଠାରେ କରୁଣା କରି ଶୋଭି ପାନ୍ତି । ଯେଉଁଠାକାର ସ୍ତ୍ରୀମାନଙ୍କର ହାସ ଚନ୍ଦ୍ରଠାରୁ ଉଜ୍ଜ୍ୱଳ ଓ ସେମାନେ ଅନ୍ଧାର ମାର୍ଗରେ ସୁଦ୍ଧା ନିଜର ସେହି ହାସର କିରଣରେ ଗମନ କରି ନିଜର ପ୍ରଣୟୀମାନଙ୍କୁ ଦୟା କରିଥାନ୍ତି ।

[ ଶ୍ଳେଷରେ ଦିକ୍‌ପାଳସାମ୍ୟ ]

**ଅନେକ ନେକେ ରୁଚିର ତେଜୋବନ୍ତ ଦଣ୍ଡଧର**
**ପୁଣ୍ୟଜନାଶ୍ରୟ ଖ୍ୟାତ ଯେ ଭୁବନରେ**
**ଅନାରତେ ସୁମନାମୋଦ ପ୍ରଚାରକ ଧନଦ**
**ରାଜରାଜ ଯାର ପଦ ରଜତ-ଧରେ**
**ଅଚଳେ ବିଭୂତିମଣ୍ଡନ**
**ଅଷ୍ଟଦିଗପତି ପର ଏହୁ ରାଜନ । ୧୭ ।**

[ ବିରୋଧାଭାସ ]

**ଅନୁରାଗୀ ରସାକର ରାଜା ହସେ ଶୋଭାଧର**
**ତାଙ୍କୁ ମଧୁ ପିଇ ବର ଦ୍ୱିଜେ ଖଣ୍ଡନ୍ତ**

---

୧୭ । କାଶୀନଗର ରାଜାଙ୍କର ବର୍ଣ୍ଣନା, ଦିକ୍‌ପାଳସାମ୍ୟ ।

ରାଜାପକ୍ଷେ :—ଅନେକ (ନେକେ) ବସ୍ତ୍ର ବା ରଥରେ (ରୁଚିର) ସୁନ୍ଦର । ତେଜୋବନ୍ତ—ତେଜସ୍ୱୀ । ଦଣ୍ଡଧର—ଦୁଷ୍ଟ ପ୍ରଜାମାନଙ୍କର ଦଣ୍ଡବିଧାତା । ପୁଣ୍ୟ-ଜନାଶ୍ରୟ—ସାଧୁଜନଙ୍କ ଶରଣ । ଯେ ଭୁବନରେ ଖ୍ୟାତ— ପୃଥିବୀରେ ବିଖ୍ୟାତ । ଅନାରତେ—ସର୍ବଦା । ସୁମନାମୋଦ-ପ୍ରଚାରକ—ଦେବତା ଓ ପଣ୍ଡିତମାନଙ୍କର ଆନନ୍ଦଦାୟୀ । ଧନଦ—ଧନଦାନକାରୀ । ଯାହାଙ୍କର ରାଜରାଜ ବୋଲି (ପଦ) ଉପାଧି ବା ପଦବୀ । ଯେ,(ରଜତ) ରୁପା (ଧରେ) ଧାରଣ କରେ । (ଅଚଳେ) ସ୍ଥିରଭାବରେ । ବିଭୂତିମଣ୍ଡନ—ସମ୍ପତ୍ତିଶାଳୀ । ଲକ୍ଷ୍ମୀ ଚଞ୍ଚଳା ହେଲେ ମଧ୍ୟ ତାଙ୍କ ନିକଟରେ ସ୍ଥିର । ଅଷ୍ଟଦିକ୍‌ପତି ପକ୍ଷେ—(ଅନେକ ନେକେ ରୁଚିର)—ସହସ୍ରାକ୍ଷ ବା ଇନ୍ଦ୍ର—ପୂର୍ବଦିକ୍‌ପତି । ତେଜୋବନ୍ତ—ଅଗ୍ନି , ଦକ୍ଷିଣପୂର୍ବଦିକ୍‌ପତି । ( ଦଣ୍ଡଧର ) ଦକ୍ଷିଣଦିଗଧିପତି । ପୁଣ୍ୟଜନାଶ୍ରୟ—ଅସୁରମାନଙ୍କର ଆଶ୍ରୟୀ , ନୈଋତ ବା ଦକ୍ଷିଣପଶ୍ଚିମ ଦିକ୍‌ପତି । ଯେ (ଭୁବନରେ) ଜଳରେ ଖ୍ୟାତ—ବରୁଣ, ପଶ୍ଚିମାଧିପତି । (ଅନାରତେ) ସର୍ବଦା (ସୁମନାମୋଦ) ପୁଷ୍ପାମୋଦ (ପ୍ରଚାରକ) ପ୍ରଚାରକାରୀ—ଗନ୍ଧ-ବହ, ବାୟୁ ବା ଉତ୍ତରପଶ୍ଚିମଦିକ୍‌ପତି । (ଧନଦ) କୁବେର ବା ଉତ୍ତର ଦିକ୍‌ପତି । (ଯାର ପଦ ରଜତ ଧରେ ) କୈଳାସରେ ଯାହାଙ୍କର ବାସସ୍ଥାନ ଅର୍ଥାତ୍ ଈଶାନ, ମହାଦେବ ବା ଉତ୍ତର-ପୂର୍ବଦିକ୍‌ପତି ଓ ( ଅଚଳେ ବିଭୂତିମଣ୍ଡନ ) ସର୍ବଦା ଭସ୍ମ-ଭୂଷିତ । ୧୮ । ବିରୋଧ ପକ୍ଷ :—ସେ ରାଜ୍ୟରେ ରାଜା ( ଅନୁରାଗୀ) ପ୍ରଜାମାନଙ୍କର ଅନୁରକ୍ତ । ରସାକର—ରସର ଆକର ବା ରସିକ । ହାସ୍ୟରେ ଶୋଭାଧର (ଶୋଭା-ଅଧର ) ଯାହାଙ୍କର ଅଧର ସର୍ବଦା ହାସରେ ଶୋଭିତ । ( ଏଠାରେ ବିରୁପା ସନ୍ଧି

ଅତନୁଶାସ୍ତ୍ର-ପଣ୍ଡିତ ବରେ ଶ୍ରୁତିଅନ୍ତର୍ଗତ
ରସଜ୍ଞା ହୋଇ ଅତ୍ୟନ୍ତ ଚଞ୍ଚଳ ହୋନ୍ତି ।
ଅଚ୍ଛ-ସ୍ନେହ ଲଗାଇ ବରି
ଅପୂର୍ବ କାଳକବରୀ ବାନ୍ଧନ୍ତି ନାରୀ । ୧୮ ।
ଅତି ସୁବୃତ୍ତ ଉରୁଜ କରପୀଡ଼ା ପାଇ ନିଜ
ବାସରୁ ଅନ୍ତର ହୋଇ ଲୁଚେ ପାଣିରେ ।

---

ଶ୍ଳେଷାନୁରୋଧରେ କୃତ ) ତାକୁ ( ଦ୍ୱିଜେ ) ବ୍ରାହ୍ମଣମାନେ (ମଧୁ) ମଦ୍ୟ (ପିଇ) ପାନ କରି (ଖଣ୍ଡନ୍ତି) ମାରନ୍ତି । ଅନୁରାଗୀ ରସିକ ରାଜାକୁ ବ୍ରାହ୍ମଣ ମଦ୍ୟ ପାନ କରି ମାରିବା ଅତି ଅସଙ୍ଗତ । ପରିହାର ପକ୍ଷ —(ଅନୁରାଗୀ ରସାକର) ଅନୁରାଗୀ ରସିକମାନେ (ରାଜା) ଚନ୍ଦ୍ର ବା ଚନ୍ଦ୍ରପରି ନିର୍ମଳ ହାସରେ (ଶୋଣ୍ଡଧର ବା ଶୋଣ +ଅଧର ) ସୁନ୍ଦର ଅଧରକୁ ( ମଧୁ ) ଅଧର ମଧୁ ପିଇ ( ଦ୍ୱିଜେ ) ଦନ୍ତଦ୍ୱାରା (ଖଣ୍ଡନ୍ତି) ଖଣ୍ଡିତ କରନ୍ତି । ରାଜା ମୃଗାଙ୍କେ ଛନ୍ଦିସ୍ୱେ ନୃପେ—ଇତ୍ୟମରଃ— ଅତନୁ·········ହୋନ୍ତି । ବିରୋଧ ପକ୍ଷ—ଅତନୁ—ତନୁ ନୁହେ ବା ଅସଂଖ୍ୟ । ଅତନୁ ଶାସ୍ତ୍ର ପଣ୍ଡିତବରେ—ଅସଂଖ୍ୟ ଶାସ୍ତ୍ରରେ ପଣ୍ଡିତବରମାନେ (ଶ୍ରୁତି ଅନ୍ତର୍ଗତ ରସଜ୍ଞା) ବେଦ ମଧ୍ୟରେ ଥିବା (ରସ) ତତ୍ତ୍ୱକୁ ଜାଣି ( ଅତ୍ୟନ୍ତ ଚଞ୍ଚଳ ହୋନ୍ତି ) ଅତ୍ୟଧିକ ଚଞ୍ଚଳ ହୁଅନ୍ତି । ବେଦାନୁଶୀଳନରେ ବୁଦ୍ଧି ସ୍ଥିର ହେବା ପରିବର୍ତ୍ତେ ଚଞ୍ଚଳ ହେବା ବିରୋଧ । ପରିହାର ପକ୍ଷ—ଅତନୁଶାସ୍ତ୍ରପଣ୍ଡିତବରେ—କାମ-ଶାସ୍ତ୍ରରେ ଅଭିଜ୍ଞ ବ୍ୟକ୍ତିମାନେ । (ଶ୍ରୁତି ଅନ୍ତର୍ଗତ ରସଜ୍ଞା ହୋଇ) (ନାୟିକା-ମାନଙ୍କର ) କାନମଧ୍ୟରେ ଜିହ୍ୱା ପ୍ରବେଶ କରାଇ (ଚଞ୍ଚଳ) ଅଧୀର ହୁଅନ୍ତି । ଅଚ୍ଛସ୍ନେହ······ନାରୀ – ବିରୋଧପକ୍ଷ ( ଅଚ୍ଛସ୍ନେହ ) ବିଶୁଦ୍ଧ—ଚିକ୍କଣ ଦ୍ରବ୍ୟ ( ତୈଳାଦି ) ଲଗାଇ କରି ନାରୀମାନେ ( ଅପୂର୍ବ କାଳ ) ଅକାଳ ବା କୃଷ୍ଣବର୍ଣ୍ଣ ନୋହିଥିବା ( କବରୀ ) ଜୁଡ଼ା ବାନ୍ଧନ୍ତି । ଏଠାରେ କବରୀ କୃଷ୍ଣବର୍ଣ୍ଣ ନୋହିବାରୁ ଅସଙ୍ଗତ ପ୍ରକାଶ ହେଲା । ପରିହାର ପକ୍ଷେ—( ଅଚ୍ଛସ୍ନେହ ) ଉତ୍ତମ ସ୍ନେହ ବା ପ୍ରୀତି ଲଗାଇ ( ଅପୂର୍ବ ) ଅଭିନବ ଭାବରେ ( କାଳକ ) ଚିରକାଳପାଇଁ ( ବରି ) ବରଣ କରି ନାୟକମାନଙ୍କୁ ( ବାନ୍ଧନ୍ତି ) ବାନ୍ଧିରଖନ୍ତି । ୧୮ । ବିରୋଧପକ୍ଷ—( ଅତିସୁବୃତ୍ତ ) ଅତି ସତ୍‌ସ୍ୱଭାବ ( ଉରୁଜ ) ବୈଶ୍ୟ ( କରପୀଡା ପାଇ ) ରାଜସ୍ୱ ପୀଡ଼ାରେ ( ନିଜବାସରୁ ) ନିଜଘରୁ ( ଅନ୍ତର ହୋଇ ) ବାହାରି ( ପାଣି ) ଜଳରେ ଲୁଚେ । ପରିହାର ପକ୍ଷ—( ଅତି ସୁବୃତ୍ତ ) ବର୍ତ୍ତୁଳ ( ଉରୁଜ ) ସ୍ତନ ( କରପୀଡା ) ହସ୍ତମର୍ଦ୍ଦନଜନ୍ୟ କଷ୍ଟ ଭୋଗ କରି ( ବାସରୁ ) ଲୁଗାରୁ ବାହାରି ( ପାଣି ) ହସ୍ତମଧ୍ୟରେ ଲୁଚେ ।

ଅତ୍ରପତ୍ର ଯେ ନିତମ୍ବ ତତ୍ର ତାକୁ ଅବଲମ୍ବ
ଅତନୁ ଯୁଦ୍ଧ କରୁଛନ୍ତି ସୁରମଣିରେ ।
ଅଣ୍ଟାରେ ମୁଖର ରସନା
ଅବଶ୍ୟ ଗଞ୍ଜିଲେ ବାମା ହୋଏ ପ୍ରସନ୍ନା । ୧୯ ।
ଅଚ୍ଛତର ମରକତ— ପୁର ବେଢ଼ି ପାଶେ ସ୍ଥିତ
ହୋଇଛି ହେମ ରଜତ ବେନି ମନ୍ଦିର
ଅନ୍ୟୋଽନ୍ୟରେ ପ୍ରତିବିମ୍ବ ବହୁବାରୁ ସେ ଆତମ୍ବ
ଭଙ୍ଗି ଦେଉଅଛି ଦମ୍ଭ ଦିଶି ସୁନ୍ଦର ।
ଅର୍ଦ୍ଧନାରୀଶ୍ୱର-ସଦୃଶ
ଅଧ୍ୟାହାର ହୋଏ ମଧ୍ୟ ମର୍କତ-ବାସ । ୨୦ ।

---

ଅତ୍ରପତ୍ର···ସୁରମଣିରେ—ବିରୋଧପକ୍ଷ—ଅତ୍ରପତ୍ର—ଶତ୍ରୁପତ୍ର (ଅତନୁ) ଶରୀରହୀନ ବ୍ୟକ୍ତି (ସୁରମଣିରେ) ବୀରଶ୍ରେଷ୍ଠ ସହିତ ଯୁଦ୍ଧ କରୁଛି ଶରୀରହୀନ ବ୍ୟକ୍ତିର ଯୁଦ୍ଧ କରିବା ଅସମ୍ଭବ । ପରିହାର ପକ୍ଷ—ଅତ୍ରପତ୍ର—ଚନ୍ଦପତ୍ର । ଅତନୁଯୁଦ୍ଧ—କାମଯୁଦ୍ଧ । ସୁରମଣିରେ—ଉତ୍ତମ ସ୍ତ୍ରୀସହିତରେ । ଅଣ୍ଟାରେ···ରସନା—ବିରୋଧପକ୍ଷ - ଅଣ୍ଟାରେ (ମୁଖର) ମୁହଁର (ରସନା) ଜିହ୍ୱା ଅବସ୍ଥିତ, ବିରୁଦ୍ଧ । ପରିହାର ପକ୍ଷ— ଅଣ୍ଟାରେ (ମୁଖର) ଶବ୍ଦାୟମାନ (ରସନା) କ୍ଷୁଦ୍ର ଘାଗୁଡିମାଳ ଅଛି । ଅବଶ୍ୟ··· ପ୍ରସନ୍ନା—ବିରୋଧପକ୍ଷ—(ଗଞ୍ଜିଲେ) ପୀଡ଼ାଦେଲେ (ବାମା) ପ୍ରତିକୂଳା ବା ମାନିନୀ (ପ୍ରସନ୍ନା) ଅବଶ୍ୟ ଅନୁକୂଳା ହୁଏ , ଏହା ଅସଙ୍ଗତ । ପରିହାର—(କାମପ୍ରବୃତ୍ତିବଶ) ସ୍ତନାଦି ମର୍ଦ୍ଦନରେ ପୀଡାଦେଲେ ମାନିନୀର ମାନ ତୁଟିଯାଏ । ୨୦ । ଅତିସ୍ୱଚ୍ଛ ମର୍କତମଣିନିର୍ମିତ (ପୁର) ଗୃହର (ବେଢ଼ି ପାଶେ) ଦୁଇପାଖରେ (ହେମ) ସୁନା (ରଜତ) ରୁପା (ନିର୍ମିତ) ତିଆରି ହୋଇଥିବା ଦୁଇଟି (ମନ୍ଦିର) ଗୃହ ଅଛି । ଅନ୍ୟୋଽନ୍ୟରେ—ପରସ୍ପର । ପ୍ରତିବିମ୍ବ—ଛାଇ । ଅର୍ଦ୍ଧନାରୀଶ୍ୱର—ହରଗୌରୀ ମୂର୍ତ୍ତି । ଅଧ୍ୟାହାର—ତର୍କ,ଅନୁମାନ କରିବା ।ଭାବାର୍ଥ—ସେହି ନଗରର ଏକସ୍ଥାନରେ ଗୋଟିଏ ମର୍କତମଣିର ଗୃହ ଅଛି । ସେହି ଗୃହର ଦୁଇ ପାଖରେ ସୁନା ଓ ରୁପାର ଦୁଇଟି ଘର ଅଛି । ସେମାନେ ପରସ୍ପର ତେଜକୁ ବଦଳାଇ ଗ୍ରହଣ କରିଅଛନ୍ତି ଅର୍ଥାତ୍ ମର୍କତ ଗୃହର ଏକପାଖରେ ସୁନାଗୃହର ତେଜ ପଡି ହଳଦୀବର୍ଣ୍ଣ ଓ ଅନ୍ୟ ପାଖରେ ରୁପାଗୃହର ତେଜ ପଡି ଧଳାବର୍ଣ୍ଣ ଦିଶୁଛି; ଅତଏବ ସେ ମର୍କତ-ଗୃହଟି ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ପରି ଦିଶୁଛି । ଗୌରୀ ସ୍ୱର୍ଣ୍ଣବର୍ଣ୍ଣା ଓ ହର ରଜତ-ବର୍ଣ୍ଣଧାରୀ ।

ଅନ୍ଧକାର-ହର-ପର ରଜତ ରଜତ ପୁଣି
ସୂର୍ଯ୍ୟସୁତା ସୁରସରିତ କି ମିଶିଛି ।
ଅପର ସ୍ୱର୍ଣ୍ଣସଦନ ରାଧାମୋହନ-ସଘନ—
ଆଲିଙ୍ଗନ ଅପଘନ ଶୋଭା ଦିଶୁଛି ।
ଅମ୍ବୁଦରେ ସ୍ଥକିତ ହୋଇ
ଅବକଳ କି ବିଜୁଳି ଖେଳ କରଇ । ୨୧ ।
ଅର୍କ ଅଶ୍ୱଗତିତତି ଅଟକାନ୍ତି କେ ଜଗତୀ
ଅଟନ୍ତି ସେ ଅକ୍ଷିମନ-ବନ୍ଦୀ-ସଦନ
ଅଟାଳୀ ଅନେକ ଅତି— ଅନ୍ତଦ୍ୟୁତି ଛନ୍ତି ଘେତି
ଅନାୟାସେ ନିଷେଧନ୍ତି ଅକ୍ଷିପତନ ।
ଅଗ୍ରଭାଗ ଉଦରମାନ
ଅମାନରେ ମାନନ୍ତି ହୋଇ ସମାନ । ୨୨ ।
ଅଛି ଯେହ୍ନ ପୁଣି * ଏକ ଉପର ପୁଣି ମାଣିକ୍ୟ—
ଭୂମି ମଧ୍ୟପୁର ଟେକ ସ୍ଫଟିକ-ସ୍ଥଳୀ

---

୨୧ । ଯେଉଁପରି ରୂପାଗୃହଟି ଏକପାଖରେ ମର୍କତ ତେଜ ଧରିଥିବାରୁ ପାଖେ ନୀଳ, ପାଖେ ଧଳା ହୋଇ ହରିହର ମୂର୍ତ୍ତି ପରି ଦିଶୁଛି ଅଥବା ସୂର୍ଯ୍ୟସୁତା—ଯମୁନା ଓ (ସୁରସରିତ) ଗଙ୍ଗାଙ୍କର ମିଳନ ପରି ଦିଶୁଛି । ଅନ୍ୟ ମଧ୍ୟ (ସ୍ୱର୍ଣ୍ଣସଦନ) ସୁନା ଗୃହଟି ଏକ ପାଖରେ ମର୍କତ ତେଜ ଧରିଥିବାରୁ ପାଖେ ନୀଳ ଓ ଆର ପାଖ ହଳଦୀ ବର୍ଣ୍ଣ ହୋଇ ରାଧା ଓ (ମୋହନ) କୃଷ୍ଣଙ୍କ (ଅପଘନ) ଶରୀରର (ସଘନ) ନିବିଡ଼ ଆଲିଙ୍ଗନ ପରି ଶୋଭା ଧରିଛି । ତାହା ଦେଖି ଅମ୍ବୁଦ ମେଘରେ ବିଜୁଳି (ସ୍ଥକିତ ହୋଇ) ସ୍ଥିର ହୋଇ କ୍ରୀଡ଼ା କରୁଛି କି ବୋଲି (ଅବକଳ) ସ୍ଥିର କରୁଛୁଁ ।
୨୨ । ଅର୍କ ଅଶ୍ୱଗତିତତି—ସୂର୍ଯ୍ୟଙ୍କ ଘୋଡ଼ାମାନଙ୍କର (ଗତି) ଗମନ ବେଗକୁ (କେ ଜଗତୀ) କୌଣସି କୌଣସି ଚନ୍ଦ୍ରଶାଳା ଅଟକାଉଛନ୍ତି । ଅକ୍ଷି...... ସଦନ—ଆଖି ଓ ମନ ବନ୍ଦୀ କରି ରଖିବାର ଗୃହ । ଅତିଅନ୍ତ ଦ୍ୟୁତି—ଅଧିକ ତେଜ । ଅକ୍ଷି ପତନ—ଆଖି ପଡିବା ଅର୍ଥାତ୍ ତାହାକୁ ଚାହିଁବା । ଅତି ତେଜ ହୋଇଥିବାରୁ ତାକୁ ଚାହିଁ ହୁଏ ନାହିଁ । ଅଗ୍ର...... ସମାନ—ଯେ ଗୃହଗୁଡ଼ିକ ଭିତର ଉପର ସବୁ ଯେ ଯାହାକୁ ଚାହିଁ ତିଆରି ହୋଇଥିବାରୁ ସବୁ ଅଂଶ ପରସ୍ପର ବଡ଼ ମନାଉଅଛି ।

* ଯେ ହିପୁର [ଖ]

ଅଧଃପୁର ନୀଳାସ୍ଥଳୀ ସ୍ୱଚ୍ଛତାରୁ ତାଙ୍କ ଝଳ
କାନ୍ତି ପରସ୍ପରେ ମିଳି ନୋହେ ଆକଳ
ଅନୁମାନ ତହିଁ ନ ରହେ
ଅଛନ୍ତି ସେ କେଉଁ ଦ୍ରବ୍ୟ ସନ୍ଦେହ ହୋଏ । ୨୩ ।
ଅମୂଲ୍ୟ କନ୍ଧାଣି ଗୃହେଁ ଉପର ମାଣିକ୍ୟ ମହୀ
ବୋଲନ୍ତି ଏ ତମ୍ବା, ନୋହୁଥିଲେ ପ୍ରବାଳ
ଅମର ସରିତ ବନେ ରକ୍ତପଦ୍ମ ଏ ସଘନେ
ଫୁଟିବାର କବିମାନେ କରନ୍ତି ମୂଳ
ଅବଳାଏ ବୋଲନ୍ତି ଭୁଲ
ଅଛନ୍ତି ଚୂନମହୀରେ ହିଙ୍ଗୁଳ ଗୋଳ । ୨୪ ।
ଅରୁଣ ଅତି ବତ୍ସଳ— ଭାବରେ ସୁତାକୁ କୋଳ
କରିବା ସ୍ଫଟିକ-ସ୍ଥଳ ପରକାଶଇ
ଅବ୍‌ଛକର କି ତମାଳ ଲତାରେ ପଡନ୍ତି ଛଳ—
ନୀଳା ସ୍ଫଟିକ ଶୃଙ୍ଖଳବନ୍ତୁ ଦିଶଇ ।

---

୨୩ । ସେଟି ଗୋଟିଏ ତିନି-ମହଲା ଘର ଅଛି । ସେଥିରେ ଉପର ମହଲା ଚଟାଣ ମାଣିକ୍ୟରେ ତିଆରି, ମଝିମହଲା (ଠେକ) ଜାତିଆ ସ୍ଫଟିକରେ ତିଆରି,ତଳ ମହଲା ଚଟାଣ ନୀଳାରେ ତିଆରି । ଯେ ସମସ୍ତ ଅତି ସ୍ୱଚ୍ଛ ହୋଇଥିବାରୁ (ଝଳ) ଦୀପ୍ତ ହୋଇ ସେମାନଙ୍କର କାନ୍ତି ପରସ୍ପର ସହିତ ମିଶିଯାଇଥିବାରୁ କିଏ କାହିଁରେ ତିଆରି ( ଆକଳ ) ନିର୍ଣ୍ଣୟ କରି ହେଉନାହିଁ ।
୨୪ । କେହି ( ଅମୂଲ୍ୟ ) ପାରଦର୍ଶୀ କନ୍ଧାଣି ଉପର ମହଲାକୁ ଦେଖି ଏ ତମ୍ବା ନୋହିଲେ (ପ୍ରବାଳ)ପୋହଳା ହେବ ବୋଲି କହନ୍ତି । କବିମାନେ କହନ୍ତି (ଅମର-ସରିତ-ବନେ) ଗଙ୍ଗାଜଳରେ ଏ ରକ୍ତପଦ୍ମ (ସଘନେ) ଅତି ଲଗାଲଗି ହୋଇ ଫୁଟିଛି । ଧଳାସ୍ଫଟିକ ମହଲା ଉପରେ ନାଲି ମାଣିକ୍ୟ ମହଲା ଥିବାରୁ ଏ କଳ୍ପନା , ସ୍ତ୍ରୀମାନେ ( ଅଳ୍ପଜ୍ଞାନ ହେତୁ ) ଚୂନ ଦିଆ ଭୂଇଁରେ ହିଙ୍ଗୁଳ ବୋଳା ହୋଇଛି ବୋଲି ବହୁତ ଭାବି ଭାବି କହନ୍ତି ।
୨୫ । ଏହିପରି ଧଳା ସ୍ଫଟିକର ମଝିମହଲା ଉପରେ ରକ୍ତବର୍ଣ୍ଣ ମାଣିକ୍ୟ-ନିର୍ମିତ ଉପର ମହଲାର ତେଜ ଓ ନୀଳାନିର୍ମିତ ତଳମହଲାର ନୀଳତେଜ ପଡିଥିବାରୁ (ଅରୁଣ) ସକାଳ ସୂର୍ଯ୍ୟ (ଅତିବତ୍ସଳଭାବରେ ଅପତ୍ୟସ୍ନେହରେ) ନିଜ ସୁତା ଯମୁନାକୁ କୋଳ କଲା ପରି ଜଣାଯାଉଛି । ନୀଳାନିର୍ମିତ ତଳ ମହଲା ଉପରେ ମଝି ସ୍ଫଟିକ

ଅଛେ ବୁଦ୍ଧି ଯାହାର ଯେତେ
ଅନୁସନ୍ଧାନେ ଉପମା ଦିଏ ସେ ତେତେ । ୨୫ ।
ଅଧ ଶ୍ରୀତଳ୍ପଭବ ଧରି          ଅଧୋର୍ଦ୍ଧ୍ୱ ସ୍ଥିତରୁ କରି
ହେବା ବୋଲି ଏକା ପରି ଅବା ସେ ପୁରୀ
ଅହର୍ନିଶି ଭେଟ ହୋଇ—          ବାରୁ ପୁଣି ଲାଜ ପାଇ
ମିଥେ ତନୁ ପାଲଟାଇଲେ କି ବଗୃରି ।
ଅନ୍ତରତା ଘେନ ଅପାର
ଅଇକ୍ୟ ନୋହିଲ ତଳ ଉପର ପୁର । ୨୬ ।
ଅଛନ୍ତି କେଉଁ ପ୍ରଦେଶେ          ଇଳାଧାର କରି ମିଷେ
ପଥିକ ଭୁଲିବା ରସେ ଦେଖିବା ପାଇଁ
ଅଭଘଟନ ପାବଚ୍ଛ          ଇଳସ୍ଥାନ ତାର ସ୍ୱଚ୍ଛ
ସ୍ଫଟିକ ଏଣୁ ସେ ଗୃହୁଁ ଗୃହୁଁ ଭ୍ରମାଇ

---

ମହଲର ଧଳାଚେକ ପଡଥିବାରୁ ତମାଳ ଉପରେ ଚନ୍ଦ୍ରକିରଣ ପଡିଲା ପରି ଦଶୁଛି । ଯାହାର ଯେଉଁ ପରିମାଣରେ ବୁଦ୍ଧି, ସେ ସେହି ପରିମାଣରେ ଅନୁସନ୍ଧାନ କରି ଉପମା ଦେଉଛି ।୨୫। ସେହି ପୁରୀ—କାଶୀ ନଗରୀ । (ଅଧ) ତଳ (ଊର୍ଦ୍ଧ୍ୱ) ଉପରସ୍ଥିତ ହେତୁ—ଭୂମିତଳକୁ ଓ ଆକାଶ ଆଡ଼କୁ ଗୃହମାନ ଥିବାରୁ ସ୍ୱର୍ଗ ଓ ପାତାଳ ଏ ଦୁହେଁ 'ଏହାସଙ୍ଗେ ଏକାପରି ହେବା'—ଏହା ସଦୃଶ ହୋଇ ପାରିବା ଏହାଭବି ଏହି ନଗରୀ କାଶୀ ସଙ୍ଗେ ଅହର୍ନିଶ ସର୍ବଦା ଭେଟ ହୋଇବାରୁ ଲାଜ ପାଇ (କି ବାସୁରି) କ'ଣ ଭବି । ପରସ୍ପର ତନୁ—ନିଜ ନିଜ ଶରୀରକୁ । ପାଲଟାଇଲେ—ଲେଉଟାଇ ନେଲେ । ପ୍ରଥମ ଦର୍ଶନରେ ସ୍ୱର୍ଗ ଓ ପାତାଳ ଏହି ପୁରୀ ସଙ୍ଗେ ଏକ ହୋଇ ପାରିବେ ବୋଲି ଭବିଥିଲେ; କିନ୍ତୁ ଏ ନଗରୀ ସ୍ୱର୍ଗ ଓ ପାତାଳ ଉଭୟଙ୍କ ସଙ୍ଗେ ସମାନ ଅଛେ । ମାତ୍ର ସ୍ୱର୍ଗ, ପାତାଳ ପରି ନୁହେଁ ବା ପାତାଳ ସ୍ୱର୍ଗ ପରି ନୁହେଁ; ଅତଏବ ଏହା ସଙ୍ଗେ ସମାନ ହୋଇ ନ ପାରି ସେ ଦୁହେଁ ଦୂରକୁ ଗୃଲିଗଲେ । ତେଣୁ ସେମାନଙ୍କ ମଧ୍ୟରେ ଏତେ ଦୂରତା ବିଦ୍ୟମାନ ।୨୬। ଏହି ନଗରବାସିଗଣ କେଉଁ (ପ୍ରଦେଶେ) ଅଂଶରେ (ମିଷେ) ଛଳରେ 'ଥିକ ଭୁଲିବା ରସେ—ବାଟୋଇମାନଙ୍କ ଭୁଲ ଦେଖି ଆନନ୍ଦ ଲାଭକରିବା ପାଇଁ', ଜଳାଧାର—କୃତ୍ରିମ ପୋଖରୀ କରିଅଛନ୍ତି । ଅଭଘଟନ—ଅତିସୁନ୍ଦର । ପାବଚ୍ଛ—ପାହାଚ । ଇଳସ୍ଥାନ—ଜଳ ରହିବା ଜାଗା ବା ଶଯ୍ୟା । ସ୍ୱଚ୍ଛ—ନିର୍ମଳ ସ୍ଫଟିକରେ ସେ ତିଆରି କରିଛନ୍ତି । ସେ ପଥିକ ଗୃହୁଁ ଗୃହୁଁ ପ୍ରତ୍ୟକ୍ଷ କରୁଥିଲେ ପୁଣି (ଭ୍ରମାଇ)

ଅନୁରୂପ ଦ୍ରବ୍ୟରେ ଗାଞ୍ଥି
ଅବ୍‌ଜ-କୁମୁଦାଦି ତହିଁ ଅଛନ୍ତି ରଚି । ୨୭ ।
ଅବଗାହ କରିବାକୁ ଯେ ସେ ତଟ-ନିକଟକୁ
ଯାଇ ଚାହିଁ ତଟସ୍ଥଙ୍କୁ ପାଇ ରହଇ
ଅମ୍ବୁ ଆଣିବାକୁ କେହି କୁମ୍ଭାଦି ବୁଡ଼ାନ୍ତେ ନେଇ
ବାଜି ତହିଁ ଭ୍ରାନ୍ତିଯାଇ କରୁଁ ପଡ଼ଇ ।
ଅତି ଶ୍ରମେ ପିଇବା ପାଇଁ
ଅଞ୍ଜଳି ବୁଡ଼ାଇ କେହି ଛନ୍ନ ହୁଅଇ । ୨୮ ।
ଅରବିନ୍ଦ ଶୋଭା ଚାହିଁ ଅଳି * ମାଳ ମାଳ ହୋଇ
ଉଡ଼ି ସୁବାସ ନ ପାଇ ଛାଡ଼ି ଯାଆନ୍ତି,
ଅନାଇ ମିଥ୍ୟା-ମରାଳୀ ମରାଳେ ମିଳନ୍ତି କେଳି—
ଆଶେ ପୁଣି ଭୁଲି ଭୁଲି ଚକ ହୁଅନ୍ତି ।
ଅହର୍ନିଶି ଏହି ଆଶରେ
ଅପ୍ରମିତ କଉତୁକ ହୋଏ ସେ ସରେ । ୨୯ ।
[ ଛଳଶ୍ଳେଷ ]
ଅସମଶରେ ଯେ ନର ପ୍ରାଣଧନକୁ ଚଉର—
ମଣ୍ଡଳେ ଘୃତ ହରନ୍ତି ସ୍ୱଚ୍ଛ ଚିତ୍ତରେ

---

ଭ୍ରାନ୍ତ ହୁଏ ବା ଭୁଲିଯାଏ । ଆହୁରି ମଧ୍ୟ ଅନୁରୂପଦ୍ରବ୍ୟରେ ଯେ ଯେଉଁ ଥିଲା ଉପଯୁକ୍ତ, ସେହିପରି ରତ୍ନାଦିରେ (ଅବ୍‌ଜ) ପଦ୍ମ (କୁମୁଦ) କଇଁ ପ୍ରଭୃତି ତହିଁ ତିଆରିଅଛନ୍ତି । ମାଣିକ୍ୟରେ ପଦ୍ମ, ହୀରରେ କୁମୁଦ ଓ ଇନ୍ଦ୍ରନୀଳରେ ନୀଳୋତ୍ପଳ ଇତ୍ୟାଦି । ୨୮ । ଅବଗାହ—ସ୍ନାନ । ତଟ—( କୃତ୍ରିମ ପୋଖରୀର ) କୂଳକୁ । ତଟସ୍ଥଙ୍କୁ···ରହଇ—ଅବାକ୍ ହୋଇ ରହିଯାଏ । କୁମ୍ଭାଦି—ମାଟିଆ ପ୍ରଭୃତି ମ.ଟିପାତ୍ର । ଅତି ଶ୍ରମେ—ଅତି ପରିଶ୍ରାନ୍ତ ହୋଇ । ଛନ୍ନ—ଚକିତ । ୨୯ । ସୁବାସ—ସୁଗନ୍ଧ । ମିଥ୍ୟାମରାଳୀ—କୃତ୍ରିମରେ ତିଆରି ହୋଇଥିବା ହଂସୀ । କେଳିଆଶେ—ରତିକ୍ରୀଡ଼ା ଆଶାରେ । ଚକ—ଆଶ୍ଚର୍ଯ୍ୟ । ଅହର୍ନିଶି—ଦିନରାତି । ଏହି ଆଶରେ—ଏହିପ୍ରକାରେ । କବି 'ଆଶ' ଶବ୍ଦକୁ ବହୁସ୍ଥଳରେ 'ପରି' ( ବତ ) ଅର୍ଥରେ ବ୍ୟବହାର କରିଛନ୍ତି । ଅପ୍ରମିତ—ଅପାର । ୩୦ । ଛଳଶ୍ଳେଷ—ଏଥିରେ ଶ୍ଳେଷାର୍ଥଦ୍ୱାରା ଉଭୟ ନିନ୍ଦା ଓ ସ୍ତୁତି ବର୍ଣ୍ଣନା ପ୍ରକାଶ ପାଇବ । (ନିନ୍ଦା) ଚଉରମଣ୍ଡଳେ—ଚୋରମାନେ । ଅସମ ଶରେ—

* ମାଳି ମାଳି [ଖ]

ଅବଳାଏ ପରବର                    ରତରେ କରି ଆଦର
କାନ୍ତ ବଚନ ଘେନନ୍ତି ସ୍ୱଗମତରେ ।
ଅନୁରକ୍ତି ପୃଷ୍ଠ-ସୁବାସେ
ଅଛନ୍ତି ଧୀରେ ଭ୍ରମରେ ବାଟିପି-ପାଶେ । ୩୦ ।

ଅଣୁମାନକ ହିଁ ପର—             ଗୁଣକୁ ଘେନନ୍ତି ପର—
ପରବତ-ପରିମାଣ ସେ ପୁରନର,
ଅବଧି ସଦୃଶରେ ଦୋଷ              ଥିଲେ କୁଶ-ଅଗ୍ରରସ
ପରି ଧରିବା ସହଜ ଗୁଣ ତାଙ୍କର ।
ଅହୋଗୁଣ ପରୋପକାର—
ଅର୍ଥେ ତନୁ ତନୁ ହୋଇଅଛୁ ଯାହାର । ୩୧ ।

ଅଣ୍ଡୀର କୋକିଳ ପୋଷେ—         ଛନ୍ତି କେତେ ବାରମାସୀ—
ମୁକୁଳ ଖୁଆଇ ପୋଷିବାକୁ ସେ ବାଣୀ
ଅଳାରେ ପ୍ରେୟସୀ ଦୃଷ୍ଟେ          ବସିଲେ ତାକୁ ଆଶ୍ୱାସି
କୁହୁ କୁହାନ୍ତି ଯେ ହସି ଉଠେ ରମଣୀ

---

ଅତ ଉତ୍କୃଷ୍ଟ ଶରଦ୍ଧ୍ୱଂସ (କେ ନର) କୌଣସି ନରର (ପ୍ରାଣଧନକୁ) ଜୀବନ ଓ ଧନକୁ (ସ୍ୱଚ୍ଛସ୍ୱତରେ) ନିର୍ବିବାଦରେ ହରନ୍ତି । ସ୍ୱଭାବ ବର୍ଣ୍ଣନା, ଅଯମଶରେ—କାମବାଣ ପ୍ରଭାବରେ । ପ୍ରାଣଧନ—ପ୍ରିୟା । କୁଚ ଉରମଣ୍ଡଳେ—କୁଚ ଓ ବକ୍ଷଦେଶରେ (ସ୍ୱଚ୍ଛସ୍ୱତରେ) ସ୍ୱଚ୍ଛନ୍ଦରେ, (ସ୍ୱତ ହରନ୍ତି) ସ୍ୱବିଯାପନ କରନ୍ତି ଅବଳାଏ···ମତରେ । (କନ୍ଧା) ଅବଳାଏ—ସ୍ତ୍ରୀମାନେ ( ପରବର ) ଅନ୍ୟ ସ୍ତ୍ରୀର ସ୍ୱାମୀ ସହ (ରତ) କାମକ୍ରୀଡ଼ାରେ, (ଆଦର କରି) ଲିପ୍ତ ରହି (କାନ୍ତବଚ) ସ୍ୱାମୀ ବାକ୍ୟକୁ ( ସ୍ୱଗମତରେ ) ସ୍ୱେଷାନ୍ୱିତ ହୋଇ ଶୁଣନ୍ତି ନାହିଁ । ସ୍ୱଭାବ ବର୍ଣ୍ଣନା—ଅବଳାଏ ପରବର—ଉତ୍କୃଷ୍ଟ ସ୍ୱାମୀ ରତରେ ଆଦର କରି (ସ୍ୱଗମତ) ଅନୁସ୍ୱଗପୂର୍ଣ୍ଣ ମନରେ (କାନ୍ତବଚନ) ମନୋହର ବଚନକୁ ଗ୍ରହଣ କରନ୍ତି । ୩୧ । ପରର ଅଣୁମାନ ଗୁଣ ଦେଖିଲେ ତାକୁ ପର୍ବତପ୍ରମାଣ ଓ ସମୁଦ୍ର ସଦୃଶ ଦୋଷକୁ କୁଶାଗ୍ରସ୍ଥିତ ଜଳପରି ଗ୍ରହଣ କରନ୍ତି । ଦିବାନିଶି ପରୋପକାର କରି କରି ଯେ ନଗରର ଲୋକମାନଙ୍କର ଦେହ କ୍ଷୀଣ ହୋଇ ଯାଇଛି । ୩୨ । ଅଣ୍ଡୀର କୋକିଳ—ଅଣ୍ଡୀସ୍ଥ କୋଇଲି । ବାରମାସୀ—ଯେଉଁ ଆମ୍ବଗଛରେ କେବେ ଫଳ ଛାଡ଼ି ହୁଏ ନାହିଁ । ମୁକୁଳ—ବଉଳ । ଆଶ୍ୱାସି—ସାନ୍ତ୍ୱନା ବାକ୍ୟ କହି ! ଅଳିମାଳି—ଭ୍ରମରସମୂହ । ପାଳିବା—ପୋଷିବା ।

ଅଳମାଳ ପାଳ ଥାଆନ୍ତି
ଅସାଧ୍ୟ-ମାନିନୀ ଆଗେ ଛାଡ଼ିଦିଅନ୍ତି । ୩୨ ।

ଅଚ୍ୟୁତ ଅନନ୍ତ ହରି    କେଶବ କୃଷ୍ଣଙ୍କ ସାରି
ପଢ଼ି କେତେ ଶୁକ ଶାରୀ ଅଛନ୍ତି ତହିଁ
ଅଳପ ଫଟିକ ମାରି    ପଢ଼ ବୋଲି ଦେଲେ ଠାରି
ଦିଅନ୍ତି ସେ କର୍ଣ୍ଣ-ମହୋତ୍ସବ କରାଇ ।
ଅନେକ ଅଛନ୍ତି ମରାଳ
ଅକ୍ଷି-ଅଗୋଚର ଖେଳ-ପାରୁଆ-ଖେଳ । ୩୩ ।

ଅର୍ଦ୍ଧକ୍ରୋଶ ପ୍ରସ୍ଥ କହି    ସ୍ୱଛଦାନ୍ତ ଅଛୁ ତହିଁ
ଦୁଇ ପାରୁଶରେ ଶୋଭୁଅଛୁ ମନ୍ଦିର
ଅଣୁମାତ୍ର ନାହିଁ ବଳ    ବିଶ୍ୱକର୍ମା ଆପେ ମିଳି
ସୂତା ଧରିଅଛୁ ତୋଳି କରି ସୁନ୍ଦର ।
ଅକ୍ଷି ଦେଖି ନ ପାରେ ଦୂରୁ
ଅପରିମିତ କିରଣ ରତନ-ଭରୁଁ । ୩୪ ।

ଅଗ୍ରଭାଗରେ ଠେକରି    ପିତୁଳା ସଜୀବ ପରି
କେତେ ଛନ୍ତି କେତେ ତୋରି ଭଙ୍ଗୀକି ବହି
ଅଳପ ହସିଲି ହୋଇ    ଗୃହୁଁ ଅଛୁ କେ ଘୂମାଇଁ
ଗୃହଁଲି ଲୋକର ହୃଦ ଦେଉଛୁ ଦହି
ଅଧର କେ ଦଶନେ ଛୁଣ୍ଡ
ଅଳସାଇ ସରୁକଟି ଦେଇଛୁ ମୋଡ଼ି । ୩୫ ।

---

ଅସାଧ୍ୟ ମାନିନୀ—ଯାହାର ମାନ ସହଜରେ ତୁଟେ ନାହିଁ ଅର୍ଥାତ୍ ଦୁର୍ଜୟମାନ-ବତୀ । ୩୩ । କର୍ଣ୍ଣମହୋତ୍ସବ କରାଇ ଦିଅନ୍ତି—କାନର ସୁଖ ଜାତ କରନ୍ତି । ଖେଳ-ପାରୁଆ—ଖେଳଣା ପାରା । ୩୪ । ଅର୍ଦ୍ଧକୋଶ ପ୍ରସ୍ଥ—ଅଧକୋଶ ଚଉଡ଼ା । ପ୍ରସ୍ଥ—'ଦୀର୍ଘ' ଶବ୍ଦର ବିପରୀତ । ରତନଭରୁ—ଅଧିକ ରତ୍ନ ଥିବାରୁ । ୩୫ । ଭଙ୍ଗୀ—ଅଙ୍ଗ ପ୍ରଭୃତିର ଠାଣି । ସଜୀବ ପରି—ପିତୁଳା ଯେପରି ଜୀବନ୍ତ ପରି ହୋଇଛି ଅର୍ଥାତ୍ ସତ୍ୟ ବୋଲି ଭ୍ରମ ହେଉଛି ।

ଅମ୍ବୁଜ-ଚରଣ ଛନ୍ଦି        ନାସା ତୋଳି ଦେଖୁଁ ଇନ୍ଦୀ—
ବରାକ୍ଷୀ ଅନାଇଁ ବନ୍ଦୀ କରୁଛନ୍ତି ମନ
ଅସାବଧାନ ପରାଇ        ଗୃହୁଁ ନ ଗୃହୁଁନ୍ତି ଦେହ
ସ୍ତନମୂଳୁ ଖସିଯାଇଅଛି ବସନ
ଅଣ୍ଟାରୁ ଷ ଭାନ ଖସୁଛି
ଅଳପ ଟେକିଲି କରି ଧରି ଖୋସୁଛନ୍ତି । ୩୬ ।

ଅଛନ୍ତି ଯେତେ ସାମାନ୍ୟା        ସୌନ୍ଦର୍ଯ୍ୟାଦି-ଗୁଣେ ଧନ୍ୟା
ତଳେ ତାଙ୍କୁ ସୁରକନ୍ୟା ସରି ନୁହନ୍ତି
ଅପାଙ୍ଗ-ଗଡ-ଖଣ୍ଡରେ        କେଳଣପଣ-ରଙ୍ଗରେ
ମହାଯତି-ତତି-ମତି ମନ୍ତ୍ରି ଦିଅନ୍ତି ।
ଅଟନ୍ତି ସେ ମୋହମନ୍ତ୍ରର
ଅକ୍ଷି-ବନ୍ଦୀ-ମନ୍ଦିର ମାଦକ ଖଣ୍ଡର । ୩୭ ।

ଅନ୍ତିକରେ ଲୋକ-ହାଟ        ବସଇ ଅତି ଉତ୍କଟ
ଯହିଁ ନାନା ରତ୍ନ-ହାଟକାଦି ସୁଲଭ
ଅଖିଳ ପଦାର୍ଥ ତହିଁ        ଯାହା ଯେ ଲୋଡେ ମିଳଇ
ଜନକ ଜନନୀ ଦୁଇ ଏକା ଦୁର୍ଲଭ
ଅନୁରୂପ ତା'ପରି ସେହି
ଅମର-ନରଭୁବନେ ସମାନ ନାହିଁ । ୩୮ ।

ଅଳକାପୁର ସମାନ        ସର୍ବଧନ-ନିକେତନ
କପର୍ଦ୍ଦୀ ଆଜଯାକରୁ କୈଳାସ କି ସେ

---

୩୬ । ଇନ୍ଦୀବରାକ୍ଷୀ—ଯାହାର ଅଖି ନୀଳକଇଁ ପରି । ପରାଇ—ପ୍ରାୟ । ଷ—ମଧ୍ୟ । ୩୭ । ସାମାନ୍ୟା—ବେଶ୍ୟା । ଧନ୍ୟା—ପ୍ରଶଂସାଯୋଗ୍ୟା । ଅପାଙ୍ଗଗଡ-ଖଣ୍ଡରେ—ଆଡ଼େଇ ଚାହିଁବା ଠାଣିରେ । ମହାଯତିତତିମତି—ମହାଯୋଗୀମାନଙ୍କର ମନକୁ । ୩୮ । ଅନ୍ତିକରେ—ନିକଟରେ । ଅମର ଓ ନର ଭୁବନେ—ସ୍ୱର୍ଗ ଓ ମର୍ତ୍ତ୍ୟରେ । ୩୯ । ସେ ହାଟ ଅଳକାପୁର (ସମାନ) ପରି । ସମାନ ବିଶେଷଣଦ୍ୱାରା ସାମ୍ୟ ଦେଖାଉଅଛନ୍ତି । ଅଳକା—ସର୍ବଧନ ନିକେତନ ବା ସମସ୍ତ ପ୍ରକାର ଧନର ଗୃହ । କାରଣ ସମସ୍ତ ଧନର ଅଧିପତି କୁବେରଙ୍କର ସେଠାରେ ବାସଗୃହ ଅଛି ।

ଅମରାବତୀ ସେ ପୁଣ    ବାସବ-ସୁରେ ଭୂଷଣ
ରମ୍ଭା ଐରାବତ ଆଦି ଥାନ୍ତି ଅନୁକ୍ଷଣେ ।
ଅବଧି ନାନା ରତ୍ନ ବସନ୍ତ
ଅମ୍ବୁଦ ଚଞ୍ଚଳା ଯହିଁ ଶୋଭନ ଅନ୍ତ । ୩୯ ।
ଅପସରା-ନାମ୍ନୀ ପରା    ରୁଚିରତର ପସରା
ସୁଗନ୍ଧ ସୁବାସ ଭୂଷଣରେ ସୁନ୍ଦର
ଅଧର ବିଦ୍ରୁମ ମୋତି—    ମାଳା ସ୍ଫୁରୁ ଦନ୍ତପନ୍ତି
ହୀରା ନଖ ସୁଭ୍ରମର କୁନ୍ତଳଭାର ।
ଅଛି ଦିବ୍ୟ ଦର୍ପଣ ମୁଖ
ଅଟେ ଗଣ୍ଡ ତାଲ ନେତ୍ର ତୀକ୍ଷ୍ଣ-ବିଶିଖ । ୪୦ ।
ଅନାଇ ଦେ ରଙ୍ଗିଣିଙ୍କ    କହଇ ଛଳ ବାଣୀକି
ତୁମ୍ଭେ ଏ ହାଟେ ଆଣି କା ବିକ ପଟନୀ

---

ହାଟ ମଧ୍ୟ ସମସ୍ତ ଧନର ଭଣ୍ଡାର ପରି । କୈଳାସରେ (କପର୍ଦ୍ଦୀ) ମହାଦେବଙ୍କର ଆତଯାତ ହେଉଥାଏ । ହାଟରେ ମଧ୍ୟ (କପର୍ଦ୍ଦୀ) ଯେଉଁମାନଙ୍କର ଠଙ୍କା କଉଡ଼ି ଅଛି, ସେମାନଙ୍କର ଯିବା ଆସିବା ଲାଗିଥାଏ । ଅମରାବତୀ—ଇନ୍ଦ୍ରଙ୍କର ନଗର । ବାସବ—ଇନ୍ଦ୍ର । ସୁର—ଦେବତା । ଭୂଷଣ—ଭୂଷିତ । ରମ୍ଭା—ସେହି ନାମ-ଧାରିଣୀ ଅପ୍‌ସରା । ଐରାବତ—ଇନ୍ଦ୍ରଙ୍କ ହସ୍ତୀ । ଅନୁକ୍ଷଣେ—ସର୍ବଦା । ହାଟପକ୍ଷରେ—ବାସ—ବସ୍ତ୍ର । ବସୁ—ରତ୍ନ । ରମ୍ଭା—କଦଳୀ । ଐରାବତ—ନାରଙ୍ଗ ବା କେଉଁଠ ଫଳ । ନାନା ରତ୍ନ ଥିବାରୁ ହାଟ ସମୁଦ୍ର ତୁଲ୍ୟ । ଏ ହାଟ (ଅମ୍ବୁଦ) ମେଘପରି । ମେଘରେ,(ଚଞ୍ଚଳା) ବିଜୁଳି(ଶୋଭନ)ସୁନ୍ଦର ଦିଶେ; ଏହା (ଚଞ୍ଚଳା) ଲକ୍ଷ୍ମୀ ଅର୍ଥାତ୍ ଧନରେ ମଣ୍ଡିତ ।୪୦ । (ପସରା) ଦୋକାନ ଅପସରା ନାରୀ ପରି । ସୁଗନ୍ଧ—କସ୍ତୂରୀ ପ୍ରଭୃତି । ସୁବାସ—ଉତ୍ତମ ବସ୍ତ୍ର । ଭୂଷଣ—ଅଳଙ୍କାରରେ ମଣ୍ଡିତ । ବିଦ୍ରୁମ—ପୋହଳା । ମୋତିମାଳା ତାହାର (ଦନ୍ତପନ୍ତି)ଦାନ୍ତପାଟି,ହୀରା ତାହାର ନଖ । ଉତ୍ତମ ଭ୍ରମର—ଚଅଁର ତାହାର କୁନ୍ତଳଭ୍ରମର ବା କେଶଗୁଚ୍ଛ । ଦର୍ପଣ—ଆରସି । ତାଲକୁ ଗଣ୍ଡ ସଙ୍ଗେ, ମୁଖକୁ ଦର୍ପଣ ସଙ୍ଗେ ତୁଳନା କରାଯାଇଅଛି । ତୀକ୍ଷ୍ଣ ବିଶିଖ—ଶାଣ-ଦିଆ ଶର ।୪୧। ରଙ୍ଗିଣୀ—ଏକଶ୍ରେଣୀର ତନ୍ତ୍ରୀ । ଛଳବାଣୀ—ଦୁଇପ୍ରକାର ଅର୍ଥ-ଯୁକ୍ତ କଥା । ପଟନୀ—ଲୁଗା । ଶ୍ଳେଷାର୍ଥ—ପତ୍ନୀ । ସୁନାରୀ ବଣିଆ,ଶ୍ଳେଷ—ଦିବ୍ୟ ସ୍ତ୍ରୀ

ଅଲକ୍ଷହାସେ ସେ କହଇ ସୁନାରୀ ବେପାରୀ ତୁହି
ସୁରୁପାସୁତାଙ୍କୁ ବିକୁ ପସରା ଘେନି ।
ଅତି ସରୁକଷ୍ଟିକି ଜାଣି
ଅଧିକ ମୂଲ୍ ଦେବ ତୁ ଦେବୁ କି ଆଣି ? ୪୧ ।
ଅନ୍ତରେ ହଂସାରୀ ନାରୀ— କି କେ କହେ ଭୃଙ୍ଗୀ ଭର
ଏ ନୂଆ ପାତଳୀଟିକି ନଅନ୍ତି ମୁହିଁ
ଅବଳା ବୋଲେ ପାତଳୀ ପ୍ରମାଣ ଏ ମାନ ସ୍ଥିରୀ
ହୁଡ ତା ହାତେ ଅଙ୍ଗିଲେ ଜାଣିମ ଯାଇଁ ।
ଅନୁରାଗେ କହେ ସେ ଭାବ
ଅବଶ୍ୟ ମୁଁ ପାଲଟାଇ ବାସକୁ ନେବ । ୪୨ ।
ଅନାଇଁ କେହି ସୁନାରୀ— ସୁନାରୀ ପାଶେ ପଚାର
ଦେବୁ କି ସୁରୁପା ରତି ସାତ ନଅନ୍ତି
ଅଙ୍ଗନା ବୋଲଇ ଯେବେ ନେବ ଆସ ଦେବା ତେବେ
ତୂଳୀ-ଉପରେ ପକାଇ ସରସେ ରତି ।
ଅଗାରେ ନାହିଁ ମୋ ବଲ୍ଲଭ
ଅଇଲେ ସେ ଲୋଡିଲେ ରତନ ମିଳିବ । ୪୩ ।
ଅଗ୍ରେ ବାଳାର କେ ବୋଲେ ସଂପୁଟକ ବଟା ଥିଲେ
ଦୁଇଗୋଟି ଦିଅ ଅଛି ଆମ୍ଭର କାମ

---

ସୁରୁପା ସୁତା— ଖାଣ୍ଟି ରୁପାରେ ତିଆରି ଅଣ୍ଟାସୂତା ( ଶ୍ଳେଷ—ସୁନ୍ଦରୀ କନ୍ୟା ) କଷ୍ଟିକି ଜାଣି—କଷ୍ଟିମାପରେ ( ଶ୍ଳେ—ସରୁକଟି କନ୍ୟା ବୋଲି ବୁଝି ) ୪୨ । ପାତଳୀ—ତସଲା, ପାତ୍ରବିଶେଷ ( ଶ୍ଳେ—ମୁଗ୍ଧା, କ୍ଷୀଣାଙ୍ଗୀ ) ୪୩ । ସୁନାରୀ-ସୁନାରୀ ବଣିଆଜାତୀୟା ସୁନ୍ଦରୀ ସ୍ତ୍ରୀ । ସୁରୁପା—ଖାଣ୍ଟି ଶୁଦ୍ଧ ରୁପା । ରତି ସାତ—ସାତ ରତି ପରିମାଣ । (ଶ୍ଳେଷରେ—ସୁରୁପା—ସୁନ୍ଦରୀ ) (ସମ୍ବୋଧନ) ରତି—କାମକ୍ରୀଡ଼ା । ତଦ୍ଧନତ (ସାତ) ସାତ—ସୁଖ । ଉତ୍ତର—ତୂଳୀ —ନିକିତି । ଶ୍ଳେଷରେ ତୂଳାପୂର୍ଣ୍ଣ ଶେଯ । ସରସେ ରତି— ଦୋଷହୀନ କାଇଞ୍ଚ (ଗୁଞ୍ଜ) ଅନ୍ୟ ପକ୍ଷେ—ସାଗ୍ରହ କାମକ୍ରୀଡ଼ା । ଲୋଡିଲେ—ଖୋଜିଲେ ( ରତନ ) ବହୁମୂଲ୍ୟ ପଥର ମିଳିବ । ଅନ୍ୟ ପକ୍ଷେ—ରତି—କାମକ୍ରୀଡ଼ା । ନ ମିଳିବ ମିଳିବ ନାହିଁ ।୪୪। ସମ୍ପୁଟକ—ଫରୁଆ । ଅନ୍ୟତ୍ର ତଦାକାର ସ୍ତନଦ୍ୱୟ ଲକ୍ଷ୍ୟ । ବଟା—ବଟୀ —ପାନ ପ୍ରଭୃତି ରଖିବାର ପାତ୍ର । ଅନ୍ୟପକ୍ଷେ—ଦେୟ ଧନ । ଉତ୍କଳପାତ୍ର—

ଅନାଇଁ ସେ ଭଜେ ନାହିଁ      ବଟାବଟୀ ଆମ୍ଭ ଭଣ୍ଡି
ଦେବା ଯେ ଦେଖି ଉଜ୍ଜ୍ୱଳ ପାବ ଭ୍ରମ ।
ଅନାଇ ସେ କୁନ୍ଦନ କାନ୍ତ
ଅଛୁ ସଗ୍ ଗିନା-ଗଗ୍ ନେଲେ କିଅନ୍ତ । ୪୪ ।

ଅଙ୍ଗେ ବଣିକ ନାଗ୍ରିର୍      ଭେ ଭଜେ ଆଗୋ ନାଗର୍
ନାଗେଶ୍ୱର୍ ଭାର୍ବାର୍ ଅଛୁ ତୁମ୍ଭର୍
ଅନୁବଚନେ ସେ ଭକ୍ତ      ଏ ବ୍ୟାପାର୍ ଯେବେ ନାହିଁ
ଉତ୍ତୁଙ୍ଗ ଟେକ କେମନ୍ତେ ହେଲ୍ ଆମ୍ଭର୍ ।
ଅନୁରୂପ ଗ୍ରାହକ ପାଇ
ଅତନୁ ରସରୁ ଦେବ ଜୁଆଣୀ ମୁହିଁ । ୪୫ ।

ଅଛୁ କି ଗୋ ଗୋପାଳୁଣୀ      ତୁମ୍ଭ ଏ ଦୁଧରେ ପାଣି
ମିଶି ଦିଶୁଅଛୁ ଅଳ୍ପ ପଣ୍ଡଲ୍ ହୋଇ
ଅଧୀରେ ସେହୁ ବୋଇଲ୍      କି ଗୋରସ ନ ରୁଚଲ୍
ମହୀ ପଡ଼ା ଛଡ଼ା ଦୁଧ ଖୋଜ ହେ ଯାଇଁ ।

---

ପାଲିସ ହୋଇଥିବା ବାସନ । ଅନ୍ୟ ପକ୍ଷେ—ଶୃଙ୍ଗାରୀ ନାୟିକା । କୁନ୍ଦନ କାନ୍ତି—କୁନ୍ଦରେ କସାଯାଇ ମଜା ହୋଇଥିବାରୁ ଝଟକ । ଅନ୍ୟ ପକ୍ଷେ—ସୁନାପରି ଦେହର ବର୍ଣ୍ଣ । ଶସ୍, ଗିନା, ଗସ୍—ସ୍ୱନାମଖ୍ୟାତ ପାତ୍ରମାନ । ଅନ୍ୟକ୍ଷ—ସରାଗୀ ନାଗର—ଅନୁରାଗୀ ନାଗର । ୪୬ । ବଣିକ ନାରୀ—ପୋଟଳି ବଣିଆକାଣ୍ଡିଆ ସ୍ତ୍ରୀ । ନାଗର—ଶୁଣ୍ଠି । ନାଗେଶ୍ୱର—ଔଷଧାର୍ଥେ ବ୍ୟବହୃତ ପୁଷ୍ପବିଶେଷ । ଅନ୍ୟପକ୍ଷେ—ନାଗର ନାଗେଶ୍ୱର—ରସିକଶ୍ରେଷ୍ଠ । ଉତ୍ତୁଙ୍ଗଟେକ—ବୈଶ୍ୟବୋଲି ବଡ଼ପଣ । ଅନ୍ୟପକ୍ଷେ, ଉରୋଜ—ସ୍ତନ । ଟେକ—ବୃଦ୍ଧି । ଅନୁରୂପ—ଯୋଗ୍ୟ । ଅତନୁ ରସରୁ—ବଡ଼ ବଡ଼ ଅର୍ଥାତ୍ ବହୁମୂଲ୍ୟ ରସରୁ (ପାରଦ ପ୍ରଭୃତି ଧାତୁଦ୍ରବ୍ୟଠାରୁ ଆରମ୍ଭ କରି ଜୁଆଣୀ ପର୍ଯ୍ୟନ୍ତ ସମସ୍ତ ଦ୍ରବ୍ୟ ଦେଇ ପାରିବି) । ଅନ୍ୟପକ୍ଷ—କନ୍ଦର୍ପ ରସ ହେତୁ (ଜୁ)—ବଳ ଓ (ଆଣୀ) ଠାଣି, ତେଜଃ ଦେବ । କାମଶାସ୍ତ୍ରମତେ ମୁଗ୍ଧା ସଙ୍ଗମ ବଳ-କାନ୍ତି ଆୟୁ ବୃଦ୍ଧିକର । ନିଜର ମୁଗ୍ଧାତ୍ୱ ଏହା ଦ୍ୱାରା ବ୍ୟକ୍ତ କଲା । ୪୭ । ପାଣି—ହସ୍ତ ଓ ଜଳ । ଗୋରସ—ଦୁଗ୍ଧ । ଅନ୍ୟପକ୍ଷେ—ଗୋ' (କୋମଳ ସମ୍ବୋଧନ) ରସ—ଶୃଙ୍ଗାର ରସ । ମହୀପଡ଼ା—ଜୁଆ ଦିଆଯାଇଥିବା ।

ଅମୃତରୁ ସ୍ୱାଦୁ ଏ ଜାଣ
ଅବଶ୍ୟ ନ ନେଲେ ଦହି ହେବ ଯେ ପୁଣ । ୪୬ ।
ଅଟେ ପଣାଅର ନାରୀ— କି ବେଳ ବୋଲେ ଭୃଙ୍ଗୀ ଭରି
ଏ ଲୁମ୍ବୀ କି ଦରେ ଧରି ବଡ ଲୁମ୍ବର
ଅବଳା ବୋଲଇ ଦୁଇ ସୀଉକାରେ ଦୁଇ ଦେଇ
ଭୋଗୀ ଲୋକ ଜାଣଇ ଏହାର ମଧୁର ।
ଅଛି ଯାର କପର୍ଦ୍ଦୀ-ସେବା
ଅବା ନେବ ଆସି ହିଁ ତ ଯାଉଛି ଦିବା । ୪୭ ।
ଅଙ୍ଗନାକୁ କୁମ୍ଭକାର କହେ କି ଗୋ ତୁମ୍ଭେ ମୋର
ଘଟ ନେବାକୁ ବସ୍ତୁର କର କି ଗୃହ୍ନୁଁ
ଅବ୍ଜମୁଖୀ ବୋଲେ ହାସେ ବେନିକୁମ୍ଭ ମୋର ବାସେ
ଅଛି ତା' ଦେଖି ଏ ଘଟ ଛାଡିବୁ ତୁହି
ଅହର୍ନିଶି ରସ ପୂରିଛି
ଅଷ୍ଟ ଏ ତା' ଠାଣ ଶୋଭା ଊଣା ନୋହୁଛି । ୪୮ ।
ଅନ୍ତେ ପାଟଗ୍ରାଣୀର ବୋଲଇ କେଉଁ ନାଗର
ଭଡ଼ାଟାଏ ଦେବୁ କି ଗୋ ଆମ୍ଭଙ୍କୁ ବହି

---

ଅନ୍ୟପକ୍ଷେ ଭୂମିସ୍ପର୍ଶୀ । ଦହି—ଦୁଗ୍ଧବିକାର । ଅନ୍ୟାର୍ଥ ଦହିହେବ—ସନ୍ତପ୍ତ ହେବ ।
୪୭ । ପଣାଅର ନାରୀ—ପସରା ବିକ୍ରୟ କରୁଥିବା ସ୍ତ୍ରୀ । ଲୁମ୍ବୀ—ଲାଉ । ଅନ୍ୟାର୍ଥ ସ୍ତନ ଲକ୍ଷ୍ୟ । ଦରେ—ମୂଲ୍ୟରେ । ଦୁଇ ସୀଉକାରେ—ଦୁଇ ସୁକିରେ ଅର୍ଥାତ୍ ଆଠଅଣାରେ । ଅନ୍ୟପକ୍ଷେ—(ଦୁଇ) ନାୟକ ଓ ନାୟିକା ଉଭୟଙ୍କର (ସୀଉକାରେ—ସ୍ୱୀକାରେ) ପରସ୍ପର ସଙ୍ଗରେ । ଭୋଗୀ – ଉପଭୋଗ କରିଥିବା ଲୋକ ଓ ବିଳାସୀ । କପର୍ଦ୍ଦୀ ସେବା—କଉଡିଆ ଲୋକ ନିକଟରେ ଚାକିରି କରୁଥିବା ଅନ୍ୟାର୍ଥ ଶିବ-ସେବା । ଆସିହିଁ ତ······ଦିବା—ନିତି ନିତି ଆସି (ଗୃହକୁ) ଫେରି ଯାଉଛି । ଅନ୍ୟାର୍ଥ—ଯୌବନ ଦିନକୁ ଦିନ ଚାଲିଯାଉଛି । ୪୮ । ଘଟ—ମାଠିଆ ଓ ପ୍ରାଣ । ବାସେ—ଗୃହରେ ଓ ଲୁଗାମଧ୍ୟରେ । ରସ—ଜଳ ଓ ଶୃଙ୍ଗାର ଭାବ । ୪୯ । ଭଡା—ପାଠଫୁଲ । (ଅନ୍ୟାର୍ଥ ଆଲିଙ୍ଗନ) । ଅଛନ୍ଦ—ଛନ୍ଦି ନ ଥିବା (ବରଡ) ବ୍ରତ ନେବକି ? ଅନ୍ୟାର୍ଥ ଅଛି, ନବରତ, ନେବ କି ? ଅଷ୍ଟ ଅଷ୍ଟଗୁଣ—ଚଉଷଠି । ବ୍ରତରେ ମଧ୍ୟ ଚଉଦ, ଚଉଷଠି ଗଣ୍ଠି ପକାଯାଏ ।

ଅନାଇ ସେ ବୋଲେ ବିଡ଼ା— ବିଶ୍ଚ ଯେବେ ଅଛୁ ଲୋଡ଼ା
ଆଚ୍ଛାରଙ୍ଗ କର ଦେବା ସର୍ବ୍ବର ନୋହୁ
ଅଚ୍ଛନ-ବର୍ତ୍ତ କା ନେବ
ଅଷ୍ଟ ଅଷ୍ଟ ଗୁଣ ବନ୍ଧନରେ ଅପୂର୍ବ । ୪୯ ।
ଅଖିଳ-କୁଳ ଏ ପୁର— ବର୍ଣ୍ଣନା-ଶ୍ରମ ବିସ୍ତର
ସ୍‌ଖଳନ ଥିଲେ ଏ ଦୋଷାଦୋଷ ନ ଧର
ଅଧୀରେ ଶୁଣି ଦଇବେ ବଧିର ପରି ଏ ହେବେ
ବିମୁଦିତ ହେବ ଯେଣୁ କର୍ଣ୍ଣକୁହର
ଅୟେ ବିଭୋ ! ସିତପବ୍ଦତ—
ଅଙ୍ଗ-ଚନ୍ଦ୍ର ଖଣ୍ଡ ଭଞ୍ଜୀବ୍ରଜ ଦୁରିତ । ୫୦

---

# ବିଂଶ ଛାନ୍ଦ

## ଶିବଙ୍କର ବିବାହଯାତ୍ରା

ରାଗ—ମାଲଶ୍ରୀ

ଅପୂର୍ବ୍ବ ରସ ଶୁଣ ଧୀର ନର
ଅମୃତୁଁ ଅପାର ମଧୁରତର ।
ଅନ୍ତକ-ଖେଦ-ଖଣ୍ଡନ-ଖଡ୍‌ଗ
ଅରିଷ୍ଟ-ଦୁଷ୍ଟ-ମୂଷିକ-ଉରଗ
ଅଭୀଷ୍ଟ ଦେବାକୁ ସୁରତରୁ ତାକୁ
ଯୋରିଷଦେ ନୋହେ ସର
ଅଜ୍ଞାନ-ଅନ୍ଧାର-ହରଣେ ହର । ୧ ।

---

୫୦ । ଅଖିଳ କୁଳ—ଅସଂଖ୍ୟ ବୃହଦ୍‌ବଂଶିଷ୍ଟ । ଏ ପୁର—କାଶୀ ନଗର । ଅଧୀରେ—ଅପଣ୍ଡିତ ଅର୍ଥାତ୍ ମୂର୍ଖମାନେ । ସିତ…ଚନ୍ଦ୍ର—କୈଳାସର ଚନ୍ଦ୍ର ସଦୃଶ । ଦୁରିତ—ପାପ ।

---

ବିଂଶ ଛାନ୍ଦ

୧ । ଅନ୍ତକ…ଖଡ୍‌ଗ—ଯମଯନ୍ତ୍ରଣା ଛଡାଇବାକୁ ଖଣ୍ଡାପରି । ଅରିଷ୍ଟ……ଉରଗ—ଦୁର୍ଦ୍ଦଶାରୂପ ମୂଷାର ବିନାଶ ପାଇଁ (ଉରଗ) ସର୍ପସଦୃଶ । ଅଭୀଷ୍ଟ ଦେବାକୁ—ମନଃକାମନା ପୂର୍ଣ୍ଣ କରିବାକୁ । ସୁରତରୁ—କଳ୍ପବୃକ୍ଷ । ହର—ସୂର୍ଯ୍ୟ ।

ଅନୁଜ୍ଞା ଦଲେ ତ୍ରିପୁ-ଲୋକସାଇଁ
ଅନୁଚର-ଗୁର-ବାରଙ୍କୁ ଗୁହ୍ନିଁ
ଅମ୍ବିକା-ବନ୍ଧୁ-ବଳେ ହେବ ଆଜ
ଅନୁରୂପେ ସୈନ୍ୟ ସଜ୍ଜର ସାଜ
ଅମର କିନ୍ନର— ଯକ୍ଷ ବିଦ୍ୟାଧର
ଋଷି ଅପସରଗଣ
ଅଷ୍ଟଦିଗପାଳ ସହିତେ ଆଣ । ୨ ।
ଅବିଲମ୍ବେ ଦଲେ ଗୃରେ ସଞ୍ଚାର
ଅନଶେ ବାଜଇ ବାଜଣାବାର ।
ଅଇଲେ ବଳ ଦଶଦିଗୁଁ ବାହି
ଅବନୀ-ତଳ ହୋଇଗଲା ଛାଇ ।
ଅଧମ ମଧ୍ୟମ ଉତ୍ତମ ବିବିଧେ
ତ୍ରିପୁରଲୋକ ଅଇଲେ
ଅଣୁଏ ସରବ ସେ କି କହିଲେ । ୩
ଅପରିଚ୍ଛିନ୍ନ-ମାନ ବସ୍ତୁଗଣ
ଅଚ୍ୟୁତ ଘେନି ଅଇଲେ ଆପଣ
ଅଭିନବ-ନୀଳ-ଜଳଦ-କାନ୍ତି
ଅସିତ ରତନରେ ଶୋଭା ପାନ୍ତି
ଅରି-ଦର ଅର— ବିନ୍ଦ-ଗଦା କର—
ଚତୁରରେ ଶୋଭାପାଏ
ଅଚିନ୍ତ୍ୟ ସବେ ଧାମଦେବ-ପ୍ରାଏ । ୪ ।
ଅମ୍ବୁଜ-ଆସନ ମଙ୍ଗଳ ଚଢ଼ି
ଅଗ୍ରେ ଭେଟିଲେ ବେଦସୂକ୍ତ ପଢ଼ି ।

---

୨ । ତ୍ରିପୁଲୋକସାଇଁ—ତିନି ଭୁବନର ସ୍ୱାମୀ । ୩ । ସଞ୍ଚର—ଗମନ । ବାଜଣାବାର—ବାଜଣାସମୂହ । ବଳ—ସୈନ୍ୟ । ୪ । ଅପରିଚ୍ଛିନ୍ନ ମାନ —ଯାହାର (ମାନ) ପରିମାଣ (ଅପରିଚ୍ଛିନ୍ନ) ନିର୍ଦ୍ଦିଷ୍ଟ ନୁହେଁ, ଅକଳନ୍ତ । ଅଭିନବ···କାନ୍ତି—ନୂଆମେଘ ପରି ନୀଳବର୍ଣ୍ଣ । ଅସିତରତନ—ନୀଳମଣି । ଅରି—ଚକ୍ର । ଦର—ଶଙ୍ଖ । ଅରବିନ୍ଦ—ପଦ୍ମ । ୫ । ଅମ୍ବୁଜ ଆସନ—

ଅମର୍-ଈଶ୍ୱର୍ ପ୍ରଣମେ ଆସି
ଐରାବତ କନ୍ଧେ ଅଛ୍ଛ ବସି
ଅରୁଣ ରଥରେ                    ଭେଟିଲି ମାଥରେ
ହାତ ଯୋଡ଼ି ଯୋଡ଼ି କରି
ଅବ୍‌ଜ ଦରଶନ କଲ୍ ଏପରି । ୫ ।
ଅଣଞ୍ଚାଶ ମୂର୍ତ୍ତିଧର୍ ପବନ
ଅଗ୍ରେ ବହ୍ନନ କଲ୍ ଦରଶନ
ଅନଳ ମହୀରେ ମୁଣ୍ଡ ମାଇଲେ
ଅନନ୍ତ ଚରଣେ ଯାଇଁ ପଡ଼ିଲେ
ଅମ୍ବୁନିଧିବାସୀ                    କୁବେର୍ ହିଁ ଆସି
ଜୟ ଜୟ ସ୍ତୁତି ଭଣି
ଅଞ୍ଜଳି କରେ ଓଲଗିଲେ ପୁଣି । ୬ ।
ଅନାଇ ବସିଛନ୍ତି କାଶୀବାସୀ
ଅମରଗଣଙ୍କୁ ସରାଗେ ହସି
ଅପାଙ୍ଗରେ ଗୁରୁବର୍ଗ ମିଶାଇ
ଅଳ୍ପ ଅଳ୍ପ ଭାଳୁଛନ୍ତି ଗୋସାଇଁ
ଅନୁରୂପ ସ୍ଥାନ—                    ମାନଙ୍କେ ସୁମନେ
ଭେଟି ହେଉଛନ୍ତି ଦେବ
ଅକଥନ ଶୋଭା ଦିଶେ ସେ ସଭା । ୭ ।
ଅତ୍ରି ଆଦି ସପ୍ତ-ଋଷି ଆସିଲେ
ଅଦ୍ୱୈତ ସ୍ତୁତି ସ୍ତବ ପ୍ରକାଶିଲେ
ଅଗସ୍ତି ନାରଦ ଶୁକ ଗୌତମ
ଅଥର୍ବ ବ୍ୟାସାଦି କଲେ ପ୍ରଣାମ

---

ବ୍ରହ୍ମା । ମରାଳ—ହଂସ । ଅମରଈଶ୍ୱର—ଇନ୍ଦ୍ର । ଅରୁଣ—ସୂର୍ଯ୍ୟ । ମାଥରେ—ମୁଣ୍ଡରେ ଅବ୍‌ଜ—ଚନ୍ଦ୍ର । ୬ । ଅନନ୍ତ—ବାସୁକି । ଅମ୍ବୁନିଧିବାସୀ—ବରୁଣ । ୭ । ସରାଗେ—ସ୍ନେହ ସହିତ । ଅଦ୍ୱୈତ—'ସର୍ବଂଖଲ୍ୱିଦଂ ବ୍ରହ୍ମ । ନେହ ନାନାସ୍ତି କିଂଚନ' ଇତ୍ୟାଦି ଈଶ୍ୱରଙ୍କର ଏକତ୍ୱପ୍ରତିପାଦକ ସ୍ତୁତି । ଏହାଦ୍ୱାରା ଅତ୍ରି ଆଦିଙ୍କୁ ଜ୍ଞାନଯୋଗୀ

ଅକ୍ଷର ଅକ୍ଷର ଭଜି ପଞ୍ଚାଶତ—
ବର୍ଣ୍ଣ ସ୍ତୁତିମାନ ଭଣେ
ଅଙ୍ଗୁଷ୍ଠି ଛନ୍ଦେ ମୁଦ୍ରା ଦେଖାଇଲେ । ୮ ।
ଅଧରେ ବଂ ବଂ ବାଦ୍ୟ ଯେ ବଜାଇ
ଅତି ଉଚ୍ଚେ ହର ହର ବୋଲୁଇ
ଅଙ୍ଗନ୍ୟାସାଦି ଭଜି ଧ୍ୟାନଭରେ
ଅନୁଷ୍ଠାନ-ବିଧିମାନ ଯେ କରେ ଯେ
ଅନଳକୁ ଅଧୋ— ମାର୍ଗୁ ତୋଳି ଊର୍ଦ୍ଧ୍ୱ—
ରନ୍ଧ୍ରେ ଋଷି ଯୋଗ-ବଳେ
ଅନାଇଛୁ ଜ୍ୟୋତିଙ୍କ ଯେ ନୟନେ । ୯ ।
ଅଇଲେ ଆନନ୍ଦାଦି ସରସ୍ୱତୀ
ଅପରେ ଭାରତୀ ବୈଷ୍ଣବ ଯତି
ଅପାର ହୃଷ୍ଟେ ଶିବ ଶିବ ଭଣି
ଅନୁସରି ଯୋଡ଼ି ଆସନ୍ତି ପାଣି
ଅଷ୍ଟକମାନଙ୍କୁ ସୁସ୍ପଷ୍ଟ ଭଜି ଏତ—
ନିଷ୍ଠାରେ ପଢ଼ନ୍ତି ଦେହି
ଅକାର ଉକାର ମକାର ଦେଇ । ୧୦ ।
ଅଧ୍ୟୟନ କରନ୍ତି ଯେ ନିୟମ
ଅଙ୍ଗରେ ଜାତ ହୋଏ ରୋମୋଦ୍ଗମ
ଅର୍ଥ ଘେନୁ ଘେନୁ ଅସ୍ଥିର-ତନୁ
ଅଶ୍ରୁ ଗଣ୍ଡପଡ଼ି ଅଛି ନୟନୁ
ଅଙ୍ଗୀ ହୁଇ ତୋଳି ଦେଇ କରତାଳୀ—
ନାଚଇ ଯେ ଉତ୍ସୁକରେ
ଅଭେଦିତ ମାନସିବେ ଯେ ଭରେ । ୧୧ ।

---

କୁହାଗଲା । ନାରଦାବ୍ଦ କର୍ମଯୋଗୀ । ଅକ୍ଷର—ଅବିନାଶୀ । ୧୦ । ଆନନ୍ଦାବ୍ଦ—ଆନନ୍ଦ, ପ୍ରକାଶ, ଭାରତୀ—'ମୁନି','ଗିରି','ବନ' ଇତ୍ୟାଦ ପଦ୍ୟାର୍ଥୀ । ଅକାର... ଦେଇ— (ଅ+ଉ+ମ୍=ଓଁ) ଓଁକାରକୁ ଉଚ୍ଚାରଣ କରି ସାରି ।

ଅଙ୍ଗ ବଙ୍ଗପତି କଳିଙ୍ଗପାଳ
ଅଯୋଧ୍ୟା ନେପାଳ କାଞ୍ଚି ଭୂପାଳ
ଅବନ୍ତୀ ଦ୍ୱାରକା ବିରାଟଭୂପ
ଅବ୍‌ଜକୋଣା ଅର୍କକୋଣା ମହୀପ
ଅଦ୍ରିମାଳ ଗୁଡ଼— ରାଟ ମହାରାଷ୍ଟ୍ର
ଓଡ୍ରରାଷ୍ଟ୍ର ତୈଲଙ୍ଗିକ
ଅଇଲେ ଖନ୍ଦାର ଗୋପନାୟକ ।୧୨।
ଅଶ୍ୱପତି ଗଜପତି ନୃପତି
ଅନ୍ତ୍ୟଜପତି ପୃଣି ଛତ୍ରପତି
ଅର୍କବଂଶୀ ସୋମବଂଶୀ ଚହାଣ
ଅପରେ ଗଙ୍ଗବଂଶୀ କ୍ଷତ୍ରିଗଣ
ଅଶ୍ୱ ଗଜ ରଥ ସୁଖାସନ ଚଢ଼ି
ଅଇଲେ ସନ୍ନଦ୍ଧ ହୋଇ
ଅମରପତି-ସମ୍ପତ୍ତି ମଚ୍ଛାଇ ।୧୩।
ଅଇଲେ ବଜ୍ରାକ୍ଷଣ ହିରଣ୍ୟାକ୍ଷ
ଅଘା ଆଦି ଯେ ଶୁମ୍ଭ ତାରକ୍ଷ
ଅର୍କିତାସୁର ବାଣାସୁର ଯେତେ
ଅତି ଉତ୍ସାହେ ଅଇଲେ ଦଇତେ
ଅଧଃପୁରୁ ବଳ— ରଜା ନାଗାବଳ
ଘେନି ଶେଷ ପରବେଶ
ଅପାର ଅଇଲେ ମୁଖ୍ୟ ରାକ୍ଷସ ।୧୪।
ଅନୁକୂଳ କାଳ ଆସି ହୋଇଲା
ଅଷ୍ଟଲୋଚନ ଛାମୁରେ କହିଲା
ଅହିଭୂଷଣ ଶୁଣି ଉଭା ହେଲେ
ଅଗ୍ନିଯୁଗେ ଇନ୍ଦ୍ର-ପାଦୁକା ଦେଲେ

---

୧୨ । ଅବ୍‌ଜକୋଣା—ଚନ୍ଦ୍ରକୋଣା । ୧୩ । ମଦ୍ରଦେଶ ରଜା ଅଶ୍ୱପତି, ଓଡ଼ିଶା ରଜା ଗଜପତି, କାଶୀରଜା ନରପତି ଓ ମହାରାଷ୍ଟ୍ରରଜା ଛତ୍ରପତି ବୋଲି ପୂର୍ବେ ପରିଚିତ ହେଉଥିଲେ । ସନ୍ନଦ୍ଧ—ସଜ୍ଜିତ । ମଚ୍ଛାଇ—ପ୍ରତିଯୋଗିତା କରି ବା ଯୋଗି । ୧୫ । ଅହିଭୂଷଣ—ଶିବ । ପୁରେ—ପୂର୍ଣ୍ଣ ହେଲା ।

ଅନ୍ତରୀକ୍ଷ ପୁର             ପୁରେ ହର ହର
ଜୟ ଜୟ ଶବଦରେ
ଅପସରା ନାଚୁଛନ୍ତି ମୁଦରେ ।୧୫।
ଅର୍ଜୁନ ଜଳାଛନ ବାସ ସାଜେ
ଅନେକ ଡିଣ୍ଡିମ ଡମରୁ ବାଜେ
ଅଇଲ ବୃଷଭଙ୍କ ସଙ୍ଗ ହୋଇ
ଅବଙ୍କଶେଖର ବକେ ଜଳେ ଯାଇଁ
ଅନୁସରି ସୁର             ଆଲଟେ ଗୁମର
ପିଞ୍ଛ ଖଦି ଢାଳୁଛନ୍ତି
ଅଗ୍ରେ ସଙ୍ଗୀତଜ୍ଞାନୀ ଚଳୁଛନ୍ତି ।୧୬।
ଅଭିନୟ ବନ୍ଧେ କିନ୍ନରବୃନ୍ଦ
ଅଙ୍ଗକୁ ଢାଳି ଢାଳି ମନ୍ଦ ମନ୍ଦ
ଅଙ୍ଗୁଷ୍ଠ ତର୍ଜନୀ ଅଙ୍ଗୁଳି ଦୁଇ
ଅଗ୍ର ଯୋଗେ ଜେ ହସ୍ତକ ଦେଖାଇ
ଅଳକ୍ତ ପୁରଃସରି             ପାଦ ଧୀରେ ମାରି
ପୁଣ ଉର ତେରି ରହେ
ଅମ୍ବୁ ଭଉଁରୀ ପରି ବୁଲିଯାଏ ।୧୭।
ଅମୃତୀ ଗୃଲିକା ଜେହ୍ନ ନାଚଇ
ଅମ୍ଳଇ-ଅରୁଣ-ଚରଣ-ଦୁଇ
ଅଲକ୍ଷିତ ହୋଏ ଚପଳନାଟେ
ଅଙ୍ଗ ତା' ଚପଳା ପରି ଚହଟେ
ଅଞ୍ଜୀର ଜୋକ୍ଳଳ—             ସ୍ୱରଟୁ ମଧୁର—
ଭାବେ ତା ତା ଥେଇ ଜରେ
ଅଲପ ଆଲାପେ ସ୍ୱଗ-ସ୍ୱଗରେ ।୧୮।

---

୧୬ । ଅର୍ଜୁନ—ଧଳା । ହସ୍ତକ—ଅଭିନୟ କାଳରେ ହସ୍ତର ନାନାବିଧ ଭଙ୍ଗୀ । ଅଳକ୍ତ ପୁରଃସର— ଅଳକ୍ତ ଆଗକୁ ଯାଇ ।

ଅଷ୍ଟଅର୍ଦ୍ଧବିଧ ବାଦ୍ୟ ବାଜୁଛି
ଅମ୍ବୁଜ-ଗମକ ମେଘା ଗାଜୁଛି
ଅସିତ ସିତ ପତାକା ପାଟଳ
ଅପ୍ରମିତ ଉଡେ ପତାକାମାଳ
ଅଇରାବତ ଉ— ଚ୍ଚୈଃଶ୍ରବା ପୁଷ୍ପକ
ଆଦି ଯହିଁ ଶୋଭା ପାଇ
ଅଶ୍ୱ ହାତୀ ରଥ ବର୍ଣ୍ଣିକ ତହିଁ । ୧୯ ।
ଅନ୍ତରେ ଲଗି ବାହାରିଲେ ପୁଣ
ଅଗ୍ନିତ-ପରିମିତ ଶିବଗଣ
ଅଟନ୍ତି ସର୍ବେ ବିଭୂତିଲେପନ
ଅଣ୍ଡକୋଷରେ ନାହିଁ ବଉପୀନ
ଅର୍ଦ୍ଧ-ସମତୁଲ— ମଦ୍ୟୋଜ୍ଜ୍ୱଳ ଶୂଳ
କରରେ କେବଳ ଅଛି
ଅସ୍ଥିମାଳମାଳା ଗଳାରେ ଅଛି । ୨୦ ।
ଅର୍ଦ୍ଧଚନ୍ଦ୍ରମା ଭାଲେ ତ୍ରିପୁଣ୍ଡ୍ର
ଅମୂଲ୍ୟ ରୁଦ୍ରାକ୍ଷେ ଭୂଷଣ ହାର
ଅଙ୍ଗାରେ ଶାର୍ଦ୍ଦୂଳଚର୍ମ ବସନ
ଅରବିନ୍ଦ ଇନ୍ଦୁମୁଖ ପ୍ରସନ୍ନ
ଅଙ୍ଘ୍ରି ରତ୍ନ ସ୍ପୃଷ୍ଟ ପାଦୁକା ସଞ୍ଚାରୁ
ଧ୍ୱନି କରେ ଅବିରତେ
ଅଶେଷ ବିଶେଷେ ବର୍ଣ୍ଣିବି କେତେ ? ୨୧ ।
ଅଛନ୍ତି ପୃଷ୍ଠଦେଶେ ଦେବଗଣ
ଅଶ୍ୱାଦି ଧରି ବାହନ ଚଢ଼ିଣ
ଅନନ୍ତ ଗରୁଡ ପିଠିରେ ବସି
ଅଗ୍ରେ ମାନ ବଢେ କରନ୍ତି ହସି

---

୧୯ । ଅଷ୍ଟଅର୍ଦ୍ଧବିଧ—ଚ୍ଚାରି ପ୍ରକାର । ଅମ୍ବୁଦ ଗମକ—ମେଘକୁ ଚମକେଇ ଦେଇ । ୨୦ । ବିଭୂତି—ଛତାପାଉଁଶ । ୨୧ । ସଞ୍ଚାରୁ—ଗମନ କରନ୍ତେ ।

ଅମର୍ସମୂହ— ପଛେ ଦଣ୍ଡିଚୟ
ଯୋଗୀ ତାଙ୍କ ପଛେ ଗଲେ
ଅନ୍ତି ନାର୍ଦାଦି ମଧ୍ୟେ ଚଳଲେ । ୨୨ ।
ଅମଙ୍ଗଳକୁଳ ପିଶାଚକୁଳ
ଅପରେ ଭୂତ ପ୍ରେତ ଭ୍ରାମଶୀଳ
ଅଖାଦ୍ୟ-ଭକ୍ଷକ ବ୍ରହ୍ମରକ୍ଷସ
ଅମାନେ ପଛେ ଅଇଲେ ଶହ୍‌'ଶ' ,
ଅତି ମୀଚ ଉଚ ରୁପ ପର୍ପଞ୍ଚ
ଦେଖି ଉଡିଯାଏ ପ୍ରାଣ
ଅନର୍ଥମାନଙ୍କ ହେତୁ ସେ ଗଣ । ୨୩ ।
ଅସ୍ଥି ମାଳ ମାଳ ତା ହୃଦସ୍ଥଳେ
ଅନ୍ତ୍ରମାଳା ଖାହ୍ଁା ଗଳାରେ ଲୁଲେ
ଅଜ ମେଷର୍କତ ତେ ପିଇଛନ୍ତି
ଅଧରେ ଲଗି ସେ ଶୁଖିଯାଇଛନ୍ତି
ଅତି ଶୁଷ୍କପଳ ଖଣ୍ଡେ ତେ ଚବଳ
ଚରୁଛନ୍ତି ପ୍ରବଳ ଦନ୍ତେ
ଅନାଏଁ ଭଗ୍ନି ଈକ୍ଷଣ-ଅନ୍ତେ । ୨୪ ।
ଅଇଲ୍ ମଦିର୍ ତେ ପାନ କରି
ଅମଲବଳେ ଅକ୍ଷି ପଡ଼େ ଘାରି
ଅଜାଗେ ପଡ଼ୁ ପଡ଼ୁ ସମ୍ଭାଳୁଛନ୍ତି
ଅଶ୍ୱଷ୍ଟ ଚଢ଼ି ତେ ପ୍ରେତ ଚଳୁଛନ୍ତି
ଅଘାସୁର୍ ପରି ପାଟି ତେ ପ୍ରସାରି
ପକାଏ ପ୍ରଳୟ ରଡି
ଅଣ୍ଡୀର୍ ମନୁଷ ଖାଏ ତେ ମୋଡି । ୨୫ ।

୨୩ । ଭୀମଶୀଳ—ଭୟଙ୍କର—ସ୍ୱଭାବ । ଶହ୍‌ଶ—'ଶହ ଶହ' । ଖଣ୍ଡିତ ହୋଇ—'ଶହ୍‌ଶ' ହୋଇଛି । ଶୁଷ୍କପଳ—ଶୁଖିଲ ମାଂସ । ଈକ୍ଷଣ ଅନ୍ତେ—ଆଖି ପ୍ରାନ୍ତରେ । ୨୫ । ଅମଲ—ମାଦକ ଦ୍ରବ୍ୟ । ଅଶ୍ୱଷ୍ଟ—କୁଆ । ଅଂଶାଇ—ପୋକ ।

ଅଙ୍ଗାର୍ ପର୍ ଦିଶେ କାହ୍ନା କାନ୍ତି
ଅନ୍ଧାର୍ ପ୍ରକାର୍ କାହ୍ନାର୍ ଦ୍ୟୁତି
ଅଗ୍ନି-ସଦୃଶ ଜଳେ ତା' ନୟନ
ଅବଲୋକନେ ଛନ୍ନ ହୋଏ ମନ
ଅଂଶାଇ ପଣ୍ଡବା        ଶବମାଂସ ସେବା—
କରୁଅଛି କେହ୍ନୁ ସୁଖେ
ଅଟେକନ୍ତେ ଦନ୍ତେ ଭାଡ଼ୁଛି ନଖେ । ୨୬ ।
ଅଛି ଅବଶେଷ ଅଙ୍ଗ ତାହ୍ନାର
ଅମାନ ଶିର୍ ସର୍ବାଙ୍ଗେ ତା' ହାର
ଅତି ଦୀର୍ଘ ତାର ବିକୃତାନନ
ଅକ୍ଷି ଖଦ୍ୟୋତଦ୍ୟୁତି ଏ ଜ୍ୱଳନ
ଅଷ୍ଟ ବସ୍ତ୍ର ଶୃ-        ଗାଳ ରୂପ ଯେହ୍ନୁ
ସେହ୍ନିରୂପେ ତାଙ୍କ ସ୍ୱନ
ଅବା ବର୍ଣ୍ଣିବା କେତେ ଏ ବିଧାନ ? ୨୭ ।
ଅଟନ୍ତି ନିର୍ଗୁଣମୟ ଯେ ହର
ଅଛନ୍ତି ନିର୍ଗୁଣୀ ସଙ୍ଗେ ତାଙ୍କର
ଅଶୋଭ୍ ଶୋଭ୍ ବିକୃତ ପ୍ରକୃତ
ଅସାର୍ ସାର୍ ଯାର୍ ଏକମତ
ଅଘବନ୍ତ ହୋଇ        ଏଣୁ ତାଙ୍କ ତହୁଁ
ଭରସା ବଳଭଦ୍ରର
ଅବଶ୍ୟ ନାଶିବେ ଅନ୍ତକ-ଦର୍ । ୨୮ ।

---

୨୭ । ବିକୃତାନନ—ବିକୃତ ମୁଖ । ଖଦ୍ୟୋତଦ୍ୟୁତି—ଜୁଳୁଜୁଳିଆ ପୋକର କାନ୍ତି । ଜ୍ୱଳନ—ଅଗ୍ନି । ୨୮ । ଅଘବନ୍ତ—ପାପୀ । ଅନ୍ତକଦର—ଯମଭୟ ।

# ଏକବିଂଶ ଛାନ୍ଦ

## ବିବାହମଣ୍ଡପ-ବର୍ଣ୍ଣନା

ରାଗ—ବା ଚଉତିଶା ବୃତ୍ତେ

ଅକଳୁଷ ମନେ ସଜ୍ଜନ ସୁମନେ
ଆକଳନା କର ଚିତ୍ତେ
ଅଚଳ ମହୀପ ବିବାହ-ମଣ୍ଡପ
ନିର୍ବାହ କଲେ ଯେମନ୍ତେ ଯେ
ଅଛି, ମନୋହର ଦିବ୍ୟସ୍ଥାନ
ଅତି ଦୀର୍ଘ ପ୍ରସ୍ଥ ଆୟତନ ଯେ । ୧ ।

ଅରୁଣସ୍ମରୁ ତ— ରୁଣ ଚୂତପତ୍ର
ତୋରଣ ଦ୍ୱାରରେ ବାନ୍ଧି
ଅର୍ଜ୍ଜୁନ ନୀଳସୁ— ମର ମାଳ ମାଳ
ଠାବେ ଠାବେ ଛନ୍ତି ଛନ୍ଦି ଯେ
ଅମ୍ବୁ-ପେଣ୍ଠୀ ଗୁଆ କାନ୍ଦି କାନ୍ଦି
ଅଛନ୍ତି ସେ ଚଉପାଖେ ବାନ୍ଧି ଯେ । ୨ ।

ଅମୂଲ୍ୟ ହେମ ଅ— ର୍ଦ୍ଧଚନ୍ଦ୍ର ଉପରେ
ବର୍ତ୍ତୁଳ ମାଣିକ୍ୟ ସୂର୍ଯ୍ୟ
ଅୟୂନ ଭିତ୍ତିମା— ନଙ୍କେ ଖଞ୍ଜିଛନ୍ତି
ଥୟ ନୋହେ ଗୁହାଁ ଧୈର୍ଯ୍ୟ ଯେ

---

ଏକବିଂଶ ଛାନ୍ଦ

୧ । ଅକଳୁଷ ମନେ—ପବିତ୍ର ମନରେ । ସୁମନେ—ପଣ୍ଡିତମାନେ । ଆକଳନା କର—ବିଚାର କର । ଅଚଳ-ମହୀପ—ପର୍ବତରାଜ ହିମାଳୟ । ନିର୍ବାହ—ନିର୍ମାଣ ।୨। ଅରୁଣସ୍ମରୁ—ବାଳସୂର୍ଯ୍ୟ ପରି ସୁନ୍ଦର । ତରୁଣ—କଅଁଳିଆ । ଅମ୍ବୁପେଣ୍ଠୀ—ନଡିଆ । ହେମ ଅର୍ଦ୍ଧଚନ୍ଦ୍ର,—ସୁନାଚନ୍ଦ୍ର । ମାଣିକ୍ୟ ସୂର୍ଯ୍ୟ—ମାଣିକ୍ୟ-ନିର୍ମିତ ସୂର୍ଯ୍ୟ । ଅୟୂନଭିତ୍ତି—ବାଠପାଖ କାନ୍ଥ । ଅବ୍ଧିଫଳ—ମୁକ୍ତା । ଅନୁଛନ୍ଦରେ—ପରସ୍ପରକୁ ଛନ୍ଦ ।

ଅବ୍ଧି,—ଫଳ ପନ୍ତ ପନ୍ତ ଗୁନ୍ଥି
ଅନୁଚ୍ଛନ୍ଦାରେ ଅଛନ୍ତି ପନ୍ତି ଯେ । ୩ ।
ଅସବ୍ୟ ସବ୍ୟ ପା— ର୍ଶ୍ୱେ ଦ୍ୱାରେ ଦ୍ୱାରେ
ସୁନାକନ୍ୟା-ଖମ୍ବ ଶୋଭି
ଅଳସୀ ପ୍ରତିମା ଯେଉଁ ମନୋରମା
ବାଳସିତକର-ଆଭି ସେ
ଅଛି, ତାଳ ଯେ ପିନ୍ଧୁଳୀ ଧରି
ଅମ୍ଳତୀ ଯେ ବେଣୁ ବୀଣା ଭରି । ୪ ।
ଅତି ବଚସ୍ବ କୁ— ଠୁଣୀ ଗୁଳନେ ଯେ
ଗୁମର ଢାଳୁଛି ରଙ୍ଗେ
ଅସିତ-କଣ୍ଠପୁ— ଚ୍ଛ ପିଛା ପକାଇ
ଯେ ଚକ୍ଷୁ ପିଛଡ଼ା ଭଙ୍ଗେ ଯେ
ଅମ୍ବ ଝଙ୍କା ଧରିଛି ଯେ ଗୋଝା
ଅଛି ପାନ ପାନବଠା ଧରି । ୫ ।
ଅଷ୍ଟରନ୍ଧ୍ରେ ନ— ବଷ୍ଟି ହୋଇଅଛି
ମଧ୍ୟେ ବିବାହମଣ୍ଡପ
ଅର୍ଦ୍ଧ ଗୁରୁ ଶୃଙ୍ଗ ଶଙ୍ଖ ଶୋଭି ଚନ୍ଦ
ବନ୍ଦ କରୁଛି ତା' ରୂପ ଯେ
ଅଷ୍ଟ, ଅଷ୍ଟଖମ୍ବ ନୀଳମଣି
ଅଛି ମାଣିକ୍ୟରେ ଶ୍ରେଣୀ ଶ୍ରେଣୀ । ୬ ।
ଅଂଶୁରେ ଉଜ୍ଜ୍ୱଳ ସ୍ଫୁଟ ଇନ୍ଦ୍ରନୀଳ—
ମଣି ଓରି' ଅଛି ଗଢ଼ି
ଅପରେ ଯେ 'ଗୁଞ୍ଜ' ବଇଡ଼ୂର୍ଯ୍ୟ ତେଜ
ହୀର-ସରସିଜ ଇଞ୍ଜ ଯେ
ଅଂଶେ, ଅଂଶେ ଯେ ଛଆଶିମାନ'
ଅମଳିନ 'ମାଳତି' ଅମାନ ସେ । ୭ ।

---

୪ । ଅସବ୍ୟ—ବାମ । ସବ୍ୟ—ଦକ୍ଷିଣ । ପ୍ରତିଦ୍ୱାରର ବାଁ ଓ ଡାହାଣରେ ସୁନା ତିଆରି କନ୍ୟା ଆକାରର ଖମ୍ବ । ତାଳ—ଝାଞ୍ଜ । ୫ । ଅସିତକଣ୍ଠ—ମୟୂର ।

ଅଚ୍ଛକାନ୍ତ-କାନ୍ତ ମଣିରେ ନିର୍ମିତ
ହୋଇଛି ଫଲକଙ୍ଗ
ଅକାଳେ ବରଷା— ସୁଖ କରେ ନିଶା—
କରରେ ହୋଇଣ ତୋଷ ସେ
ଅଗ୍ରପଟ୍ଟାରେ କନକ ଶୃଙ୍କ
ଅନୁକୋଣେ ମକର-ମସ୍ତକ ଯେ । ୮ ।
ଅକ୍ଷିପ୍ରେମ-ସମ ଯନ୍ତ୍ର-ରତ୍ନ-କମ
କମଳ-ବିମଳ-କଳୀ
ଅମୂଲ୍ୟ ଆରମ୍ଭ ରମ୍ଭାଭଣ୍ଡା କୁମ୍ଭି—
କୁମ୍ଭ ସ୍ତମ୍ଭମୁଣ୍ଡାବଳି ଯେ
ଅଂସମୋଡ଼ା ଘୋଡ଼ା କରି-ହରି
ଅଙ୍ଘ୍ରି ତୋଳା ବିକ୍ରମ କେଶରୀ ଯେ । ୯ ।
ଅଳ୍ପ କୋରକିତ ମୁଦ୍ରିତ ପୁଷ୍ପିତ
ନାନା ଜାତି ତରୁମାନ
ଅଧ ଊର୍ଦ୍ଧ୍ୱ ପତ୍ର ଛନ୍ଦି ଲତା ଚିତ୍ର
ଗୃହେଁ ହରେ ନେତ୍ର ମନ ଯେ
ଅଳି, ନର୍ତ୍ତକୀ କେକୀ କୋକିଳ
ଅହି ମର୍କଟ ନକ୍ର ନକୁଳ ଯେ । ୧୦ ।
ଅନୁରୂପ କରି ଯହିଁ ଯେ ବସ୍ତୁରି
ଗଢିଅଛି ବିଶ୍ୱକର୍ମା
ଅଳପ ସେ ଶୋଭା କଳପଣା ହେବା
ଉପମା ନୋହେ ସୁଧର୍ମା ଯେ
ଅତି, ଦୀପ୍ତ ରତ୍ନ-ଦୀପ-ଶ୍ରେଣୀ
ଅଣ୍ଟ କ୍ଷୌଣୀରେ ହେଉଛି ଗଣି ଯେ । ୧୧ ।

---

୮ । ଅଚ୍ଛକାନ୍ତକାନ୍ତ—ଚନ୍ଦ୍ରକାନ୍ତ । ଅନୁକୋଣେ—ପ୍ରତିକୋଣରେ । ୯ । ରମ୍ଭା ଭଣ୍ଡା—କଦଳୀ ଭଣ୍ଡା । କୁମ୍ଭି କୁମ୍ଭ—ହାତୀ କପୋଳ । ଅଂସମୋଡ଼ା—ବେକ ମୋଡିଥିବା । କରିହରି—ଗଜ ସିଂହ ବା ହାତୀ ଉପରେ ସିଂହ ବସିଥିବା ଚିତ୍ର । ଅଙ୍ଘ୍ରି ତୋଳା—ଗୋଡ ଟେକିଥିବା । ୧୦ । ଅଳ୍ପ କୋରକିତ—ଅଳ୍ପ କଢ ଧରିଥିବା । ନକ୍ର - କୁମ୍ଭୀର । ୧୧ । ସୁଧର୍ମା—ଦେବସଭା । ଅଣ୍ଟ······ଗଣି—ରତ୍ନ-ଦୀପର ତେଜ ଏତେ ଉଜ୍ଜ୍ୱଳ ହୋଇଛି ଯେ (କ୍ଷୌଣୀ) ଭୂଇଁରେ (ଅଣ୍ଟ) ବାଲି ମଧ ଗଣି ହେଉଛି । ଅଚ୍ଛମୁକୁରପ୍ରକର—ନିର୍ମଳ ଦର୍ପଣସମୂହ । ପ୍ରତିଭିତ୍ତି—ପ୍ରତି କାନ୍ଥ ।

ଅଚ୍ଛ ମୁକୁର୍-ପ୍ର— ତର ପ୍ରଭୃ ଛବି—
ମାନଙ୍କେ ଅଚ୍ଛନ୍ତ ଶକ୍ତି
ଅନ୍ତରେ ଭାର୍ ବ— ଟବ ଟବମାନ
ମାନସକୁ ଦିଏ ରଞ୍ଜି ଯେ
ଅଭ୍ର—ଖେଳ ତାହିଁ ସୀତାପତ
ଅଚ୍ଛ ତାହିଁ ଗୋପଲୀଳା ସ୍ମିତ ଯେ । ୧୨ ।
ଅର୍ଜ୍ଜୁନ ସୁଭଦ୍ରା ଯାଇଛନ୍ତ ନିଦ୍ରା
ବଳବ୍ରଜା ଦାନ ଦେବା
ଅନନ୍ତ-ଶୟନ ତାହିଁ ଦଶାନନ
ମନ୍ଦୋଦରୀ-ପାଶେ ଥିବା ଯେ
ଅବଧି-ଶୋଭି ଅଳକା ଚରିତ
ଅମରାବତୀ ତାହିଁ ଲକ୍ଷିତ ଯେ । ୧୩ ।
ଅଗାର୍ମାନଙ୍କେ ଲଗା ରନ୍ଧ୍ର ପାଟ—
ଭୃଙ୍ଗାର୍ ଗୃନ୍ଦୁଆମାନ
ଅଗୁରୁ ଅତର କସ୍ତୁରୀ ପମୀର—
ନୀର୍ ସିଞ୍ଚି ପ୍ରତି ସ୍ଥାନ ଯେ
ଅମ୍ବୁ-ପୂର୍ଣ୍ଣ ସ୍ୱର୍ଣ୍ଣଘଟ ସ୍ଥାପି
ଅଗ୍ରେ ଦ୍ୱେହମାନ୍ତୁ ରମ୍ଭା ରୋପି ଯେ । ୧୪ ।
ଅଦ୍ଭୁତ ଅଦ୍ଭୁତ କନକ ରଜତ
ମଣିରତ୍ନଗଣ ପୀଢ଼ା
ଅତି ଶୋଭାକର ଯଥା ନିଶାକର
ଭୃଙ୍ଗାଡ଼ା ଶାକର ବଢ଼ା ଯେ
ଅର୍ଘ୍ୟ, ପୁଷ୍ପ ଦଧି ବଢ଼ା ବଢ଼ା
ଅଚ୍ଛ ସମିଧ ହିଁ ଖଡ଼ା ଖଡ଼ା ଯେ । ୧୫ ।
ଅତି କୋଳାହଳ— ସ୍ୱରେ ହଂସକୁଳ
ଚଳୁଛନ୍ତ ମେଳ ହୋଇ
ଅଙ୍ଗନାସଙ୍କୁଳ ମଙ୍ଗଳରେ ଭୁଲ—
ଭୁଲୀ କୁତୁହଳେ ଦେଇ ଯେ

---

୧୫ । ସମିଧ—ହୋମକାଠ

ଅସ୍ତ୍ର,-ମିତ ନାନା ବାଦ୍ୟମାନ
ଅବ୍ଜ-ମହୁରୀ-ମଙ୍ଗଳ ଗାନ ଯେ । ୧୬ ।
ଅବ୍‌ଜ ଆସନ ବ— ଧିରେ ବଧିରେ ସେ
ବେଦୀ-ବିଧାନ ନିର୍ମାଣି
ଅଥ ସ୍ୱଚ୍ଛଦଣ୍ଡ ଯାକ ଖଞ୍ଜିଦେଲେ
ତମୋହର ରତ୍ନମଣି ଯେ
ଅନୁ; ଆନେ ଚନ୍ଦ ସର୍ବପୁରେ
ଅଷ୍ଟ ପୂର୍ଣ୍ଣ କୁମ୍ଭ ପ୍ରତି ଦ୍ୱାରେ ଯେ । ୧୭ ।
ଅହୃତ--ମଣ୍ଡଳ— ଖଣ୍ଡନ ନିପୁର—
ପାଳନ ନାଶନ ପର
ଅଭବ ଯେ ଭବ ଅଦ୍ୱନ୍ଦ୍ୱରେ ଦ୍ୱନ୍ଦ୍ୱ
ଭାବେ ସର୍ବଦା ବହାର ଯେ
ଅଙ୍କ ବଙ୍କ କେନ୍ଦୁଝରୀ-ଈଶ
ଅଟେ ବଳଭଦ୍ର ରୁଦ୍ର-ଦାସ ଯେ । ୧୮ ।

---

୧୬ । ଅବ୍ଜ—ଶଙ୍ଖ । ୧୭ । ତମୋହର— ଅନ୍ଧକାରନାଶକାରୀ ।
୧୮ । ଅହୃତ—ଶମ୍ଭୁ । (ଅଭବ) ଜନ୍ମରହିତ ହେଲେହେଁ ଯେ 'ଭବ' ନାମ ଧାରଣ କରିଛନ୍ତି । ଅଦ୍ୱନ୍ଦ୍ୱରେ—ସ୍ୱଚ୍ଛନ୍ଦରେ । ଦ୍ୱନ୍ଦ୍ୱଭାବେ—ଯୁଗଳରୂପ ହୋଇ । 'ବଙ୍କ'ପଦ ଏଠାରେ ସମ୍ବୋଧନ । ରୁଦ୍ରଦାସ—ମହାଦେବଙ୍କ କିଙ୍କର ।



# ଦ୍ୱାବିଂଶ ଛାନ୍ଦ

## ବିବାହ

ଅଚଳ-କୁଳ-ଭୂପାଳ ସେ
ଅନୁରୂପ ଚତୁରଙ୍ଗ ବଳ ଯେ
ଅନେକ ଗୀତ ବା— ଦ୍ୟ ନାଟ ସହିତେ
ସମ୍ଭାର କଲେ ପ୍ରବଳ ଯେ । ୧ ।
ଅର୍ଘ୍ୟାସନ ବିଧିପୂର୍ବେ ସେ
ଅତି ଅପୂର୍ବ ବରଣ-ଦ୍ରବ୍ୟେ ଯେ
ଅପାର ଦୂରକୁ କୃପାରସଧିଙ୍କି
ବରିଗଲେ ସେ ହୃଦ-ଭାବେ ସେ । ୨ ।
ଅଯୂନ-ବରଣ କଲେ ସେ
ଅକ୍ଷତାଦି ଗନ୍ଧପୁଷ୍ପ ଦେଲେ ଯେ
ଅମ୍ବିକା ସୁମନା— ମାଳା ଗଳେ ଦେଇ
ମାଳା ଘେନଲେ ଭେଟିଲେ ଯେ । ୩ ।
ଅଭିଶଯ୍ୟ ଶିଷ୍ଟାଗୃହେ ସେ
ଅର୍ଘ୍ୟ ଧୂଆଇ ସୁବାସ-ନୀରେ ଯେ
ଅନୁରୂପ ସୁର ଋଷିଙ୍କି ଈଶ୍ୱର
ସଙ୍ଗେ ଡାକି ବେଦୀପରେ ଯେ । ୪ ।
ଅବ୍ଧିପତି-ପୂଜା କରି ଯେ
ଅଥ ସତ୍ୟବାକ୍ୟ-ଦାନ ସାରି ଯେ
ଅପୂର୍ବ ଗନ୍ଧାଧି— ବାସ ଜଳପୂତ
ସୁକ୍ତ ଲବଣଚଉରୀ ଯେ । ୫ ।

---

ଦ୍ୱାବିଂଶ ଛାନ୍ଦ

୧ । ଅଚଳକୁଳଭୂପାଳ—ପର୍ବତମାନଙ୍କ ରାଜା, ହିମାଳୟ । ଚତୁରଙ୍ଗ-ବଳ—ହସ୍ତୀ, ଅଶ୍ୱ, ରଥ ଓ ପଦାତି ଏହି ଚାରିପ୍ରକାର ସୈନ୍ୟ । ୨ । କୃପାରସଧି—କରୁଣାସାଗର ଶିବ । ୩ । ଅଯୂନବରଣ—ବାଟବରଣ । ସୁମନମାଳା—ଫୁଲମାଳା । ୫ । ଅବ୍ଧିପତି-ପୂଜା—ବରୁଣ-ପୂଜା ।

ଅଙ୍ଗ ଷଡ଼କର୍ମ ଘେନି ସେ
ଅଥ ମହାବାକ୍ୟ ହସ୍ତଗନ୍ତି ଯେ
ଅଷ୍ଟ ଦିଗପତି ଆଦି ଲକ୍ଷହୋମ
ଶିଳାରୋହଣାଦି ରୀତି ଯେ । ୬ ।

ଅଚ୍ଛିଦ୍ର ଅବଧାରଣ ଯେ
ଅନୁଆନେ ଘେନ ସମର୍ପଣ ଯେ
ଅଣୁ ଏ କର୍ମ ଅ— ଙ୍ଗହୀନ ନ କର
କଲେ ଯଥା ଆଚରଣ ଯେ । ୭ ।

ଅଖିଳ ଈଶ୍ୱର-କନ୍ୟା ସେ
ଅବା କି ବର୍ଣ୍ଣିବା ତହିଁ ଶୋଭା ସେ
ଅନନ୍ତ କର୍ତ୍ତା ବେ— ଦପତି ଆଗ୍ନୀଧ୍ର
ଗୁରୁ ପୁରୋହିତ ହେବା ସେ । ୮ ।

ଅମରପୁର ସମ୍ପତ୍ତି ଯେ
ଅଛି ଘେନି ଯହିଁ ସୁରପତି ଯେ
ଅଜ ଲୋଡ଼ା ହେବା କାର୍ଯ୍ୟେ ପରେ ଗଜ—
ଦାନ ଦେଲେ ପଶୁପତି ଯେ । ୯ ।

ଅତଏବ ବଢିଲା କର୍ମ ସେ
ଅନିର୍ବଚନୀୟ ଉପକ୍ରମ ଯେ
ଅଦ୍ୟ ଭାବି ଭୂତ ନିକାଳେ ନୋହୁଛି
ନୋହିଛି ନାହିଁ ଏ ସମ ଯେ । ୧୦ ।

ଅନ୍ତଃପୁରେ ଯୂଥ ଖେଳ ସେ
ଅତି ପ୍ରମୋଦ କୁତୁକ କଲ ଯେ
ଅହୁଅ-ଅଙ୍ଗନା କଲେ ବନ୍ଦାପନା
ଭବେ, ଦେଇ ହୁଳହୁଳି ଯେ । ୧୧ ।

---

୮ । ଅନନ୍ତ—ବିଷ୍ଣୁ । ବେଦପତି—ବ୍ରହ୍ମା । ଗୁରୁ—ବୃହସ୍ପତି । ୯ । ଯେଉଁଠାରେ (ଅଜ) ଛେଳିଟିଏ ଦରକାର ସେଠାରେ ଶିବ ( ଗଜ ) ହାତୀଟିଏ ଦେଲେ । ପଶୁପତି—ଶିବ । ୧୦ । ଅଦ୍ୟଭାବୀଭୂତ—ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ୍ । । ୧୧ । ଅନିର୍ବଚନୀୟ—ଯାହା କହିହେବ ନାହିଁ । ଉପକ୍ରମ—ଆରମ୍ଭ । ଯୂଥ—ଯୂଥ । ଅହୁଅ—ସଧବା ।

ଅମ୍ବୁରୁ ସୁସ୍ୱାଦୁ ରସ ଯେ
ଅମ୍ବା-ପିତା କଲେ ପଞ୍ଚଗ୍ରାସ
ଅମ୍ବିକା ଆଳି— ଆଳି ପାଶେ ଚଳିଲେ
ବାହାରେ ପ୍ରବେଶ ଈଶ ଯେ । ୧୨ ।
ଅଭିଳାଷ ରତିରସେ ଯେ
ଅତି ଉତ୍ସାହେ ମୋଦ ମାନସେ ଯେ
ଅସ୍ତାଚଳେ ଅର୍କ— ପ୍ରବେଶ ବିଷୟ
ବିଶ୍ୱର ହୋଏ ସର୍ବାଂଶେ ଯେ । ୧୩ ।
ଅଦ୍ୟ ତାରକା-ଅସୁର—ଯେ
ଅସୁ କରେ କଲା ଦଣ୍ଡଧର ଯେ
ଅତିଶୟ ଉକ୍ତି ଅଳଙ୍କାର-ରୀତି
ଏଠାରେ ହେଲା ଗୋଚର ଯେ । ୧୪ ।
ଅବ୍ଦଜଜ-ଧ୍ୱଜ-ଗଜ ଯେ
ଅବାରଣ ହେଲା ଦେବରାଜ ଯେ
ଅନୁକମ୍ପା ଅଙ୍କୁ— ଶରେ ବନ୍ଦୀ କର
ଭଣେ ବଳଭଦ୍ର ଭଞ୍ଜ ଯେ । ୧୫ ।



---

୧୨ । ଅମ୍ବାପିତା—ଜଗତର ଜନନୀ ଓ ଜନକ, ପାର୍ବତୀ ଶିବ । ୧୩ । ଅସ୍ତାଚଳେ···ବିଷୟ—ସୂର୍ଯ୍ୟ ଅସ୍ତ ଯିବା କଥା ।୧୪ । ଆଜି ତାରକା ଅସୁର (ଅସୁ) ପ୍ରାଣକୁ (ଦଣ୍ଡଧର) ଯମ (କରେ କଲା) ହାତମୁଠାରେ ଧଇଲା ଅର୍ଥାତ୍ ହର-ଗୌରୀଙ୍କର ମିଳନ ଫଳରେ କୁମାର ଜାତ ହେଲେ ତାରକା ମରିବ । ତାହା ଆଜି ଘଟିଲା । ଏଠାରେ କାର୍ଯ୍ୟକାରଣର ସମକାଳୋତ୍ପତ୍ତିରୂପ ଅତିଶୟୋକ୍ତି ଅଳଙ୍କାର ଗୋଚର ହେଲା । ୧୫ । ଅବ୍ଦ—ମେଘ । ମେଘରୁ ଜାତ ଯେ, ସେ ଅବ୍ଦଜ ଅର୍ଥାତ୍ ଜଳ । ଅବଦଜଜ—(ଅବ୍ଦଜ ) ଜଳରୁ ଜାତ, ମୀନ । ମୀନଧ୍ୱଜ—କନ୍ଦର୍ପ (ଗଜ) ହସ୍ତୀ ଅବାରଣ (ଦୁର୍ବାର) ହେଲା । ହେ ଦେବରାଜ ! ହେ ମହାଦେବ । ଅନୁକମ୍ପା ଅଙ୍କୁଶରେ—ଦୟାଅଙ୍କୁଶରେ । ଅଙ୍କୁଶରେ ହସ୍ତୀକୁ ଶାସନ କରାଯାଏ ।

# ତ୍ରୟୋବିଂଶ ଛାନ୍ଦ

## ବରଯାତ୍ରି-ଚର୍ଚ୍ଚା

### ରାଗ—ମଙ୍ଗଳଗୁଜ୍ଜରୀ

ଅଦ୍ରିନାଥ ସୁତା-ଭକ୍ତ ସାରୁ ଉଦନ୍ତରେ
ଅମନାତ୍ୟ ପାବ ମନ୍ତ୍ରୀମାନଙ୍କୁ ସତ୍ୱରେ ଯେ ।୧।
ଅନୁଜ୍ଞା କଲେ ହେ ତୁମ୍ଭେମାନେ ବେଗେ ଚଳ
ଅମର ଅସୁର ନର ବରଯାତ୍ରିକୁଳ ଯେ ।୨।
ଅନୁରୂପେ ବସା ଦେବ ସମର୍ଯ୍ୟାଦ କରି
ଅର୍ଚ୍ଚନା କରିବ ଦେଇ ଆସନାଦି ବାରି ହେ ।୩।
ଅନ୍ତଃପୁରେ ଅମୃତ ମଣୋହି ଭୁଞ୍ଜାଇବ
ଅପେକ୍ଷା ଯାହାର ଯେଉଁ ଆହାରକୁ ହେବ ଯେ ।୪।
ଅନ୍ତ୍ୟଜଙ୍କଠାରୁ ଅନ୍ତର୍ଯ୍ୟାମୀ ପର୍ଯ୍ୟନ୍ତେ
ଅତୃପ୍ତ ନୋହିବେ କର ଚରଗୃ ତେମନ୍ତେ ।୫।
ଅଚରେ ଚଳିଲେ କାର୍ଯ୍ୟ ଅଧିକାରୀମାନେ
ଅଇଲେ ରଖାଇ ସମସ୍ତଙ୍କୁ ସନମାନେ ଯେ ।୬।
ଅଥ ନବର-ଭିତରେ କଲେ ଠାଆପୀଢ଼ା
ଅମୃତ ସମ ସାମଗ୍ରୀମାନ ହେଲା ବଢ଼ା ଯେ ।୭।
ଅନ୍ନମାନେ ବରହ୍ମଣୀ ପରିଏ ସନ୍ତପ୍ତ
ଅତନୁ କୃଶ ପାଣ୍ଡର କାନ୍ତ ସ୍ନେହ-ଯୁତ ଯେ ।୮।

---

ତ୍ରୟୋବିଂଶ ଛାନ୍ଦ

୧ । ଅମନାତ୍ୟ—ମନ୍ତ୍ରୀ । ୩ । ଅନୁରୂପେ—ସମ୍ମାନ ଓ ଯୋଗ୍ୟତା ଅନୁସାରେ । ବାରି—ଜଳ । ୫ । ଅନ୍ତ୍ୟଜ—ଶୂଦ୍ର । ଅନ୍ତର୍ଯ୍ୟାମୀ—ପରମେଶ୍ୱର । ଠାଆପୀଢ଼ା—ଖାଇବାସ୍ଥାନ ପ୍ରସ୍ତୁତ କରିବା । ୮ । ଅନ୍ନମାନେ—ଖାଦ୍ୟଦ୍ରବ୍ୟଗୁଡ଼ିକ । ବରହ୍ମଣୀ—ପତିଠାରୁ ଦୂରରେ ଥିବା ସ୍ତ୍ରୀ । ଅନ୍ନମାନଙ୍କୁ ସମାନବିଶେଷଣଦ୍ୱାରା ବରହ୍ମଣୀ ସ୍ତ୍ରୀ ସଙ୍ଗେ ସମାନ କରାଯାଇଅଛି । ( ଅନ୍ନପକ୍ଷେ ) ସନ୍ତପ୍ତ—ତାତିଲା । ଅତନୁକୃଶ ( ତନୁ—ଅଳ୍ପ; ଯେ ତନୁ ନୁହେଁ ଅର୍ଥାତ୍ ଅଧିକ ) କୃଶ—ସରୁ ।

ଅବ୍‌ଜ ପର ମହୋଜ୍ଜ୍ୱଳ ସୁବାସ ପାୟସ
ଅଙ୍କ-କୁରଙ୍ଗ ସେ ଖଣ୍ଡ କର୍ପୂର ବିଶେଷ ଯେ ।୯।
ଅନେକ ବ୍ୟଞ୍ଜନମାନ ମାନସରଞ୍ଜନ
ଅଛି ପଇଡ ମଧୁର ପାଚିଲି ଯତନ ଯେ ।୧୦।
ଅମ୍ଳ ଶାକରି ମଧ୍ୟ ରୁଚି ବଢ଼ି ଗଲି
ଅପୂର୍ବ ଆମ୍ବିଳ ସୁଗନ୍ଧିପାଗି ଭାଜିବାକୁ ଯେ ।୧୧।
ଅଛି ରମ୍ଭା ବାଇଗଣ ସଙ୍ଗେ ଭାଜି ପଣ
ଅପାର ପତ୍ରିବାରେ ସେ ଅଛି ଭାଜି ଭଣ ଯେ । ୧୨ ।
ଅଛି ଯେ ମରିଚପାଣି ଘଣ୍ଟା ସାଁସା ମୁଗ
ଅନେକ ଭାତରେ ଭଜା ନାନା ଭାତି ଶାଗ ଯେ । ୧୩ ।
ଅସମ ପିଷ୍ଟକ ଯେ ଅନନ୍ତ ରୂପଧର
ଅଟନ୍ତି ପୀତସୁବାସ ବହୁ ପୁରନ୍ଦର ଯେ । ୧୪ ।

---

ପାଣ୍ଡୁର—ଅଳ୍ପ ହଳଦିଆ ମିଶା ଧୋବଲି ରଙ୍ଗ । କାନ୍ତ—ସୁନ୍ଦର । ସ୍ନେହଯୁତ—ଚିକ୍କଣ ଦ୍ରବ୍ୟମିଶ୍ରିତ । ବିରହିଣୀ ପକ୍ଷେ—( ସନ୍ତପ୍ତ ) ମାନସିକ ଦୁଃଖଯୁକ୍ତ, ଅତନୁକୃଶ—କନ୍ଦର୍ପଜନିତ ପୀଡାରେ କ୍ଷୀଣ-ଶରୀର । ବିରହରେ ରକ୍ତହୀନତା ହେତୁ ପାଣ୍ଡୁବର୍ଣ୍ଣ ଧାରଣ କରିବା ସ୍ୱାଭାବିକ । କାନ୍ତସ୍ନେହଯୁତ—ସ୍ୱାମୀଠାରେ ସ୍ନେହ-ଶୀଳା । ୯। ସୁବାସପାୟସ—ସୁଗନ୍ଧଯୁକ୍ତ କ୍ଷୀରି । ଅବ୍‌ଜ ପର—ଚନ୍ଦ୍ର ପରି । ମହୋ-ଜ୍ଜ୍ୱଳ—ଅତି ଉଜ୍ଜ୍ୱଳ । ଅନ୍ୟପକ୍ଷେ—ଅତି ନିର୍ମଳ ଖଣ୍ଡ—ମିଷ୍ଟଦ୍ରବ୍ୟବିଶେଷ ଓ କର୍ପୂର ଯହିଁରେ ( ଅଙ୍କକୁରଙ୍ଗ ) କୋଡ଼ମୃଗ ବା କଳଙ୍କ ପରି । ୧୨ । ପଇଡ—ମୁଗ ପ୍ରଭୃତି ଡାଲିକୁ ଚୂରି ଯେଉଁ ବ୍ୟଞ୍ଜନ କରାଯାଏ । ରମ୍ଭା—କଦଳୀ ଓ ଅପ୍‌ସରା । ବାଇଗଣ—ପରିବା ବିଶେଷ ଓ ( ବାଇ ) ବେଶ୍ୟା ( ଗଣ ) ସମୂହ । ପରିବା—ତରକାରି ଉପଯୋଗୀ ଫଳ ଓ ( ପରି ) ବେଶ୍ୟାମାନଙ୍କର ( ବାର ) ସମୂହ । ୧୩ । ସାଁସାମୁଗ—ଗୋଟା ମୁଗଡ଼ାଲି । ୧୪ । ଅସମ—ଅତୁଲ୍ୟ । ପିଷ୍ଟକ – ପିଠା । ଅନନ୍ତ ରୂପ—ବିଷ୍ଣୁଙ୍କ ରୂପ ଅନ୍ୟପକ୍ଷେ ଅନେକ ପ୍ରକାର । ପୀତ ସୁବାସ—ବିଷ୍ଣୁ, ପକ୍ଷେ; ଉତ୍ତମ ହଳଦିଆ ଲୁଗା ପିଠା ପକ୍ଷେ—ଭଲରୂପେ ଭଜା ହୋଇଥିବାରୁ ହଳଦିଆବର୍ଣ୍ଣ ଓ ସୁଗନ୍ଧଯୁକ୍ତ । ବହୁପୁରନ୍ଦର—(ବହୁପୁର) ଚତୁର୍ଦ୍ଦଶ ପୁର ( ଉଦ-ରରେ) ଗର୍ଭରେ ଅଛି ଯାହାର—ବିଷ୍ଣୁ । ଅନ୍ୟଅର୍ଥରେ,ବହୁତ ପୁର (ଛେନା,ଗୁଡ଼ ଓ ନଡ଼ିଆର ସମବାୟ ) ଯହିଁରେ ଦିଆଯାଇଛି ଏହିପରି ପିଠା ।

ଅନ୍ଧକାର–ସମ ଶୋଭ୍ଦ ଚନ୍ଦ୍ରମା–ଖଣ୍ଡରେ
ଅମ୍ବୁଜ ପରି ପ୍ରଫୁଲ୍ଲ ବିକସିତ ସରେ ଯେ । ୧୫ ।
ଅକଲ୍ମଷି–ଭକ୍ତ ଚିତ୍ତ ପ୍ରାୟ ସ୍ନିଗ୍ଧତର
ଅଙ୍ଗନା–ଅଙ୍ଗ ପରାଏ କୋମଳ ସୁନ୍ଦର ଯେ । ୧୬ ।
ଅମୃତ–କେଳି ବାକର କାନ୍ତ ରସକେଳି
ଅପାମାଲ୍ଲି ନିପୁଣୀ ସୁଆଣୀ ରସପୁଲି ଯେ । ୧୭ ।
ଅଂଶେ ଅଂଶେ ସରକୁମ୍ଭୀ ଲଡ୍ଡୁ ନାନମାନ
* ଅନ୍ୟମାନେ କୋରି ବରି ଡାଲିମ୍ବ ଯତନ ଯେ ।୧୮ ।
ଅସମ ପାରିଜାତକ ଝିଲ୍ଲୀ ମଣ୍ଡା ଖଇ
ଅଛି ବଡ଼ ପୋଡ଼ାପିଠା ଝାଲୁଆ ହିଁ ମିଠାଇ ଯେ । ୧୯ ।
ଅଛି ଯେ ପାମ୍ପୁଡ଼ି ନାଡ଼ୀ ନାସକୁଣ୍ଡ ଗଜା
ଅପୂର୍ବ ଆରିଷା ପୁରି ଘୃତବଣ୍ଟି ଖଜା ଯେ । ୨୦ ।
ଅଧାମ ଗୋଟିକା ଦଧି ଚଲ୍‌ହା ଦୁଧ ଘୃତ
ଅମୃତ ସମାନ ସର ଛେନା ନାନା ମତ ଯେ । ୨୧ ।
ଅମ୍ଲାନ ଖୋଷି ଶାକର ଗୁଡ଼ ଖଣ୍ଡ ଚିନି
ଅଛି ନବାତ ମିଶିରି କନ୍ଦ ଫେଣା ଘେନି ଯେ । ୨୨ ।
ଅମୃତ–ପାଣି କଦଳୀ କମଳା ସରସ
ଅମ୍ବୁ ପେଣ୍ଠୀ ତରଭୁଜ ନାରଙ୍ଗ ପନସ ଯେ । ୨୩ ।
ଅବଚନ ଆମ୍ବ ତାଳ ତେନ୍ତୁଳୀ ଖର୍ଜୁର
ଅମୃତ ଦ୍ରାକ୍ଷା ବାଦାମ ମାଧ୍ୱୀକ ସପୁରି ଯେ ।୨୦ ।

---

୧୫ । ପିଠାମାନ (ଅନ୍ଧକାର) ଶିବଙ୍କ ପରି (ଚନ୍ଦ୍ରମାଖଣ୍ଡରେ) ଅର୍ଦ୍ଧଚନ୍ଦ୍ରରେ ଅର୍ଥାତ୍ (ଚନ୍ଦ୍ରମା ) କର୍ପୂର ଓ (ଖଣ୍ଡ) ମିଷ୍ଟଦ୍ରବ୍ୟ ଦ୍ୱାରା ଶୋଭା ପାଉଥାନ୍ତି । ଆଉର ମଧ୍ୟ ( ଅମ୍ବୁଜ ) ପଦ୍ମ ପରି ଅଛନ୍ତି । ପଦ୍ମ (ସରେ) ପୁଷ୍କରଣୀରେ ପ୍ରଫୁଲ୍ଲ ହୋଇ ବିକଶିତ ହୋଇଥାଏ ( ଫୁଟିଥାଏ ) ପିଠା ମଧ୍ୟ ( ପ୍ରଫୁଲ୍ଲ ) ଫୁଲିଛି ଓ ( ସର ) ଦୁଧସରରେ ଶୋଭିତ ହୋଇଛି । ୧୬ । ଅକଲୁଷୀ—ପାପଶୂନ୍ୟ ଭକ୍ତର ଚିତ୍ତପରି ହୋଇଅଛନ୍ତି । ନିଷ୍ପାପ ଭକ୍ତର ହୃଦୟ ( ସ୍ନିଗ୍ଧତର ) ସ୍ନେହପ୍ରବଣ ଅଟେ । ପିଠା (ସ୍ନିଗ୍ଧତର) ଅତି ଚିକ୍‌କଣ ହୋଇଅଛି । ( ଅଙ୍ଗନା ) ସ୍ତ୍ରୀ ( ଅଙ୍ଗ ) ଶରୀର ପରି କୋମଳ ଓ ସୁନ୍ଦର ।୨୩। ଅମ୍ବୁପେଣ୍ଠୀ—ନଡଆ ।୨୪। ଦ୍ରାକ୍ଷା—କିସିମିସ୍ । ମାଧ୍ୱୀକ—ମଧୁ ବା ମହୁରେ ତିଆରି ମାଦକ ଦ୍ରବ୍ୟ ।     * ଅନ୍ନମାନେ (ଖ) ହିଁ ଝାକରି

ଅଏଁଲା ବଦରୀ ଝଗ୍ର ଆମ୍ବିଳ ବେତସ
ଅଥ ଲେମ୍ବୁ ଡାଳିମ୍ବ ଚରୁଣା ଜମ୍ବୀରସ । ୨୫ । *
ଅଳାଇଚ ଗୁଡ଼ତ୍ୱକ ଜାତିଫଳ ପୁଣି
ଅମର କୁସୁମ ଆଦି ମିଶା ଘଷାପାଣି ଯେ । ୨୬ ।
ଅନ୍ତଃପୁରେ ଦେବଗଣ ଆର ପୁରେ ଋଷି
ଅପର ପୁରେ ଗନ୍ଧର୍ବ ଆଦି ଭୁଞ୍ଜି ବସି ଯେ । ୨୭ ।
ଅପରପୁରେ ଅସୁର ରାକ୍ଷସ ଭୋଜନ
ଅଜ ମେଷ ମହିଷ ମୃଗାଦି ମହାମୀନ ଯେ । ୨୮ ।
ଅନ୍ନ ମିଶା କୁନ୍ଦନ ପଲଉ ବୁଟପୁଆ
ଅଗ୍ନିପୋଡ଼ା ଦେବା ଭଜା ସେ ‡ ମାଂସ କଲିଆ ଯେ ॥
ଅଣଗିଇ ଅଗ୍ନିନ ଦେ ଖଣ୍ଡ ଖଣ୍ଡ ସେଦା
ଅପରେ ଦଅବଦଉ (?) ଗୋଟା ନଆଁ ପଡା ଯେ । ୩୦ ।
ଅନ୍ନ ଚୂଡ଼ାଚକଟା କଦଳୀ-ଛେନା ମିଶି
ଅଗ୍ରେ କୁଣ୍ଡେ କୁଣ୍ଡେ ଘେନ ଖାଉଥାନ୍ତି ବସି । ୩୧ ।
ଅସ୍ଥି ଚଣା ମାଂସ ସେ ଚୋବାନ୍ତି ମସମସ
ଅଲଗେ ଗିଳନ୍ତିଅନ୍ତ ମେଦ ପିଠା ମାଂସ ଯେ । ୩୨ ।
ଅଷ୍ଟରତ୍ନ ପାତ୍ରରେ ଭୁଞ୍ଜିଲେ ତିନି ଦେବେ
ଅଥ ହେମମୟ ପାତ୍ରେ ଇନ୍ଦ୍ର ଆଦି ଦେବେ ଯେ ।୩୩।
ଅପରେ ଗନ୍ଧର୍ବ ଆଦି ରଜତ ପାତ୍ରରେ
ଅତ୍ରି ଆଦି ଋଷି ତାମ୍ର ଶୁଦ୍ଧ ପାତ୍ରରେ ଯେ । ୩୪ ।
ଅସୁରେ ଖର୍ପର ଚନ ବାସ ସୀଂସା ଭାଣ୍ଡେ
ଅବନୀଜନେ କଂସାଦି ଆରକୂଟ କୁଣ୍ଡେ ଯେ । ୩୫ ।
ଅନ୍ୟ ଜାତି ଭୃତ୍ୟଗଣ ମୃତ୍ତିକା-ପାତ୍ରରେ
ଅଶ୍ମପାତ୍ରରେ ବେ ଅବା ଭୁଞ୍ଜିଲେ ପତ୍ରରେ । ୩୬ ।

---

୨୬ । ଅମର କୁସୁମ—ଲବଙ୍ଗ । ଘଷାପାଣି—ଜାଇଫଳ ପ୍ରଭୃତି ଘୋରି ଯେଉଁ ପାଣିରେ ମିଶାଇଥାନ୍ତି । ୨୮ । ମହାମୀନ—ବଡ଼ମାଛ । ୩୨ । ଅଲଗେ—ଦାନ୍ତରେ ନ ଲଗି ଶୂନ୍ୟେ ଶୂନ୍ୟେ ଗିଳିଯିବା । ୩୫ । ଅବନୀ-ଜନେ—ମନୁଷ୍ୟ-ମାନେ । ୩୬ । ଅଶ୍ମପାତ୍ର—ପଥର ବାସନ ।

* ଜମ୍ବୁରସ ‡ ମମସା

ଅମରେ ଅମୃତ ଦ୍ରବ୍ୟ ରଷି ଫଳ କନ୍ଦ
ଅସୁରେ ଅମେଧ୍ୟ ନରେ ସୁଭୋଜ୍ୟ ଆନନ୍ଦ ଯେ ।୩୭।
ଅତ୍ୟନ୍ତ ସନ୍ତୋଷ ସର୍ବେ ହୋଇଲେ ଭୋଜନରେ
ଅନ୍ତଃପୁରେ ଦେବ ରଷି ପାଶେ ସୁପକାରେ ଯେ ।୩୮।
ଅହିବଲ୍ଲୀ କମୁକ ଖଦିର ମୋଦଚୂର୍ଣ୍ଣ
ଅଶନାନ୍ତେ ଦେଲେ ଭୁଞ୍ଜେ କର୍ପୂର ଚନ୍ଦନ ଯେ ।୩୯।
ଅମରାଦି ବସା-ପୁରେ ହୋଇଲେ ପ୍ରବେଶ
ଅହର୍ନିଶି ଭକ୍ତିରଙ୍ଗ ଭଜେ ଭବ ଈଶ ଯେ ।୪୦।

---

# ଚତୁର୍ବିଂଶ ଛାନ୍ଦ

## ବେଶ-ମଧୁଶଯ୍ୟା

ରାଗ—କଳହଂସ କେଦାର

ଅଣ୍ତ ରହସ୍ୟରେ                    ଗୁପ୍ତ ରହ ପୁରେ
ମିଳି ସକଳ ସଖୀଜନ,
ଅମ୍ବିକାର ସୁବେଶରେ ତନ୍ମନ
ଅଣାଇଲେ ବେଶ                    ଭୂଷଣ ସୁବାସ
ସୁବାସ ପେଟିକାମାନ ସେ, ସଜନୀ
ଅମ୍ବୁପୂର୍ଣ୍ଣକୁମ୍ଭ ଅଗ୍ରେ ସ୍ଥାପିଲେ
ଅଷ୍ଟ ମଙ୍ଗଳେ ହୁଳହୁଳି ଦେଲେ
ଅଖିଳ ସୁଷମା—                    ସୀମା ଗଜଦନ୍ତ-
ଚଉକୀରେ ବସାଇ ଦେଲେ ସେ, ଅମ୍ବିକା ।୧।

---

୩୮। ସୁପକାର—ପାଚକ ।୩୯। ଅହିବଲ୍ଲୀ—ପାନ । ଅଶନାନ୍ତେ—ଭୋଜନ ଶେଷରେ । ବସାପୁରେ—ବସାଘରରେ ।



ଚତୁର୍ବିଂଶ ଛାନ୍ଦ

୧। ରହପୁରେ—ଗୋପ୍ୟପୁରେ ବା ଗୋପ୍ୟଗୃହରେ । ତନ୍ମନ—ଏକାଗ୍ରମନ । ସୁବାସ—ସୁଗନ୍ଧଦ୍ରବ୍ୟ ଓ ଉତ୍ତମ ଲୁଗା । ଅଖିଳ ସୁଷମାସୀମା—ସମସ୍ତ ଶୋଭା ଯାହାଠାରେ ସରିଯାଇଛି ।

ଅଗ୍ରେ ଦର୍ପଣ ଦେ— ଖାନ୍ତେ ଦରହାସ—
ଚନ୍ଦ୍ରମୁଖ ପ୍ରତିବିମ୍ବିଲା,
ଅଚ୍ଛ-ଜଳେ କି ଜଳଜ ଫୁଟିଲା ।
ଅର୍-ଅବସ୍ଥା ଆ— ପଣା ଅଭୀଷ୍ଟରୁ
ଅନଙ୍ଗ ଫୁଲି ଉଠିଲା ସେ, ସମୟେ ।
ଅଟେ ଯେ ଯେଉଁ ଅଙ୍ଗକୁ ଘଟଣ
ଅଳଙ୍କାର ବାଛନ୍ତି ସଖୀଗଣ
ଅସ୍ତ୍ର ଶସ୍ତ୍ର ଧର ଶାଣ ଦିଆଉଛି
ଠାଣ ବୁଝି ରଣରଣ ସେ, ସମୟେ । ୨ ।
ଅଗୁରୁ ଧୂପେ ଧୂ— ପିତ କର କେଶ
ସୁବାସ ଚକ୍କଣ ଲଗାଇ
ଅତି ଆଶ୍ୱାସି ମାଙ୍ଗ କୁଣ୍ଡାଇ
ଅମୂଲ୍ୟ ଜର ଭୁ— ଜା ଭୂଷା ବାନ୍ଧିଲେ
ଜୁଡ଼ା ଅଂଶକୁ ଲଗାଇ ସେ, ସଜନୀ
ଅଗ୍ରେ ଭାର ସୂତାର ପାଟଫୁଲ
ଅନାଇଲେ ଯା ମନ ଯାଏ ଭୁଲି ।
ଅଙ୍କୁରିତ ହେମ- ଦୂବ ଖୋସି ଦେଲେ
ଭାମ-ଅନୁକୂଳ ବୋଲି ସେ, ସଜନୀ । ୩ ।

---

୨ । ଦରହାସ—ଅଳ୍ପହାସଯୁକ୍ତ । ଦର୍ପଣ—ଅରଶି । ପ୍ରତିବିମ୍ବିଲା—ପ୍ରତିଫଳିତ ହେଲା । ଅଚ୍ଛଜଳେ—ନିର୍ମଳ ଜଳରେ । ଜଳଜ—ପଦ୍ମ । ଅର୍······ଉଠିଲା—ମହାଦେବ କାମର (ଅରି) ଶତ୍ରୁ, ତାଙ୍କର (ଅବସ୍ଥା) ଦୁର୍ଦ୍ଦଶା (ଆପଣାର) କାମର (ଅଭୀଷ୍ଟ) ବାଞ୍ଛିତ ଥିବାରୁ ସେ ଖୁସି ହେଲା । ରଣରଣ—କାମ । ଅସ୍ତ୍ର···ରଣରଣ—କାମ ନିଜ ଅସ୍ତ୍ରଶସ୍ତ୍ର ଧରି ତାହାର ଠାଣ ବୁଝି (କେଉଁ ଅସ୍ତ୍ରଶସ୍ତ୍ର କେତେଦୂର ଶାଣ ପାଇଲେ ଠିକ୍ ହେବ, ଏହା ବିଚାରି) ଶାଣ ଦିଆଉଅଛି କି ? ୩ । ଧୂପିତ କରି···ଧୂପ ଦେବା ଦ୍ୱାରା ସୁଗନ୍ଧିତ କରି । ସୁବାସ ଚକ୍କଣ--ବାସନା ତେଲ । ଆଶ୍ୱାସି- ଆଶ୍ୱାସନା କଥା କହି । ମାଙ୍ଗ--ସୁନ୍ଥା । ଜୁଡ଼ା—ବଡ଼ ପାଟଫୁଲ । ଅଂସକୁ ଲଗାଇ—ବେକ ପାଖକୁ ଓହଳାଇ । ଅଙ୍କୁରିତ ···ବୋଲି—କୌଣସି କାର୍ଯ୍ୟ ଆରମ୍ଭପୂର୍ବରୁ ଅଙ୍କୁରାରୋପଣ କରାଯାଏ । ପାଟସୂତା ବାନ୍ଧିବାକୁ କାମର ଅନୁକୂଳରେ ଅଙ୍କୁରାରୋପଣ ବୋଲି କହୁଅଛନ୍ତି । ଅଙ୍କୁରାରୋପଣରେ ଦୂବ ପ୍ରଭୃତି ବ୍ୟବହୃତ ହୁଏ ।

ଅଧ ଊର୍ଦ୍ଧ୍ୱ ମଧ୍ୟ    କ ଆନନ୍ଦ ସିନ୍ଧୁ—
ଭରେ ଛଅପଦ ବେଢ଼ାଇ
ଅଧ ଊର୍ଦ୍ଧ୍ୱ ମଧ୍ୟ ଶୋଭା ବୁଡାଇ
ଅମ୍ବୁନିଧିଫଳ—    ଜାଲ ତାର ମୂଳ—
ପାଶୁଁ ଖଞ୍ଜିଲେ ମଣ୍ଡାଇ ସେ, ସୁନ୍ଦରୀ
ଅନୁ ଆନେ ଖୋସିଲେ ଦିବ୍ୟଫୁଲ
ଅନ୍ତରରେ ଫୁଲବା ତାର ତୋଷ
ଅରବିନ୍ଦ ଜାତି    ସେବତୀ ମାଳତୀ
ଗନ୍ଧ ଅତି ମତ୍ତହୁଏ ସେ, କୁନ୍ତଳେ । ୪ ।
ଅବଳା ଲଲାଟେ—    ପଟେ ଫୁଟପଟ
ଶୁକ୍ଳ ଚନ୍ଦ୍ରଫୁମ୍ପି ଫୁଟଲେ
ଅକ୍ଷି ମଟଲେ ତା ଶୋଭା ଫୁଟଲେ
ଅପୂର୍ବ ପଦ୍ମସ୍ୱ—    ଗ ଗୁଣା ଖଞ୍ଜିଲେ
ସୁଢଳ-ନାସାପୁଟଲେ ସେ, ସଜନୀ ।
ଅଷ୍ଟରତ୍ନ ବସିଅଛୁ ପାଶରେ
ଅଛୁ ମଧ୍ୟରେ ନାୟକ ଶିଖରେ *
ଅପୂର୍ବ ନାକୁଆ—    ସୀ ସୁକୁନ୍ତଳାର
ଦେଲେ ଆରପୁଟେ ଖରେ ସେ, ସଜନୀ । ୫ ।
ଅମର-ପୁର-ପୁ—    ରନ୍ଦର-ମନ୍ଦିର—
ବନ୍ଦନ କୁନ୍ଦନ-ବନ୍ଦିଆ
ଅଂଶୁକରେ ଢରେ କର୍ଣ୍ଣ ଉଦିଆ

---

୪ । ଅମ୍ବୁନିଧିଫଳଜାଲ—ମୁକ୍ତାଜାଲ ବିଶେଷ । ଅରବିନ୍ଦ—ପଦ୍ମ । ଜାତି—ମାଳତୀ ବା ଜାଇ (ବସନ୍ତ କାଳରେ ମାଳତୀର ବର୍ଣ୍ଣନା କବିସମ୍ପ୍ରଦାୟବିରୁଦ୍ଧ ।) ପାର୍ବତୀଙ୍କ ବିବାହ ବସନ୍ତକାଳରେ । ଅକ୍ଷିମଟକ—ଆଖିପଲକ । ଶିଖର—ପାଚିଲା ଡାଳିମ୍ବର ମଞ୍ଜିପରି ରଙ୍ଗ ମାଣିକ୍ୟକୁ ଶିଖର କହନ୍ତି । ତହିଁରେ ନିର୍ମିତ (ନାୟକ) ମଧ୍ୟମଣି । ୬ । ଅମର······ବନ୍ଦିଆ ( ଅମରପୁର ) ସ୍ୱର୍ଗପୁରରେ (ପୁରନ୍ଦର ମନ୍ଦିର) ଇନ୍ଦ୍ରଙ୍କ ଘରେ ସୁଦ୍ଧା ବନ୍ଦନୀୟ । କୁନ୍ଦନ—ସୁନା । ଅଂଶୁକରେ—କିରଣରେ । ବାଳୀଇନ୍ଦ୍ର—ନାସାଶ୍ରେଷ୍ଠ ।

ଅଗ୍ରେ ତାର୍ ମଲ୍ଲୀ— ଜଡ଼ି ଫିରଫେର୍
ପୁଣି କା ମାଣ୍ଡଲ୍ ଆହା ସେ, କଣ୍ଠରେ
ଅଧୋଭାଗରେ ଖଞ୍ଜିଲେ ଜାଲଚନ୍ଦ୍ର
ଅଟେ ରୂପେ ତ ସ୍ୱତ (ଚ୍ଛ ?) ବାଳୀଇନ୍ଦ୍ର
ଅଣ୍ଡ ତୋଷ୍ ଦିଶେ ଦିଶିଲା ପୁଣି ସେ
ଶରଦରେ ଯଥା ଚନ୍ଦ୍ର ସେ, ସୁନ୍ଦରୀ । ୬ ।
ଅଯ୍ଁଳାମଞ୍ଜିଆ ଗୁଚ୍ଛ ଗୁପସରୀ
ପାଗଡ଼ା ଲେଛୁ ଯୋଡ଼ି ମାଳ
ଅଂସାତୂଲୀ ପୁଞ୍ଜିକାଆ ଶିକୁଳୀ
ଅବଭାର୍ ତାର୍ ମନୋହର ହାର
କଣ୍ଠେ ଖଞ୍ଜିଦେଲେ ବାଳୀ ସେ, ସୁନ୍ଦରୀ
ଅଷ୍ଟକୋଣ ପୁଷ୍ପ ରତ୍ନେ ସୁନ୍ଦର
ଅଷ୍ଟ ନାୟକ ମଧ୍ୟେ ହୀର୍-ସାର
ଅପୂର୍ବ ପଦକେ ମୃଦ କଉତୁକେ
ମଣ୍ଡିଲେ ହୃଦ ଉପର ସେ, ସୁନ୍ଦରୀ । ୭ ।
ଅତୁଲ କାଚ କା— ଝୀନ ରତ୍ନ-ଚୁଡ଼ୀ
ଦେଲେ କ୍ରମେ ସେ ଶ୍ରୀଭୁଜରେ
ଅର୍ଦ୍ଧ ପର୍ ଯେ ବସ୍ୱକେ ତେଜରେ
ଅଙ୍ଗୁଳିରେ ମୁଦି ଉପମା ବିବାଦୀ
ଭାଉ ଦେଲେ ସୁବାହୁରେ ସେ, ସଜନୀ
ଅଣ୍ଟାରେ ଯେ ଖଞ୍ଜିଲେ କିଙ୍କିଣୀ
ଅନ୍ତକରେ ତା ହେମ ଓଢ଼ଆଣୀ
ଅତନୁ କେଳି-କା — ଲରେ କୁତୂହଳେ
କାନ୍ତଚିତ୍ତ ନେବ ଜାଣି, ସେ ନୟନ । ୮ ।

---

୬ । ହୀରସାର—ବ୍ରହ୍ମକାନ୍ତ ହୀର । ନାୟକ—ପଦକ । ୮ । ଉପମାବିବାଦୀ—ଯାହାର ଉପମା ନାହିଁ ।

ଅଭିରାମ-ଧାମ— ସମର ସମସ୍ତେ
ପ୍ରେମକୁ କରିବ ଉଠିଆ
ଅନୁକୂଳ କାଳେ ହେବ ଖୁଣ୍ଟିଆ
ଅବଳା-ପାଦରେ ବଳା ଖଞ୍ଜି ଧୀରେ
ଦେଲେ ପାହୁଡ ନୂପୁରିଆ ସେ, ସଜଣୀ ।
ଅପଘନେ ଘନସାର ଚନ୍ଦନ
ଅର୍ଦ୍ଧନାରେ କଲେ ଅତି ବନ୍ଦନ,
ଅତର ସୁବାସ— ଉଷ୍ମା ହୀନବାସ
ପିନ୍ଧିଲେ ନାରୀରତନ ସେ, ସୁନ୍ଦରୀ । ୯ ।
ଅତି ସୂକ୍ଷ୍ମ ତନେ ପକ୍ଷ୍ମଲାକ୍ଷୀ ନେନେ
ଅଞ୍ଜନେ ରଞ୍ଜିଦେଲେ ଲଞ୍ଜି
ଅବଲୋକନେ ଦମ୍ଭ ଦେଲା ଭାଞ୍ଜି
ଅଲକେ ଚନ୍ଦନ— ଢୋର ଢୋର ଗୁହିଁ
ସୁରସୁର ହେବେ ଗଞ୍ଜି ସେ, ଚତୁରେ ।
ଅନୁରୂପେ ସିନ୍ଦୂର-ବିନ୍ଦୁ ଦେଲେ
ଅର୍ଦ୍ଧ ଚନ୍ଦ୍ର ମୃଗମଦେ ଲେଖିଲେ
ଅଳି ଚବୁକରେ ମକର ଗଣ୍ଡରେ
ଆଳି ଭାଳି ଚିତ୍ର କଲେ ସେ, ସୁନ୍ଦରୀ ।୧୦ ।
ଅରୁଣ-କମଳ— ପାଦେ ଲାକ୍ଷାବୋଳ
କମ ସୁଷମ କରି ଲେଖି
ଅଟକିଲି ସେ ଶୋଭା ଦେଖି ଆଖି
ଅଧମ ଅପରା— ଧୀ ପାପି-ଲୋକର
ଶୋକ ହରି କରେ ସୁଖୀ ସେ, ଚରଣ ।

---

୯ । ଅଭିରାମ—ମନୋହର । ଉଠିଆ କରିବ—ବଡାଇବ । ଖୁଣ୍ଟିଆ—ସଜା ବଜେ ହେଲେ ଯେ ଆଗେ ଆଗେ ଗୁଲେ । ଘନସାର—କର୍ପୂର । ଉଷ୍ମା—ସିଁଆ ହୋଇଥିବା । ୧୦ । ପକ୍ଷ୍ମଲାକ୍ଷୀ—ଯାହାର ନେତ୍ର ଲୋମଯୁକ୍ତ । ମୃଗମଦେ—କସ୍ତୁରୀରେ । ଅଳି···ଚିତ୍ର କଲେ—ମୁଖପଦ୍ମରେ ଅଧର ମଧୁ କୋଷ ପରି । ତାହା ନିକଟରେ ଚବୁକ ଥିବାରୁ ତହିଁରେ (ଅଳି) ଭ୍ରମର ଓ ଗଣ୍ଡ କାମର ଉଦ୍ଦୀପକ ଥିବାରୁ ତହିଁରେ କାମର ବାହନ ମକରକୁ ଲେଖିଲେ । ଆଳି—ସଖୀ ।

ଅରବିନ୍ଦ କୁନ୍ଦ ଚମ୍ପା ନଆଳୀ
ଅଶୋକାଦି-କୁସୁମ-ଗନ୍ଧମାଳୀ
ଅଞ୍ଜନ-ତମାଳ— ବେଣୀ-ଉତ୍ତମାଙ୍ଗେ
ହେଜ ଖଞ୍ଜି ଦେଲେ ଆଳ ସେ, ଭୃଙ୍ଗାରେ । ୧୧ ।
ଅହିବଲ୍ଲୀ ଭଙ୍ଗି ଦେଲେ କୋମଳାଙ୍ଗୀ
ରଙ୍ଗିତରୁ ଜାଣି ସଙ୍ଗିନୀ
ଅଣନ ତା' କଲ୍ ନବରଙ୍ଗିନୀ
ଅଧର-ଦେଶରେ ସ୍ମିତ ଙ୍କ ରସରେ
ପ୍ରସରେ ତା ରଙ୍ଗେ ଘେନି ସେ, ବାଳାର ।
ଅବମୀକ କନକ-କଳ୍ପଲତା
ଅଣାଇଲ୍ କ ପ୍ରତ୍ୟକ୍ଷେ ବିଧାତା
ଅଖିଳ-ଜନମା— ନଙ୍କର ମାନସ—
ବାଞ୍ଛା ପୂର୍ଣ୍ଣକୁ ଏ ଦାତା ସେ, ସଜନୀ । ୧୨ ।
ଅତା ଦେବାଳୟ ଶୋଭା କୌଶେଶୟ
ନିଃଶେଷରେ ହୃଦ ଆଣିଲ
ଅମ୍ବିକାର କାନ୍ତି ନିର୍ମାଣିଲ
ଅସୁରବର ତା— ରକା ନାଶ ଶୁଭ—
ସମ୍ଭାର ଏ ଲୁଆଇଲା ସେ, ଦଇବ ।
ଅବକାର ଗୃହୁ ବେଶ ନିର୍ମାଣି
ଅଥ କେଳିବାସ ଦଲେ ମଣ୍ଡଣି
ଅଳକା ଭୁବନ— ସୁଷମା ନିନ୍ଦନ
କରି ଯା ଶୋଭାରେ ଗଣି ସେ, ମନ୍ଦିର ।୧୩।
ଅଷ୍ଟରତ୍ନ-ବଶେ ଅନ୍ଧକାର ପାଶେ
ପଶିପାରୁ ନାହିଁ ଯାହାର
ଅଦ୍ଭୁସମତା ତ ସୃଷ୍ଟି ବାହାର

---

୧୧ । ଉତ୍ତମାଙ୍ଗେ—ମସ୍ତକରେ । ୧୨ । ଅହିବଲ୍ଲୀ—ପାନ । ତା ରଙ୍ଗେ—ପାନରଙ୍ଗକୁ । କନକକଳ୍ପଲତା—ସୁନାରଆର କଳ୍ପଲତା । ୧୩ । ଦେବାଳୟ—ତ୍ରିଦଶାଳୟ, ସ୍ୱର୍ଗ । କୌଶେଶୟ—ବ୍ରହ୍ମା । କୁଶେଶୟ—ପଦ୍ମ ।୧୪। ଅଦ୍ଭୁସମତା—ସୌନ୍ଦର୍ଯ୍ୟ ।

ଅକ୍ଷି-ପକ୍ଷୀ ଲକ୍ଷି        ରକ୍ଷିବାକୁ ଅଠା—
କାଠି ଅଟଇ ସେ ସ୍ମର ହେ, ସୁଜନେ

× × × × ×
× × × × ×
× × ×        × × ×
× × × × × ।୧୪।

ଅମୂଲ୍ୟ ରତ୍ନ ପ—        ଲଙ୍କ ପରେ ଶେଯ
ସେ ଯତନ କରି ପସ୍ରଇ *
ଅବ୍‌ଜଶେଖରଙ୍କୁ ବଜେ କସ୍ରଇ
ଅଚଳଜା ଲଜ୍ଜା—        ବଣ୍ଟଙ୍କି ଆଣନ୍ତ
ସଖୀ ପହଣ୍ଡ ମଣାଇ ସେ, ସଜନୀ
ଅତ୍ତ କଷ୍ଟେ ବଳାଇଲେ ଦେହଳୀ
ଅକଥନ ମନ୍ମଥ-ରସ-କେଳ
ଅଧିକ ଉଜ୍ଜ୍ୱଳ—        ଶାସ୍ତ୍ରୁଁ ହେଲ (ଜ ?) ବଳ—
ଭଦ୍ରଭଞ୍ଜ କହେ ଭାଳ ହେ, ସୁଜନେ ।୧୫।

———

୧୫ । ପସ୍ରଇ—ପକାଇ ବା ବଛାଇ । ଦେହଳୀ—ଏରୁଣ୍ଡୀବନ୍ଧ । ଉଜ୍ଜ୍ୱଳଶାସ୍ତ୍ର—କାମଶାସ୍ତ୍ର ।



# ପଞ୍ଚବିଂଶ ଛାନ୍ଦ

## କେଳି-ମନ୍ଦିର-ପ୍ରତ୍ୟାବର୍ତ୍ତନ

ରାଗ—ଭଉରବ

ଅନଙ୍ଗ-ସଙ୍ଗର ସାରି ଶ୍ୟାମାବର କେଳମନ୍ଦିରରୁ ଆସେ ଯେ
ଅବା ଏକ କଳା ଘେନି ଉଦେ କଳାକର ମହୀ-ନଭୋଦେଶେ ଯେ
ଅଙ୍ଗନା, ଅଙ୍ଗ ଅସ୍ତବ୍ୟସ୍ତ ଦିଶେ ଯେ
ଅନୁମାନ ହୋଏ ମିଳନ୍ଦ-ମରନ୍ଦପିଆ ଅରବିନ୍ଦ କି ସେ ଯେ । ୧ ।
ଅନିଦ୍ରାବଶରୁ ସଙ୍କୁଚିତ ଶ୍ରୁତିରୁ କୃଶ ବିଶୃଙ୍ଖଳ ରଙ୍ଗ ଯେ
ଅରୁଣ ଖଞ୍ଜନ ଧରିଇ ଆଣି କି ଗେରୁଆଇଲା ଅନଙ୍ଗ ଯେ
ଅଙ୍ଗନା, ଅଶକତ ହୋଏ ଅଙ୍ଗ ଯେ
ଅଇଲା ଝୋପରୁ କି ଧରି କରିଣୀ ଗତ ହୋଇଛି ବିଭଙ୍ଗ ଯେ । ୨ ।
ଅସିତ କୁନ୍ତଳ ଫିଟିଯାଇ ଫୁଲ ପଡ଼ୁଛି ଯା' ଗୋଟି ଗୋଟି ଯେ
ଅତନୁ ଅଯଶ-ବାନା ଉଡ଼ାଇଣ ଯଶରତ୍ନ କରେ ବୃଷ୍ଟି ଯେ
ଅପାଙ୍ଗ—ରଙ୍ଗରେ ମୋହୁଛି ସୃଷ୍ଟି ଯେ
ଅନାଇଁ ଅଙ୍ଗନା ଅଙ୍ଗଭଙ୍ଗୀ କି ତ ଭୁଲିଯିବେ ପରମେଷ୍ଠୀ ଯେ । ୩ ।

---

ପଞ୍ଚବିଂଶ ଛାନ୍ଦ

୧ । ଅନଙ୍ଗସଙ୍ଗର—କାମଯୁଦ୍ଧ, ସୁରତ । କେଳିମନ୍ଦିର—ମଧୁଶଯ୍ୟାଘର । କଳାକର—ଚନ୍ଦ୍ର । ଏକକଳା ଘେନି—ଦ୍ୱିତୀୟା ଚନ୍ଦ୍ରର ଆକୃତି ଘେନି । ମହୀ-ନଭୋଦେଶେ —ପୃଥିବୀ ରୂପ ଆକାଶରେ । ରାତ୍ରିଜାଗରଣଜନିତ କ୍ଷୀଣତା ହେତୁ ଏପରି କଥିତ ହୋଇଅଛି । ମିଳନ୍ଦ···ଅରବିନ୍ଦ—ଭ୍ରମର ଯେଉଁ ପଦ୍ମରୁ ମହୁଟିକିକ ପିଇ ଦେଇଛି । ୨ । ଅରୁଣଖଞ୍ଜନ—ନାଲିଆ ଖଞ୍ଜନ ପକ୍ଷୀ । ଗେରୁଆଇଲା—ରଙ୍ଗ ଚଢାଇଲା । ଝୋପ—ଯେଉଁ ଶାଖାକୃତ ଖାତରେ ହାତୀକୁ ଭୁଲାଇ କରି ଆଣି ପକାନ୍ତି । ବିଭଙ୍ଗ—ବିକଳ । ୩ । ଅସିତ କୁନ୍ତଳ—କଳା କେଶ । ଅଯଶକୁ କଳା ବୋଲି ବର୍ଣ୍ଣନା କରିବା କବିସମ୍ପ୍ରଦାୟସିଦ୍ଧ । ଅପାଙ୍ଗରଙ୍ଗରେ—ଚାହାଁଣୀ ଦ୍ୱାରେ । ପରମେଷ୍ଠୀ—ବ୍ରହ୍ମା ।

ଅଧର ଦନ୍ତେ ଖଣ୍ଡ ଖଣ୍ଡ ଗଣ୍ଡରେ ଲଗିଛୁ ତାମ୍ବୂଳବୋଳ ଯେ
ଅମୃତପିଣ୍ଡକୁ ବଳେ ବଳେ ଗ୍ରହ୍ଣ କରି ଦିଅନ୍ତେ କବଳ ଯେ
ଅଧିକ, ଘେନି ନ ପାରିଲି ଗିଳ ଯେ
ଦନ୍ତ-ଘାତରେ ସେ ଅନ୍ତର ହୁଅନ୍ତେ ରକତ ପଡ଼ୁଛୁ ଗଳ ଯେ । ୪ ।
ଅମ୍ଭୁଜ-କୋରକ ଉଚ-କୁଚଯାକ ବସିଛୁ କରଜ-ରେଖା ଯେ
ଅନ୍ଧକପର ଉପରେ ଶତଶତ ଶଶିକଳା ଗଲି ଦେଖା ଯେ,
ଅପୂର୍ବ, ଅତଚକ-ଶିଖ ଏ ତ ଯେ
ଅଚଳଚୂଳେ କୁଳଶ ବାଜବାରୁ କ୍ଷତ କି ହୋଇଛୁ ଜାତ ଯେ ।୫।
ଅଳସଭରରୁ କଳସଉରଜା ଧୀରେ ଢଳ ଢଳ ଆସେ ଯେ
ଅନିରୁଦ୍ଧରଥ ଖଞ୍ଜା କଷା ଶ୍ଳଥ ହୋଇ ଗତରଣ-ବଶେ ଯେ
ଅଚଳେ, ଦୋହୋଲି ଦୋହୋଲି ଚଳେ ଯେ
ଅଂଶୁକ ଅଞ୍ଚଳ ପତାକା ଉଡ଼ୁଛୁ ଅଂସୁ ଖସିପଡେ ତଳେ ଯେ । ୬ ।
ଅତଶଯ୍ଯ ତନୁ ହେଲେହେଁ ସୁତନୁ ତନୁ ଦିଶେ କେଡ଼େ ଚୋରି ଯେ
ଅଧିକୁଁ ଅଧିକ ଶୋଭା ଦିଶେ ଯଥା ଶାଣ-କ୍ଷୀଣ ହେଲେ ହୀରି ଯେ
ଅବନୀ—ଉପରେ କି ଅବା ଆସି ଯେ
ଅମ୍ଭୁଦ କୋଳରେ ଖେଳୁ ଖେଳୁ ବିଦ୍ୟୁଦ୍‌ବଲ୍ଲୀ ଏ ପଡିଲି ଖସି ଯେ ।୭।

---

୪ । ଖଣ୍ଡ ଖଣ୍ଡ—କ୍ଷତବିକ୍ଷତ । ଅମୃତ ପିଣ୍ଡକୁ···ଗଳ ଯେ—ସ୍ୱାମୀ ବଳାତ୍କାରରେ ଗିଳିପକାଉଥିବା ବେଳେ ଚନ୍ଦ୍ର ଆକାରରେ ବଡ ହୋଇ-ଥିବାରୁ ଗିଳିପାରିଲି ନାହିଁ । ଉଚ୍ଛିଷ୍ଟ ପଦାକୁ ବାହାରି ପଡିଲାବେଳକୁ ଦାନ୍ତରେ କାମୁଡ଼ି ଧରିବାରୁ ଏପରି କ୍ଷତବିକ୍ଷତ ହୋଇ ରକ୍ତ ହୋଇଛୁ ପରା ! ୫ । ଅମ୍ଭୁଜକୋରକ ଉଚ କୁଚ—ପଦ୍ମକଳି ପରି ଆକାର ବିଶିଷ୍ଟ ଓ ଉଚ୍ଚ ସ୍ତନ । କରଜରେଖା - ନଖଚିହ୍ନ । ଅନ୍ଧକପର—ମହାଦେବ । ଶଶିକଳା—ଚନ୍ଦ୍ରକଳା । ଅଚଳଚୂଳେ—ପର୍ବତଶିଖରରେ । କୁଳଶ—ବଜ୍ର । ୬ । ଅଳସ-ଭରରୁ—ଅଧିକ ଆଳସ୍ୟ ହେତୁ । ଅନିରୁଦ୍ଧ ରଥ—କନ୍ଦର୍ପର ରଥ । ଖଞ୍ଜା—ସନ୍ଧି । ଶ୍ଳଥ—ଢ଼ିଲା । ଅଚଳେ—ଉତ୍ତମରୂପେ ଚଳି ନ ପାରିବା ହେତୁରୁ । ଅଂଶୁକ ଅଞ୍ଚଳ—ଲୁଗା କାନି । ଅଂସୁ—ବେକରୁ, କାନ୍ଧଉପରୁ । ଦୋହଲିଯାଇଥିବା ରଥରୁ ପତାକା ଖସିପଡିବା ଓ ସେ ଦୋହୋଲି ଚଳିବା ସ୍ୱାଭାବିକ । ୭ । ଅତଶଯ୍ଯ ତନୁ—ଅତି କ୍ଷୀଣ । ସୁତନୁ—ସୁରୂପା । ତନୁ—ଶରୀର ।

ଅପୂର୍ବ ସ୍ଫଟିକ ହାଟକ ଅଙ୍ଗ ଯା ଝିମି ଝିମି ଝାଳ ଗଲା ଯେ
ଅର୍କ-ତେଜ-ଲାଗି କନ୍ଦର୍ପ-କନକଲତା ଯାଇଛି ଝାଉଁଳି ଯେ
ଅମ୍ବୁତା-ଉପରେ ଅଛି କି ସିଞ୍ଚି ଯେ
ଅମ୍ବୁଜେ କେତକୀ ଦଳରେ ତୁଷାର ବୃଷ୍ଟି କଲା କିବା ପାଣି ଯେ । ୮ ।
ଅଦ୍ଭୁତ ଏ କେଡ଼େ କେଶରୀ ହାବୋଡେ ପଡ଼ିଯାଇଥିଲା ଏଣୀ ଯେ
ଅଡରେକ ଗତି ରତି କରିବାରେ ଅଇଲା ତାହାକୁ ଜାଣି ଯେ
ଅବଶ୍ୟ, ପଡ଼ିଥିଲା ଦୃଢ଼େ ଧରି ଯେ
ଅଙ୍ଗଯାକ ନଖ-ଶିଖରେ ବିଦାରି ଦେଇଛି ତ ଗିରି ଗିରି ଯେ । ୯ ।
ଅବଳା ଏ'ତ ଅଭନୁ-ଭୂତ ଦେଖି ଡରେ ଚମକିଲା ଜାଣି ଯେ
ଅମ୍ବୁଦେ ବିଜୁଳି ମିଶିଗଲା ପରି ଗୋରୀ ଅଙ୍ଗେ ଗଲା ମିଶି ଯେ
ଅଙ୍ଗରୁ, ରସରକ୍ତ ନେଲା ଶୋଷି ଯେ
ଅନ୍ତିକରେ ଭୂତ-ପତି ନ ଥିଲେ ତ ବଞ୍ଚି ନ ଥାନ୍ତା ସୁକେଶୀ ଯେ ।୧୦।
ଅଲଗେ ବସନ ରଖି ମର୍ମସ୍ଥାନ ଧରି ଗୃହ୍ଟୂମନ୍ଦେ ଝାଞ୍ଜ ଯେ
ଅବରୁଦ୍ଧ କରି କାଳ ହୃଦ-ସମ୍ପୁଟକରେ ରଖିଲେ ଭରି ସେ
ଅଦ୍ୟାପି, ଅଛି ସେ ବିକାର କିଛି ଯେ
ଅଭିନବ ଧବ ଖଞ୍ଜନ ପରି ତ ନେତ୍ର ଘାରି ପଡ଼ୁଅଛି ଯେ । ୧୧ ।
ଅପାଙ୍ଗ ଶର ଭୂରୁ ଧନୁ ନିତମ୍ବ ଚକ୍ର ତୀକ୍ଷ୍ଣ ନଖ କୁନ୍ତ ଯେ
ଅଧର ତେଗା କପୋଳ ଢାଲ କଣ୍ଠ ପାଶ କୁଳିଶ ସୁଦନ୍ତ ଯେ

---

୮ । ତୁଷାର—କାକର । ପାଣି—ବସ୍ତ୍ର । ୯ । କେଶରୀ—ସିଂହ । ଏଣୀ—ହରିଣୀ । ଅଡରେକ ଗତି ରତି କରିବାରେ—ଶୀଘ୍ର ଚାଲିବାରେ ଆସକ୍ତା ହୋଇ (ରତି ଶବ୍ଦ ମଧ୍ୟ କ୍ରୀଡ଼ାକୁ ସୂଚାଉଅଛି) ଭୂତ ଶବ୍ଦରହିତ ହେବା ସ୍ୱାଭାବିକ ।୧୦। ଗୋରୀ—ଗୌରବର୍ଣ୍ଣା । ବିଜୁଳି ସଙ୍ଗେ ଉପମିତ ହେବା ହେତୁ 'ଗୋରୀ' ପଦ ପ୍ରଦତ୍ତ ହୋଇଛି । ଭୂତପତି—ମହାଦେବ ଓ ଭୂତମାନଙ୍କର ରାଜା । ୧୧ । ସମ୍ପୁଟକ—ଫରୁଆ । ମନ୍ତ୍ରବଳରେ ଭୂତମାନଙ୍କୁ ଫରୁଆରେ ପୂରାଇବା କଥା ଗୁଣିଆମାନଙ୍କଠାରୁ ଶୁଣାଯାଏ । ଅବରୁଦ୍ଧ···ଭରି—ଆଲିଙ୍ଗନ କରି । ଅଭିନବ ଧବ ଖଞ୍ଜନ—ନୂଆ ହୋଇ ଧବ ହୋଇଥିବା ଖଞ୍ଜନ ପକ୍ଷୀ । ୧୨ । ଅପାଙ୍ଗ—କଟାକ୍ଷ । କୁଳିଶ—ବଜ୍ର । ଗୌରୀଙ୍କ ତତ୍କାଳୀନ ଭାବଭଙ୍ଗୀକୁ ଯୁଦ୍ଧରୂପେ ବର୍ଣ୍ଣନା

ଅନେକ—ଶସ୍ତ୍ର ଘେନି ଚନ୍ଦ୍ରାନନୀ ଯେ
ଅନଙ୍ଗ ସଙ୍ଗରେ ସଙ୍ଗର କଲା ସେ ବର-ସହାୟକୁ ଘେନି ଯେ ।୧୨।
ଅମୂଲ୍ୟ-କେଳିମନ୍ଦିର ଦୁର୍ଗେ କାନ୍ତ ଅଙ୍ଗ-ମୁରୁଚ୍ଛେ ରହି ଯେ
ଅହର୍ମୁଖ ଯାଏ ନାନା ବନ୍ଧେ ଯୁଦ୍ଧ କରିବା ବିଶ୍ରାମ ନାହିଁ ଯେ
ଅସମ—ଯୋଦ୍ଧା ସମରେ ଅତନୁ ଯେ
ଅଶୋକାଦି ଶର ପେଷି ନିରନ୍ତର ଚନ୍ଦାକାର କଲା ଧନୁ ଯେ । ୧୩ ।
ଅଳି-ଗୁଣେ ସନ୍ଧି ନିଆଳୀ-ଶରକୁ ବଳି କର୍ଣ୍ଣ ଯାଏ ଟାଣି ଯେ
ଅନ୍ଧକପରକୁ ବନ୍ଦି ଟାଣି ଧରି ବାନ୍ଧଇ ସେ ପୁଣପୁଣି ଯେ
ଅଙ୍ଗନା—ସାଙ୍ଗ୍ରେ ସଙ୍ଗ ଥିଲା ଅଙ୍ଗେ ଯେ
ଅଟକିଲା ପ୍ରାଣ ପୁଣ ଏ ଦ୍ୱିଜଣ ଯୁଝିଲେ ଜଣକ ସଙ୍ଗେ ଯେ । ୧୪ ।
ଅତ୍ୟନ୍ତ-ଚତୁର-ଶିରୋମଣି-ସାର ନ ପାରିଲା ଯେଣୁ ଜୟେ ଯେ
ଅଙ୍ଗନାକୁ କାନ୍ତ ସଙ୍ଗୁ ଫିଟାଇଲା କରି ମନ୍ତ୍ରଣା ଉପାୟେ ଯେ
ଅଧିକ—ବଳ ହେଲା ଏଣୁ ତାର ଯେ
ଅଦ୍ଭୁତ ପ୍ରକାର ଜାଣଇ ସେ ମାର ବରପକ୍ଷ ସ୍ୱୀକାର ଯେ । ୧୫ ।
ଅର୍କପ୍ରଭ କର୍ଣ୍ଣତାଟଙ୍କ-ଚକ୍ରକୁ ମସୀକେଶୀ ଝଲକାଇ ଯେ
ଅକ୍ଷି-ଅନ୍ତ-କୁନ୍ତ କାନ୍ତକୁ ଫିଙ୍ଗିଲା ଅଞ୍ଜନ-ବିଷେ ବିଷାଇ ଯେ

---

କରିଯାଇଅଛି । ଅନଙ୍ଗ ସଙ୍ଗରେ- କାମ ସଙ୍ଗେ । ସଙ୍ଗର—ଯୁଦ୍ଧ । ବରସହାୟ—ସ୍ୱାମୀ ରୂପ ସହାୟ ଅର୍ଥାତ୍ ସ୍ୱାମୀ ସାହାଯ୍ୟ । ୧୩ । ମୁରୁଚ୍ଛ—ସୈନ୍ୟମାନେ ଗଡ଼ ଭିତରେ ଯେଉଁ ଆବୃତ ମଞ୍ଚ ଉପରେ ବସି ଯୁଦ୍ଧ କରନ୍ତି । କାମର ଅଶୋକଶର ପ୍ରହାରଦ୍ୱାରା ନାୟକନାୟିକାଙ୍କୁ ମଧ୍ୟ ଅଶୋକ କରୁଥିବାର ସୂଚିତ ହେଉଛି । ୧୪ । ଅଳିଗୁଣ—ଭ୍ରମର ରୂପ ଗୁଣରେ । କାମଧନୁର ଗୁଣ ଭ୍ରମରମାଳାରେ ନିର୍ମିତ । ଦ୍ୱିଜଣ—ନାୟକନାୟିକା । ଜଣକ ସଙ୍ଗେ-କାମ ସଙ୍ଗରେ ;୧୫।ଜୟେ—ଯୁଦ୍ଧଜୟରେ । ଫିଟାଇଲା—ଅଲଗା କରିଦେଲା, ଭେଦବୁଦ୍ଧି ଜାତ କରାଇଲା । ମନ୍ତ୍ରଣା ଉପାୟେ—କୁଟିଳ ନୀତି ପ୍ରୟୋଗ କରି । ବରପକ୍ଷ—ବରର ପ୍ରତିକୂଳ । ଏଠାରେ ମୁଗ୍ଧା ନାୟିକାର 'ରତୌ ବାମା' ଲକ୍ଷଣକୁ ଭଙ୍ଗୀକ୍ରମେ ଯୁଦ୍ଧରୂପେ ବର୍ଣ୍ଣନା କରାଗଲା । ୧୧ । ଅର୍କପ୍ରଭ—ସୂର୍ଯ୍ୟ ପରି ଉଜ୍ଜ୍ୱଳକାନ୍ତି । କର୍ଣ୍ଣତାଟଙ୍କ—କାପ ପରି ଏକପ୍ରକାର ଅଳଙ୍କାର । ମସୀକେଶୀ—କଳାକେଶଯୁକ୍ତା । ଝଲକାଇ—ହଲାଇବାଦ୍ୱାରା ଚକ୍

ଅଟଇ, ଯଦ୍ୟପି-ହୃଦୟା ପୁଣି ଯେ
ଅମୃତ-କୁଚ-କାଞ୍ଚନ-କଳଶକୁ ଢ଼ାଙ୍କିଦେଲା ସେକ୍ଷଣି ଯେ । ୧୬ ।
ଅଣ୍ଟା କିଙ୍କିଣୀ-ନାଦେ ବାଳାମଣି ଜୟ-ନିଶାଣ ବାଜିଲା ଯେ
ଅମଳ ହାର ଛିଣ୍ଡି ବଛି ହେବାରୁ ଅବା ପୁଷ୍ପ-ବୃଷ୍ଟି ହେଲା ଯେ
ଅଦ୍ୟାପି, ଚଞ୍ଚୁ-ଫିରିଫିର୍ ବାନା ଯେ
ଅଳି ଉତ୍ସାହେ ଉଡ଼ାଇ ଆସୁଛନ୍ତି ଜିଣିଛୁ ବୋଲି ନବୀନା ଯେ ।୧୭।
ଅଳସାଇ ହୋଇ ଗର୍ବିଳସୀ ହଂସୀ ଧୀରେ ଧୀରେ ଆସେ ଯଥା ଯେ
ଅବନୀ-ମଣ୍ଡଳକୁ ମଣ୍ଡି ମଣ୍ଡି ରତିପଣ୍ଡିତା ଆସୁଛି ତଥା ଯେ
ଅନ୍ତରେ, ମିଳି ପରିଗୃହୀ ସହୀ ଯେ
ଅବଲମ୍ବ କରି କରେ ଗ୍ରୀବକୁ ଅଗ୍ରେ ପଦ୍ମନ୍ତ ମଣାଇ ଯେ । ୧୮ ।
ଅତି ସଘନ ଅଙ୍ଗନା ଅଙ୍ଗ ୧ ଅଙ୍ଗେ ଲଜ୍ଜାଲତା ମାଡିଥିଲା ଯେ
ଅତନୁ-ଅନୁରାଗ-ନାଗ ତାହାକୁ ଆସି ପଶି ଦଳି ଦେଲା ଯେ
ଅନାଇ, ବିବେକ-ମାଳୀ ତା ପୁଣି ଯେ
ଅଧିକ ଯତନେ ମଣ୍ଡାନ୍ତେ ତା ଗ୍ରଛି ନମ୍ରମୁଖୀ ବାଳାମଣି ଯେ । ୧୯ ।

---

ଚକ୍ରକର । ଅକ୍ଷି-ଅନ୍ତ—ନେତ୍ର ପ୍ରାନ୍ତ ବା କଟାକ୍ଷ । ଅଞ୍ଜନ-ବକ୍ଷେ—ଅଞ୍ଜନରୂପ ବକ୍ଷଦ୍ୱାରା । ବକ୍ଷାଇ—ବକ୍ଷାକ୍ତ କରି । ଅମୃତ......କ୍ଷଣି—ଅମୃତପୂର୍ଣ୍ଣ ସୁନା କଳଶ ପରି ସ୍ତନକୁ । ଏଠାରେ ମଧ୍ୟ ମୁଗ୍ଧା ନାୟିକାର "ମାନେ ମୃଦୁଃ" ଲକ୍ଷଣ ଆଲିଙ୍ଗନ ବ୍ୟାପାରଦ୍ୱାରା ସୂଚିତ ।

ଲୋଚନେ ହରଣଗର୍ବମୋଚନେ ମା ବିଭୂଷୟ ନତାଙ୍ଗି କଜ୍ଜଲୈଃ
ଶୁଦ୍ଧ ଏବ ଯଦି ଜୀବହାରକଃ ଶାୟକୋ ନ ଗରଳେନ ଲିପ୍ୟତେ ।
—ରସକଳ୍ପଦ୍ରୁମ

୧୭ । ନବୀନା—ମୁଗ୍ଧା । ୧୮ । ଗର୍ବାଳସୀ ହଂସୀ—ହଂସୀର ଗତି ସ୍ୱଭାବତଃ ମନ୍ଦ । ପୁଣି ସେ ଯଦି ଗର୍ବବତୀ ହୁଏ, ତାହାର ଗତି ମନ୍ଦତର ହେବ, ଏଥିରେ ସନ୍ଦେହ ନାହିଁ । ୧୯ । ସଘନ—ସଘନେ, ନିବିଡ଼ ଭାବରେ । ଅଙ୍ଗ-ଅଙ୍ଗେ—ମନୋହର ଅଙ୍ଗରେ । ଅତନୁ-ଅନୁରାଗ-ନାଗ—କାମଜନିତ ପ୍ରୀତିରୂପକ ହସ୍ତୀ । ପ୍ରୀତି ଅଧିକ ହେବାରୁ ଲଜ୍ଜା କମିଗଲା; ପୁଣି ବିବେକ ଜାଗ୍ରତ ହେବାରୁ ଲଜ୍ଜାର ଉଦୟ ହେଲା ।

୧—ଅଙ୍ଗ-ଅଙ୍ଗେ (ଖ) । ଏପରି ପାଠକଲେ 'ଅଙ୍ଗରୂପ ବୃକ୍ଷରେ' ଏହି ଅର୍ଥ ହେବ ।

ଅମ୍ବୁଜ-ବଦନ ଡୋଳ ବାଳୀ ଆଳୀ-ଅଲକ୍ଷ ନ ପାରେ ଗୁହ୍ନି ଯେ
ଅଳତା ଅଞ୍ଜନ ସିନ୍ଦୂର ଚନ୍ଦନ ବ୍ୟତିକ୍ରମେ ଅଙ୍ଗେ ଶୋଭି ଯେ
ଅଧିକୁ, ଅଧିକ ବଢିଲା ଲଜ ଯେ
ଅବକାଶ ପାଇ ପରିହାସ କଲେ ସଖୀ ଭଣେ ଉଞ୍ଜିଗୁକ ଯେ । ୨୦ ।

—————

# ଷଡ଼୍‌ବିଂଶ ଛାନ୍ଦ

## ସଖୀ-ପରିହାସ

### ରାଗ—କୁମ୍ଭକାମୋଦୀ

ଅତି ଉତପାତ ଜାତ ହେଲା ମିତ ଏ ଗତ ରାତିରେ
ଅଇରାବତ ପୁ—ରତକୁ ପଦ୍ମିନୀ କଲା ଯା ଗତିରେ । ୧ ।
ଅର୍କ ଅନଳ ଚନ୍ଦ୍ରମା ପରସ୍ପରେ ହୋଇଲେ ମିଳିତ
ଅମ୍ବୁଜ-ପଲ୍ଲବେ ମେରୁ-ଗିରିବର ହେଲା ତ ତୁଳିତ । ୨ ।

———————— ————————

୨୦ । ଅମ୍ବୁଜବଦନ—ପଦ୍ମମୁଖ । ଆଳୀଆଳି—ସଖୀସମୂହ । ବ୍ୟତିକ୍ରମେ—ଓଲଟପାଲଟ ହୋଇ ଅଞ୍ଜନ ସ୍ଥାନରେ ଅଳତା ଓ ତା ସ୍ଥାନରେ ଅଞ୍ଜନ, ଚନ୍ଦନ ସ୍ଥାନରେ ସିନ୍ଦୂର ଓ ସିନ୍ଦୂର ସ୍ଥାନରେ ଚନ୍ଦନ ଇତ୍ୟାଦି ।



ଷଡ଼୍‌ବିଂଶ ଛାନ୍ଦ

୧ । ଉତ୍ପାତ—ଅଦ୍ଭୁତ ( ସୃଷ୍ଟିର ବ୍ୟତିକ୍ରମ ) । ଅଇରାବତ—ଐରାବତ, ଇନ୍ଦ୍ରହସ୍ତୀ । ପୁରତକୁ—ସମ୍ମୁଖକୁ । ପଦ୍ମିନୀ—ପଦ୍ମଲତା । ହସ୍ତୀ ପଦ୍ମଲତା ନିକଟକୁ ଯିବାହିଁ ରୀତି; କିନ୍ତୁ ଏଠାରେ ବିପରୀତ ହେଲା । ଐରାବତ ଧବଳ ଥିବାରୁ ବର୍ଣ୍ଣ-ସାମ୍ୟରୁ ଶିବଙ୍କ ଉପମାରୂପେ କଥିତ । ଗୌରୀ ପଦ୍ମିନୀସ୍ଥାନୀୟା । ୨। ଅର୍କ—ସୂର୍ଯ୍ୟ। ଅନଳ—ଅଗ୍ନି । ଚନ୍ଦ୍ରମା—ଚନ୍ଦ୍ର । ଏମାନେ ପରସ୍ପର ମିଳିଗଲେ ଅର୍ଥାତ୍ ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ର ରୂପ ଶିବଙ୍କର ଚକ୍ଷୁ ତିନିଗୋଟି ଗୌରୀଙ୍କର ମୁଖ ଅବଲୋକନ କଲାବେଳେ ମିଳିତ ହେଲେ । ଅମ୍ବୁଜ-ପଲ୍ଲବ—କୋମଳ ପଦ୍ମପତ୍ର । ମେରୁଗିରି—ମେରୁ ପର୍ବତ । ତୁଳିତ ହେଲା—ଓଜନ କରାଗଲା । ଶିବଙ୍କର ନୂତନ ପଦ୍ମପତ୍ରତୁଲ୍ୟ କରତଳରେ ମେରୁ-ଗିରି-ସଦୃଶ ପାର୍ବତୀଙ୍କର ସ୍ତନ ତୁଳିତ ହେଲା, ଏହା ଅଦ୍ଭୁତ ।

ଅକାଲେ କଦମ୍ବ— ସୁମନ-କଦମ୍ବ ପ୍ରଫୁଲ୍ଲ ହୋଇଲା
ଅମର-ସରିତେ ସେ ତ ହେମଲତା କି ଶୋଭା ପାଇଲା ।୩।
ଅତି ଶୁକ୍ଳ ଅଳି କେତକୀରେ କେଳି କଲା କି କୁତୁକେ
ଅନ୍ୟୋନ୍ୟେ ମିଶିଲେ କ୍ଷୀରସିନ୍ଧୁ ସ୍ୱର୍ଣ୍ଣ—ରେଖା ଯେ ଉତ୍ସୁକେ ।୪।
ଅବ୍‌ଜ-ସୁରୁକଳା ତଇଳାସେ ହେଲା ନିଶାର୍ଦ୍ଧେ ଉଦିତ
ଅଶନି ପ୍ରବଳେ କୋମଳ-ପଲ୍ଲବେ ପଡ଼ିଲା ନିଯୁତ । ୫ ।
ଅତି କୋମଳ ଶି—ରୀଷ ଫୁଲ କରି- କରରେ ପୀଡ଼ିତ
ଅର୍ଜ୍ଜୁନ-ଜୀମୂତ ଉପରେ ତଡ଼ିତ ହୋଇଲା ଉଡ଼ିତ ।୬।

---

୩ । ଅକାଲେ—ବର୍ଷା ବ୍ୟତିକ୍ରମ କାଳରେ । କଦମ୍ବ ସୁମନକଦମ୍ବ—କଦମ୍ବ ଫୁଲସମୂହ । ପ୍ରଫୁଲ୍ଲ ହୋଇଲା—ଫୁଟିଗଲା । ଏହାଦ୍ୱାରା ନାୟକନାୟିକାଙ୍କର ରୋମାଞ୍ଚ-ରୂପ ସାତ୍ତ୍ୱିକ ବିକାରକୁ ଲକ୍ଷ୍ୟ କରାଯାଇଛି । ଅମର-ସରିତେ—ଗଙ୍ଗାରେ । ହେମଲତା—ସୁନାଲତା । ଗଙ୍ଗା ପ୍ରବାହ ପରି ଧବଳ ଶିବଙ୍କ ଅଙ୍ଗରେ ସ୍ୱର୍ଣ୍ଣଲତା ପରି ପାର୍ବତୀଙ୍କ ଦେହ ଶୋଭା ପାଇଲା । ଜଳରେ ଲତାର ଅବସ୍ଥିତି ଅତି ଅସମ୍ଭବ; ଏଣୁ ଅଦ୍ଭୁତ । ୪ । ଶୁକ୍ଳ ଅଳି—ଧଳା ଭଅଁର । କେତକୀ ଫୁଲରେ (କେଳି) କ୍ରୀଡ଼ା କଲା । କି କୁତୁକେ— କେଡେ କୌତୁକରେ । ଭ୍ରମର ଧଳା ହେବା ଓ କେତକୀ ଫୁଲ ସହିତ କ୍ରୀଡ଼ା କରିବା ଏକାନ୍ତ ଅସମ୍ଭବ । ( କ୍ଷୀରସିନ୍ଧୁ ) କ୍ଷୀର ସମୁଦ୍ର ପରି ଧବଳ ଶିବ ଓ ସ୍ୱର୍ଣ୍ଣରେଖା ପରି ଗୌରୀ ପରସ୍ପର ମିଳିତ ହେଲେ । ସ୍ୱର୍ଣ୍ଣରେଖା ନଦୀ ଲବଣ ସମୁଦ୍ରରେ ପଡ଼ିଛି । କ୍ଷୀରସମୁଦ୍ରରେ ପଡ଼ିବା ହିଁ ଏଠାରେ ଅଦ୍ଭୁତ ।୫। ଅବ୍‌ଜ-ସୁରୁ-କଳା—ଚନ୍ଦ୍ରଙ୍କର ସୁନ୍ଦର କଳା ଗୋଟିଏ । ନିଶାର୍ଦ୍ଧେ—ରାତି ଅଧରେ । ଅଶନି—ବଜ୍ର । ପଲ୍ଲବ—କଅଁଳିଆ ପତ୍ର । ନିଯୁତ—ନିଶ୍ଚିତ । ଚନ୍ଦ୍ରଙ୍କର ଏକ କଳା ଅର୍ଥାତ୍ ଦ୍ୱିତୀୟା ଚନ୍ଦ୍ର ସନ୍ଧ୍ୟାବେଳେ ଉଦିତ ହୁଏ, ନିଶାର୍ଦ୍ଧରେ ନୁହେଁ । ଅପର ପକ୍ଷରେ (ଅବ୍‌ଜ—ସୁରୁକଳା) ଚନ୍ଦ୍ରର ସୁନ୍ଦର କଳା । ଚନ୍ଦ୍ରକଳା ସ୍ଖଳନଶିଳ—ରତିକାଳରେ ନାୟିକାଙ୍ଗରେ ସ୍ଥଳବିଶେଷରେ ତିର୍ଯ୍ୟକ୍‌ଭେଦରେ ନଖାଦିର ଆଘାତ । ପାର୍ବତୀଙ୍କର କୋମଳ ଶରୀରକୁ ପଲ୍ଲବରୂପେ କଳ୍ପନା କରାଯାଇଅଛି । ଚନ୍ଦ୍ରସ୍ଖଳନ ସ୍ଥିତହିଁ ବଜ୍ରରୂପେ କଳ୍ପିତ । ୬ । କରି-କରରେ—ହାତୀଶୁଣ୍ଢରେ । ଅର୍ଜ୍ଜୁନ ଜୀମୂତ—ଧଳା ମେଘ । ପାର୍ବତୀଙ୍କ ଶରୀରର ମୃଦୁତା ତାଙ୍କୁ ଶିରୀଷଫୁଲ ସଙ୍ଗେ ତୁଳିତ କରିଅଛି । ବିଜୁଳି ସାଧାରଣତଃ ବର୍ଷୋନ୍ମୁଖ କଳାମେଘରେ ଦେଖାଯାଏ;ମାତ୍ର ଶରତ୍‌କାଳରେ ଜଳହୀନ ଧଳା ମେଘରେ ଦେଖାଦିଏ ନାହିଁ ।

ଅଙ୍କୁଶ-ବିହୀନେ ବିଦେହ ବାନ୍ଧିଲା କରୀନ୍ଦ୍ର-ଦମ୍ପତି
ଅମ୍ବର ନ ଥିଲା ଲୋକେ ଭୋଗ ହେଲା ବାସବ-ସମ୍ପତ୍ତି ।୭।
ଅନନ୍ତ ଉପରେ ଚଳି ହେମବଲ୍ଲୀ କଲା ଯା କେଳିକ
ଅଲୌକିକ ଏଥୁ ଉପରେ ଉପରେ ଦେଖିବା ବଳି କି ? ୮ ।
ଅସ୍ଫୁଟ କେତକୀ-ଦଳେ ସିନ୍ଧୁଫଳ ଫଳିଲା ବହୁତ
ଅବିଶ୍ରାମେ ତଳ—ଫୁଲରୁ ଅନିଳ ହେଲା ଆତଯାତ । ୯ ।
ଅସିତ ଅମ୍ବୁଜ ଅନ୍ତରୁ ନ ସରେ ଅନେକ ଶାୟକ
ଅନ୍ତର୍ଗତ ଯାଏ ଗଲାଯାଇ ହୋଏ କି ସୁଖଦାୟକ । ୧୦ ।
ଅରୁଣ ଅନ୍ତରୁ କରୁଥିଲା ବୃଷ୍ଟି— ପୀୟୂଷ-ବୃଷ୍ଟିକି
ଅଙ୍କୁରିତ କରି ଆନନ୍ଦ-ବୀଜ ସେ ମୋହିଲା ସୃଷ୍ଟିକି । ୧୧ ।
ଅମୂଲ୍ୟ-ବୀଣା ତୁ—ମ୍ବୀପୃଷ୍ଠ କରରେ କରନ୍ତେ ତାଡ଼ନା
ଅମୃତ ମଧୁରେ ବଚନ ଭଙ୍ଗରେ ଉଁହୁଁ ନା ଉଁହୁଁ ନା ।୧୨।

---

୭ । ବିଦେହ—କାମ । କରୀନ୍ଦ୍ରଦମ୍ପତି—ହସ୍ତୀ ହସ୍ତିନୀ । ଅମ୍ବର ନ ଥିବା ଲୋକେ—ଲୁଗାପର୍ଯ୍ୟନ୍ତ ନ ଥିବା ଲୋକଦ୍ୱାରା । ବାସବ ସମ୍ପତ୍ତି—ଇନ୍ଦ୍ରସମ୍ପତ୍ତି । ଅଙ୍କୁଶ ନ ଥାଇ ହାତୀଟିଏ ବାନ୍ଧିବା କଷ୍ଟ; କିନ୍ତୁ ଦୁଇଟି ହାତୀ ଯେ ବାନ୍ଧିଲା, ତାର ଅଙ୍କୁଶ ଥିବା ଦୂରର କଥା, ଦେହ ମଧ୍ୟ ନାହିଁ, ଅର୍ଥାତ୍ ସେ ବିଦେହ, ଏହା ଅତି ଅଦ୍ଭୁତ । ମହାଦେବ ଦିଗମ୍ବର ହୋଇ ଇନ୍ଦ୍ରସମ୍ପତ୍ତି ତୁଲ୍ୟ ପାର୍ବତୀଙ୍କ ଅଙ୍ଗଭୋଗ କଲେ । ୮ । ଅନନ୍ତ—ଆକାଶ । (ମହାଦେବ) । ହେମବଲ୍ଲୀ—ସୁନା ଲତା । କେଳିକ—କ୍ରୀଡ଼ାକୁ । ଅଲୌକିକ—ଅଦ୍ଭୁତ କଥା । ଉପରେ······ବଳି କି—ଏହାଠାରୁ ବଳି ବଳି ଆଉ କଣ ଦେଖିବା କେଜାଣି ? ଶୂନ୍ୟ ଆକାଶରେ ସୁନାଲତା ମାଡିବା ଅସମ୍ଭବ ।୯ । ଅସ୍ଫୁଟ କେତକୀ ଦଳେ—ଫୁଟି ନ ଥିବା କେତକୀ ପାଖୁଡ଼ାରେ । ସିନ୍ଧୁଫଳ—ମୁକ୍ତା । ଅନିଳ—ପବନ । କେତକୀ ପାଖୁଡ଼ା ପରି ଗୌର ଦେହରେ ବହୁତ ଝାଳବିନ୍ଦୁ ମୁକ୍ତା ପରି ଶୋଭା ପାଇଲା । ୧୦। ଅସିତ ଅମ୍ବୁଜ—ନୀଳପଦ୍ମ । ଶାୟକ—ଶର । ଅନ୍ତର୍ଗତଯାଏ—ଅତି ଭିତରକୁ । ଅନ୍ତର୍ଗତ ପର୍ଯ୍ୟନ୍ତ ବାଣ ଗଲାଗଲେ ସୁଖ ଦେବା ଅସମ୍ଭବ । ନୀଳକଇଁ-ପରି ସୁନ୍ଦର ଚକ୍ଷୁରୁ କଟାକ୍ଷରୂପ ଶର ବାହାରି ଶିବଙ୍କର ଅନ୍ତର ପର୍ଯ୍ୟନ୍ତ ଗଲାଗଲେ ଯୁଦ୍ଧା ବଡ଼ ସୁଖଦାୟକ ହୋଇଥିଲା । ୧୧ । (ଅରୁଣ) ସୂର୍ଯ୍ୟ (ଅନ୍ତରୁ) ନିଜ ଦେହ ମଧ୍ୟରୁ (ପୀୟୂଷବୃଷ୍ଟି) ଅମୃତବୃଷ୍ଟି କରୁଥିଲା । ଚନ୍ଦ୍ରରୁ ଅମୃତ ଝରେ; ସୂର୍ଯ୍ୟରୁ ନୁହେଁ । ଅରୁଣବର୍ଣ୍ଣ ଅଧର ହାସରୂପକ ଅମୃତ ବୃଷ୍ଟି କରୁଥିଲା । ଆନନ୍ଦବୀଜକୁ—ଆନନ୍ଦରୂପ ମଞ୍ଜିକୁ ଅର୍ଥାତ୍ ବୀଜାକାରରେ (ଅତିସୂକ୍ଷ୍ମଭାବେ) ଥିବା ଆନନ୍ଦକୁ । ୧୨ । ବୀଣାତୁମ୍ବୀ—ବୀଣାର ଲାଉ । ବୀଣାର ତାର ହାତରେ ଧଇଲେ ଶବ୍ଦ ହୁଏ; କିନ୍ତୁ ବୀଣାର ଲାଉ ଧଇଲେ ତା ହୁଏ ନାହିଁ ।

ଅହର୍ନିଶିରେ ଜୀବନ କରି ସେବ ହୋଇଲୁ ଅନ୍ତର
ଅର୍କ ଅମ୍ବୁଜ ପରି ଏ କାନ୍ତଭେଟେ କଲୁ ତ ବେଭାର । ୧୩ ।
ଅଶ୍ରୁ ପ୍ରସାର କେ—ଉଁ ସଖୀ କହଇ ପରିଣମିତ ରେ
ଅରଜନ୍ତୁ ଆଜ କାନ୍ତଠାରୁ ଯାହା ଦିଅ ତୁ ଏଥିରେ । ୧୪ ।
ଅର୍ଦ୍ଧପ୍ରହରେ କ—ରେଖି ଦେଖି ଲେଖି—ଥିଲି ଯା ଚତୁର !
ଅଲକ-ଚନ୍ଦନ— କୋଷ୍ଟି ତୋର୍ ତୋର୍ ଲିଭିଲି କା କରି ।୧୫।
ଅଣୁମାସ ଥିଲେ ହଂସୁଲି ତୁଲୀରେ ତନୁ ଲଭେ ତ୍ରାସ
ଅର୍ଦ୍ଧଚନ୍ଦ୍ର ଚିହ୍ନ ସର୍ବାଙ୍ଗେ ମଣ୍ଡନ ହୋଇଛି ଏ କାସ ? ୧୬ ।
ଅତି ବକ୍ର କରି କହନ୍ତେ କିଶୋରୀ ଲାଜରେ କାତର
ଅଧୋମୁଖୀ ହୋଇ ସଜନୀଙ୍କି ଗୁହିଁ ନ ଦିଏ ଉତ୍ତର । ୧୭ ।
ଅବିଳମ୍ବେ ସଖୀ-- ମାଜଣା ବିଧିକି ବିଧାନେ ବଢ଼ାଇ
ଅଙ୍ଗକୁ ସୁବେଶ କଲେ ସେ ଅଶେଷ—ଉପମା ବୁଡ଼ାଇ ।୧୮।
ଅବଜ-ସମ୍ଭବ ଗୁହିଁ ଉମାଧବ—ମୁଖକୁ ଇଙ୍ଗିତ—
ଅନ୍ତରେ ବୋଇଲେ ରଜତ ହୋଇଲେ ସୁବର୍ଣ୍ଣ ଆଜ ତ ।୧୯।
ଅଳତା ପରିଏ ଦିଶେ କା ହୃଦୟେ ମନ୍ଦାର-ସୁମନ
ଅସିତ-କଣ୍ଠେ ତ ଠାବେ ଠାବେ ବ୍ୟକ୍ତ ହୋଇଛି ସେ ବର୍ଣ୍ଣ ।୨୦।

---

୧୩ । ( ଅହର୍ନିଶିରେ ) ଦିନସାରା, ( ଜୀବନ କରି ) ପ୍ରାଣଠାରୁ ଅଲଗା ନ କରି (ସେବ) ସେବା କରି (ଅନ୍ତର ହୋଇଲୁ) ଦୂର ହୋଇ ରହିଲୁ । ଅର୍କ-ଅମ୍ବୁଜ—ସୂର୍ଯ୍ୟ ଓ ପଦ୍ମ । ଆମ୍ଭେମାନେ ତୋତେ ଜୀବନ ପରି କରିଥିଲୁଁ, ତୁ ଆମ୍ଭଙ୍କୁ ଦୂର କରିଦେଲୁ ଓ (କାନ୍ତ ସଙ୍ଗେ) ପଦ୍ମ ଅତିଦୂରରୁ ଆସିବା ସୂର୍ଯ୍ୟଙ୍କ ସଙ୍ଗେ ଯେପରି (ବେଭାର) ବ୍ୟବହାର କରେ,ତୁ ସେହିପରି ବ୍ୟବହାର କଲୁ । ୧୪ । ଅଶ୍ରୁ ପ୍ରସାରି—ଜାନି ପାତି । ୧୫ । ଅଳକଚନ୍ଦନ କୋଷ୍ଟି—ମସ୍ତକର ଚନ୍ଦନ ପାର୍ଟୀ । ୧୬ । ଅଣୁ-ମାସ—ବାଲିଟିଏ ସୁଦ୍ଧା । ହଂସୁଲିତୁଳୀ—ହଂସପର ପରି ଧଳା ଓ କୋମଳ ତୁଳାଶେଯ । (ତ୍ରାସ) ପରାସ ଲଭେ—ବ୍ୟଥା ପାଏ । ଅର୍ଦ୍ଧଚନ୍ଦ୍ରଚିହ୍ନ—ଅର୍ଦ୍ଧଚନ୍ଦ୍ରାକାର ନଖଚିହ୍ନ ।୧୭। ଅଧୋମୁଖୀ—ତଳମୁହାଁ ।୧୮। ମାଜଣାବିଧି—ସ୍ନାନକାର୍ଯ୍ୟ ।୧୯। ଅବ୍ଜସମ୍ଭବ—ବ୍ରହ୍ମା । ରଜତ—ରୁପା । ସୁବର୍ଣ୍ଣ—ସୁନା । ରୁପାପରି ଧବଳବର୍ଣ୍ଣ ଶିବ ସର୍ବିକାଗରଣାଦିଜନିତ ରକ୍ତନ୍ୟୁନତାରୁ ସୁନାପରି ଅଳ୍ପହଳଦୀ ବର୍ଣ୍ଣ ଦିଶୁଥିଲେ । ଇଙ୍ଗିତ ଅନ୍ତରେ—ପରି-ହାସପୂର୍ଣ୍ଣ ମନରେ । ୨୦ । ଅସିତକଣ୍ଠେ—କାଳିଆ ବେକରେ ।

ଅଳପ ସବ୍ରୀଡ଼ ହୋଇବାର ମୃଡ ସସ୍ମିତେ ଗ୍ରହିଲେ
ଅଶନିଧର କ—ର-ଭର ହୋଇଣ ବଳିଷ୍ଠ ହୋଇଲେ । ୨୧ ।
ଅମର-ସରିତ—ବନେ ସ୍ନାନ କରି ତ୍ରିପୁର ଈଶ୍ୱର
ଅନୁରୂପ ବର—ବେଶ ହେଲେ ସୁର—ଗଣେ ଯେ ସୁନ୍ଦର ।୨୨।
ଅବ୍‌ଜ-ଭବ-ଆଦି ଭଲେ ଯଥାବିଧି ଅର୍ଚ୍ଚନ ବନ୍ଦନ
ଅବଲୋକନ କ—ରି ପାପ ହାରିଲ ଏ ଭଞ୍ଜିଗୁଞ୍ଜନ ।୨୩।

——:୦:——

# ସପ୍ତବିଂଶ ଛାନ୍ଦ

## ହିମାଳୟଙ୍କର ଯୌତୁକଦାନ

ରାଗ—ମଙ୍ଗଳଗୁଜ୍ଜରୀ

ଅଥ ଭୋଷମନେ ଶୁଣ ବିବେକ ରସିକ
ଅଦ୍ରୀଶ ଈଶଙ୍କୁ ଦେଲେ ଯେତେ ଯଉତୁକ ଯେ । ୧ ।
ଅଷ୍ଟରତ୍ନ ପଟ୍ଟବାସ ମଣ୍ଡନେ ସୁନ୍ଦର
ଅରିଧାରୀ ହରି ପରି ଶୋଭା ପୀତାମ୍ବର ଯେ । ୨ ।
ଅନେକ ଅକ୍ଷେ ମଣ୍ଡନ ଇନ୍ଦ୍ରସମାନରେ
ଅଷ୍ଟ ବେଳା ଶତ ରଥ ଦେଲେ ଏରୂପରେ ଯେ । ୩ ।

---

୨୧ । ସବ୍ରୀଡ଼—ଲଜ୍ଜାଯୁକ୍ତ । ମୃଡ—ଶିବ । ସସ୍ମିତେ—ମନ୍ଦହାସ ସହିତରେ । ଅଶନିଧର କରଭର ଦେଇଣ—ଇନ୍ଦ୍ରଙ୍କ ଉପରେ ହାତ ରଖି । ୨୨ । ଅମରସରିତ-ବନେ—ଗଙ୍ଗାଜଳରେ । ତ୍ରିପୁରଈଶ୍ୱର—ମହାଦେବ । ୨୩ । ଅବ୍‌ଜଭବ—ବ୍ରହ୍ମା ।

———

ସପ୍ତବିଂଶ ଛାନ୍ଦ

୧ । ଅଦ୍ରୀଶ—ହିମାଳୟ । ଈଶ—ମହାଦେବ । ୨-୩ । ପଟ୍ଟବାସ—ପାଟ ଲୁଗା । ମଣ୍ଡନେ—ମଣ୍ଡିତ ହୋଇଥିବାରୁ । ହରି ପରି—ବିଷ୍ଣୁଙ୍କ ପରି । ଅରିଧାରୀ—ଚକ୍ରଯୁକ୍ତ ଓ ଚକ୍ରକୁ ଧରିଥିବା । ପୀତାମ୍ବର—ହଳଦି ବସ୍ତ୍ର ଲୁଗା । ଅନେକ ଅକ୍ଷେ—ଅନେକ ଅଖ ଓ ଅନେକ ଚକ୍ଷୁ । ଅଷ୍ଟବେଳାଶତ—ଏକହଜାର ।

ଅକ୍ଷୀଣ ମଦସମ୍ପଦେ ଅତି ମତ୍ତତର
ଅମ୍ବୁଦ-ଗର୍ଜ୍ଜନ ଜାତି ନେପାଳ ସିନ୍ଧୁର ଯେ । ୪ ।
ଅଞ୍ଜନ-ଅଚଳବତ ପ୍ରଭା ଦନ୍ତଧାରୀ
ଅମରେଶ-କର--ସମ ଦେଖିଲେ ଲକ୍ଷେ କରୀ ଯେ । ୫ ।
ଅନିଳୁଁ ପ୍ରଖର ଚଳିବାରେ ସ୍ରୋତୋ-ବାରି
ଅଙ୍ଘ୍ରି କୃଶ, ପୃଷ୍ଠଦେଶ ସିଂହାସନ ପରି ଯେ । ୬ ।
ଅତି ସୂକ୍ଷ୍ମ ରୋମ ଶୁଭ ଆବର୍ତ୍ତକ-ଧର
ଅକ୍ଷିଚରଣ ଚଞ୍ଚଳ ଜଙ୍ଘ ସ୍ଥୂଳତର ଯେ । ୭ ।
ଅଯୁତେ ତୁରକ ଅଶ୍ୱ ଇତ୍ୟାଦି ଲକ୍ଷଣେ
ଅଣାଇଲେ ଯୁବା ଶୋଭା ଶାନ୍ତ ଦୀପ୍ତିଗୁଣେ ଯେ । ୮ ।
ଅତି ଉଚ୍ଚ ପ୍ରମତ୍ତ ପ୍ରବଳ ତେଜମାନ
ଅସ୍ଥିରେ ତଡ଼ିତ ବଳନମଣେ ଶିବାଯାନ ଯେ । ୯ ।
ଅମ୍ବୁ ଭଉଁରୀ ଭ୍ରମଣେ ସଂକୋଚନେ କୂର୍ମ
ଅହିରାଜ ପାଲଟଣେ ବେଗେ ବାଣସମ ଯେ । ୧୦ ।
ଅବୟବ ସୁନ୍ଦର-ଲକ୍ଷଣ-ଉପଲକ୍ଷ
ଅଶ୍ୱ ତାଜି ଜାତି ଦେଖିଲେ ଏ ରୂପରେ ଲକ୍ଷ ଯେ । ୧୧ ।

---

୪-୧୧ । ଅକ୍ଷୀଣ-ମଦ-ସମ୍ପଦେ—କ୍ଷୀଣ ନୁହେଁ ବା ଉତ୍କଟ । ମଦ—ହସ୍ତୀର ଗଣ୍ଡଦେଶରୁ ଯେଉଁ କୃଷ୍ଣବର୍ଣ୍ଣ ସୁଗନ୍ଧ ଜଳଧାର ବହେ । ଅମ୍ବୁଦ ଗର୍ଜ୍ଜନ—ମେଘ ଗର୍ଜ୍ଜନ ପରି ଯାହାଙ୍କର ଗର୍ଜ୍ଜନ । ନେପାଳ ସିନ୍ଧୁର—ନେପାଳ ଦେଶୀୟ ହାତୀ । ଅଞ୍ଜନ ଅଚଳ—କୃଷ୍ଣବର୍ଣ୍ଣ ପର୍ବତ । ପ୍ରଭା—ଦେହକାନ୍ତି । ଦନ୍ତଧାରୀ—ଦନ୍ତା । ଅମରେଶ-କରସମ—ଇନ୍ଦ୍ରଙ୍କ ହାତୀ ପରି । ଅନିଳୁଁ—ପବନଠାରୁ । ସ୍ରୋତୋବାରି—ସୁଅରେ ଗଳୁଥିବା ପାଣି । ଅଙ୍ଘ୍ରି—ଗୋଡ଼ । କୃଶ—କ୍ଷୀଣ । ପୃଷ୍ଠଦେଶ—ପିଠି । ଆବର୍ତ୍ତକ—ଭଉଁରୀ । ଅଶ୍ୱକଣ୍ଠର ଦକ୍ଷିଣାବର୍ତ୍ତ ଭଉଁରୀକୁ ଦେବମଣି କହନ୍ତି; ଏହା ଅତି ଶୁଭ । ସ୍ଥୂଳତର—ମୋଟା । ତୁରକ ଅଶ୍ୱ—ତୁର୍କି ବା ତୁରସ୍କ ଦେଶୀୟ ଅଶ୍ୱ । ଯୁବା—ମଧ୍ୟ ବୟସର । ତେଜମାନ, ଉଚ୍ଚ ଓ ଲମ୍ବ ପ୍ରଭୃତିର ପରିମାଣ । ଅସ୍ଥିରେ—ଚଞ୍ଚଳତା ବିଷୟରେ । ତଡ଼ିତ—ବିଜୁଳି । ବଳନମଣେ—ଡେଇଁ ଚାଲିବା ବିଷୟରେ । ଶିବାଯାନ—ଦୁର୍ଗାଙ୍କର ବାହନ ଅର୍ଥାତ୍ ସିଂହ । ଭ୍ରମଣେ—ଚକ୍କର ଦେବା ବିଷୟରେ । ଅମ୍ବୁ—ପାଣି । ସଙ୍କୋଚନେ—ଯାକିହେବା ବେଳେ । କୂର୍ମ—କଇଁଛ । ପାଲଟଣେ—ଗତି ଫେରାଇବା ବିଷୟରେ । ଅହିରାଜ—ସର୍ପବିଶେଷ । ସୁନ୍ଦର ଲକ୍ଷଣ ଉପଲକ୍ଷ—ଶୁଭସୂଚକ ଲକ୍ଷଣରେ ଯୁକ୍ତ ।

ଅଂସ ତୋଳିବାରେ ନୋହେ ରାଉତ ଗୋଚର
ଅର୍ଦ୍ଧ-ହାତକେ ଫେରନ୍ତି ଅଷ୍ଟ ଅଷ୍ଟ ବାର ଯେ । ୧୨ ।
ଅଳପ ତାଡ଼ନେ ଜଳରାଶିରେ ଝାସିବେ
ଅନଳ ଭିତରେ ହେଲେ ସତ୍ୱରେ ପଶିବେ ଯେ । ୧୩ ।
ଅସିବର-ବାଣ-ବରଷାକୁ ନାହିଁ ଡର
ଅଙ୍ଗେ ଅସ୍ତ୍ର ଭେଦିଲେ ନୁହନ୍ତି ପଛଭର ଯେ । ୧୪ ।
ଅରି କରୀ ପରେ ଥିଲେ ଉଠିବେ ତା ପରେ
ଅଯୁତେ ଇରାକ ବାଜୀ ଦେଲେ ଏ ରୂପରେ ଯେ । ୧୫ ।
ଅଲେଖା ସୁଲେଖା କଚ୍ଛୀ କୁମେତା କପୋତି
ଅବଲଖା ସଞ୍ଜାପ ଟାଙ୍ଗଣା ଗୁଣ୍ଠ ଜାତି ଯେ । ୧୬ ।
ଅଙ୍ଗଯାଇ ଶ୍ୟାମକର୍ଣ୍ଣ ହର ଆଖନ୍ଦାରୀ
ଅପରେ ଆରବୀ ସିରାବୋଇ ସିନ୍ଧୁପାରି ଯେ । ୧୭ ।
ଅମୂଲ୍ୟ ପଞ୍ଚକଲ୍ୟାଣୀ ଜରଦୀ ଶ୍ୟାମଲା
ଅତୁଲ୍ୟ ମୁସୁକୀ ନୀଳା ସୁରଙ୍ଗ ପିଙ୍ଗଳା ଯେ । ୧୮ ।
ଅପୂର୍ବ ସମୋଦ ଗୁଲବ୍ୟାହିଁ କାନଖୋରି
ଅଶୀ ସହସ୍ର ଏ ବାଜୀ ଦେଲେ ବାଛି କରି । ୧୯ ।
ଅର୍ବୁଦ ଦେଲେ ପଦାତି ଅତି ବଳୀୟାର
ଅର୍ଜୁନସମ ଧାନୁଷ୍କ ଦ୍ରୋଣସମ ବୀର ଯେ । ୨୦ ।
ଅଙ୍ଗବଳେ ଭୀମ ଯୋଦ୍ଧାପଣେ କର୍ଣ୍ଣ ତୁଲ
ଅଶେଷ ଶସ୍ତ୍ର ଅଭ୍ୟାସି ସମରେ କୁଶଳ ଯେ । ୨୧ ।
ଅନେକପୁରୀ ବିମାନ କନକନିର୍ମିତ
ଅଂଶୁକରେ ହତ କରେ ଅନ୍ଧାର-ସଂଘାତ ଯେ । ୨୨ ।
ଅଙ୍ଗଶ୍ରମ ବିଶ୍ରାମରେ କରଇ ଖଣ୍ଡନ
ଅଚଳ ଭୂପାଳ ଦେଲେ ଏଥିଁ ଶତଯାନ ଯେ । ୨୩ ।

---

୧୨-୧୫। ଅଂସ ତୋଳିବାରେ—ବେକ ଟେକିବାରେ । ରାଉତ—ଘୋଡ଼ସବାର । ଜଳରାଶି—ସମୁଦ୍ର । ଅରି—ଶତ୍ରୁ । କରୀପରେ—ହାତୀ ଉପରେ । ଇରାକ ବାଜୀ—ଇରାକ୍ ଦେଶର ଘୋଡ଼ା ।୨୦। ଧାନୁଷ୍କ—ଧନୁର୍ଦ୍ଧାରୀ ।୨୨। ଅନେକପୁରୀ—ବହୁତ ମହଲଯୁକ୍ତ । କନକ—ସୁନା । ଅଂଶୁକରେ—କିରଣଦ୍ୱାରା । ସଂଘାତ—ସମୂହ ।

ଅମାନ ମଣ୍ଡନ ରତ୍ନବୃମ୍ଭା ସୁଖାସନ
ଅଛି ସୁଖ ହୋଏ ଯାହା ଆରୋହଣେ ମନ ଯେ । ୨୪ ।
ଅଗ୍ରେ ହେମମକରମସ୍ତକ କୁମ୍ଭ ବେନ୍ନ
ଅର୍କସମପ୍ରଭ, ଏଥୁଁ ଦେଲେ ଶତ ଶନ ଯେ ।୨୫ ।
ଅରୁଣ ପାଣ୍ଡୁର ପଞ୍ଚବର୍ଣ୍ଣ-ଧର ଚେଲ
ଅସିତ ସିତ ହାରିଦ୍ର ଶ୍ୟାମଳ ପାଟଳ ଯେ । ୨୬ ।
ଅନୁଆନେ ଲତା ବୁଟାବୁଣା ସିଂହଛାପ
ଅକ୍ଷିରୋମ କମ ବର୍ଣ୍ଣି କାଙ୍ଗୁଲି ଅମାପ ଯେ । ୨୭ ।
ଅଙ୍ଗୁଳ ମୁଦ୍ରି କାଗଲା ଶାଲ ଉଷ୍ଣକର
ଅତିସୂକ୍ଷ୍ମ ବନାଉତ ନାନା ଛବିଧର ଯେ । ୨୮ ।
ଅନେକ ଚହୁଲି ତାଗ ମୁସଲର ଥାନ
ଅଂଶେ ଅଂଶେ ବୁଟାଦାର ଗୋଦଣ୍ଡ ବସନ ଯେ । ୨୯ ।
ଅମ୍ବୁନିବାରଣ ତମ୍ବୁ ନାନାବର୍ଣ୍ଣେ ପୂରି
ଅନ୍ଧକାର-ନିବାରି ଚାନ୍ଦୁଆ ଚଉହାରି ଯେ । ୩୦ ।
ଅର୍କ-କିରଣବାରଣ ବସନ-ସଦନ
ଅବ୍ଜକର-ପ୍ରସର ବିତାନ କଲେ ଦାନ ଯେ । ୩୧ ।
ଅପୂର୍ବ ଗଣ୍ଡ ଘଣ୍ଟି ଘାଗୁଡ଼ି ରୁଚିର
ଅଯୁତେ ଅଯୁତେ ଭରିଗଲେ ଧରବର ଯେ । ୩୨ ।
ଅଂଶୁକରେ ଅର୍କପରି ବ୍ରହ୍ମକାଣ୍ଡ ହୀରି
ଅଗ୍ନିଶିଖା-ଶିଖର ମେଷାକ୍ଷୀ ନୀଳା ତୋରି ଯେ । ୩୩ ।
ଅଚ୍ଛିଦ୍ର ଗଜମୋତି ଉପିଲି [ ? ] ମର୍କତ
ଅରୁଣପ୍ରବାଳ ପଦ୍ମରାଗ କାନ୍ତିବନ୍ତ ଯେ । ୩୪ ।

---

୨୫। ହେମମକରମୁଖ—ସୁନାର ମଗର ମୁହଁ । ଅର୍କସମ ପ୍ରଭ—ସୂର୍ଯ୍ୟପରି କାନ୍ତିବଶିଷ୍ଟ । ୨୬ । ଅସିତ—କଳା । ସିତ—ଧଳା । ଚେଲ—ଲୁଗା । ଅକ୍ଷିରୋମକମ—ଆଖିବାଲ ପରି ସରୁକମ । ୩୧ । ବସନସଦନ——ତମ୍ବୁ । ଅବ୍ଜକରପ୍ରସର—ଚନ୍ଦ୍ରକିରଣ ପରି ଉଜ୍ଜ୍ୱଳ । ବିତାନ—ଚାନ୍ଦୁଆ ।୩୨। ଧରବର—ପର୍ବତରାଜ ହିମାଳୟ । ୩୩ । ଅର୍କପରି—ସୂର୍ଯ୍ୟପରି । ବ୍ରହ୍ମକାଣ୍ଡ ହୀରା—ସର୍ବୋତ୍କୃଷ୍ଟ ହୀରା । ଅଗ୍ନିଶିଖା ଶିଖର—ପକ୍ୱଦାଡିମବୀଜାଭଂ ମାଣିକ୍ୟଂ ଶିଖରଂ ବଦୁଃ । ଅଗ୍ନିଙ୍କ ଶିଖା ପରି ରକ୍ତବର୍ଣ୍ଣ ମାଣିକ୍ୟ । ମେଷାକ୍ଷି—ମେଣ୍ଢାର ଆଖି ପରି ନୀଳବର୍ଣ୍ଣ ନୀଳା ।

ଅକ୍ଷୀଣ ଗୋମେଦ ଅକ୍ଷି-ମନ-ମୋଦକାନ୍ତି
ଅଷ୍ଟରତ୍ନ ଦେଖିଲେ କେତେ ପେଟିକାରେ ଭରି ଯେ । ୩୫ ।
ଅମିତ ସୁବର୍ଣ୍ଣ ସବୁ ଜମ୍ବୁନଦ-ଜାତ
ଅମଳ ଭୂମିକା ପୁଷ୍ପ-ରୂପା ରୂପା କାନ୍ତ ଯେ । ୩୬ ।
ଅନେକ ସିନ୍ଦୂକମାନଙ୍କରେ ପୂର୍ଣ୍ଣ ଥିଲେ
ଅନ୍ଧକାରି ଯଦୁଭୂପ-ସମ୍ଭାରରେ ଦେଖିଲେ ଯେ । ୩୭ ।
ଅମଳ ଛତ୍ର ନକ୍ଷତ୍ର ଚନ୍ଦ୍ରସୂର୍ଯ୍ୟ ବାସ
ଅସିତକଣ୍ଠ ସୁପିଚ୍ଛ ପତାକାଦି ଶେଷ ଯେ । ୩୮ ।
* ଅନନ୍ୟ ଶୃଙ୍ଗ ଚାମର ଅମ୍ବରମଣ୍ଡନ ‡
ଅଶେଷ ଦେଖିଲେ ଆଲଟ କୁଞ୍ଚାବାସମାନ ଯେ । ୩୯ ।
ଅକାଟ ଖଡଗ ଚର୍ମ-ନିର୍ମିତ ଫଳକ
ଅଶନି-ଚ୍ଛେଦକ ଖଡ୍ଗ ତଡିତ ଝଟକ ଯେ । ୪୦ ।
ଅମୋଘ ସୁବାଣ ନୃପବାଣ-ପ୍ରାଣକର
ଅନୁରୂପ ପିନାକେ ଦେଖିଲେ ସେ ଧନୁବର ଯେ । ୪୧ ।
ଅରି ଶୂଳ ଶକତି ମୁଦ୍‌ଗର ଗଦା ଭଲ୍ଲ ଯେ
ଅଙ୍କୁ-ପାଶ ଭେଦ-ବଜ୍ର କୁନ୍ତ କାତି ଛୁରି ଯେ । ୪୨ ।
ଅନେକ କନକାସନ ଦନ୍ତପୃଷ୍ଠେ ଭରି
ଅସ୍ତ୍ର ଶସ୍ତ୍ର ବହୁତ ଦେଖିଲେ ସେ ଧରହରି ଯେ । ୪୩ ।
ଅଜ ଧେନୁ ମହିଷ ଯେ ମେଷ ଖର ଶ୍ୱାନ
ଅନୁସ୍ୱରି ଦେଖିଲେ ଯେ ଯାହାଁକ ପ୍ରୟୋଜନ । ୪୪ ।
ଅନାଇଁ ଉଭୟ-କୁଳମର୍ଯ୍ୟାଦାର ଠେକ
ଅଦ୍ରିବର ବସ୍ତୁରତ୍ନ ଦେଖିଲେ ଯଦୁଭୂପ ଯେ । ୪୫ ।
ଅନ୍ତଃପୁର ସମ୍ଭାର ଯେମାକୁ ଦେଖିଲେ ପୁଣ
ଅନୁଚରୀ ଶତେ ଦେଖିଲେ ବାଛି ଏ ଲକ୍ଷଣ । ୪୬ ।

---

୩୬ । ଭୂମିକା ପୁଷ୍ପ—ଲଉ ଫୁଲ । ୩୮ । ନକ୍ଷତ୍ର, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଧାତୁ ନିର୍ମିତ ଆକୃତି ଯେଉଁ ବାସ (ତମ୍ବୁ)ରେ ଥାଏ । ଅସିତକଣ୍ଠ ସୁପିଚ୍ଛ—ମୟୂରର ଉତ୍ତମ ପୁଚ୍ଛ । ୪୦ । ଫଳକ—ଢାଲ । ତଡିତ ଝଟକ—ବିଜୁଳି ପରି ଝଟଝଟ ହେଉଥିବା । ୪୩ । ଧରହରି—ପର୍ବତସିଂହ ବା ହିମାଳୟ । ୪୪ । ଖର—ଗଧ । ଶ୍ୱାନ—କୁକୁର । ଅନୁସ୍ୱରି—ବିଚାରି । ୪୬ । ଅନୁଚରୀ—ସେବିକା ।

* ଅନଳ (କ) ‡ ଅମରମଣ୍ଡନ (ଖ)

ଅପୂର୍ବ ସୁନ୍ଦରୀ ଗୁଣବତୀ ସୁମଧ୍ୟମା
ଅହର୍ନିଶି ଶାନ୍ତମତି ସେବା-ବିଚକ୍ଷଣା ଯେ । ୪୭ ।
ଅଙ୍ଗମାର୍ଜ୍ଜନପଣ୍ଡିତା ସୁବେଶକୁଶଳା
ଅକ୍ଷିବିକାର୍-ଲକ୍ଷିତା ମନ-ଅନୁକୂଳା ଯେ । ୪୮ ।
ଅଳସବର୍ଜ୍ଜିତା ନିତ୍ୟେ ସୁପ୍ରସନ୍ନମନା
ଅକୁଟିଳଶୀଳା କାମକଳା-ଉଦ୍ଦୀପନା ଯେ । ୪୯ ।
ଅଙ୍ଗ ଛାଇ ମଚ୍ଛାଇ ପ୍ରଭୁର ଅନୁସାରୀ
ଅନୁଜ୍ଞାପାଳିନୀ ହାସରସ-ମୋଦଧାରୀ ଯେ । ୫୦ ।
ଅନୁଲକ୍ଷି ପୁଣ ଦେଲେ ଶତେ ପ୍ରିୟସଖୀ
ଅନଙ୍ଗ ଶାସ୍ତ୍ର-ପ୍ରବୀଣା କୋପ-ନିରପେକ୍ଷୀ ଯେ । ୫୧ ।
ଅମର-ବରମୋହିନୀ ପରିଏ ଶୋଭିନୀ
ଅଟବୀ-ବିହାର୍-ଜଳକେଳି-ବିଳାସିନୀ । ୫୨ ।
ଅନୁରାଗୀ ସୁଖଭାଗୀ ସଖୀସୋହାଗିନୀ
ଅଧର୍ମ-ଧର୍ମ-ବିବେକୀ ସଙ୍ଗିନୀ-ରଙ୍ଗିନୀ ଯେ । ୫୩ ।
ଅବଲୋକି ତ୍ରିକାଳର ମର୍ଯ୍ୟାଦାରକ୍ଷିଣୀ
ଅହର୍ନିଶି ଲଜ୍ଜାଭୟସହିତ-ଲକ୍ଷଣୀ ଯେ । ୫୪ ।
ଅମୃତ ବିପଞ୍ଚୀ ତାଳମର୍ଦ୍ଦଳବାଦିନୀ
ଅନୁକ୍ଷଣେ ରାଗନାଟସଙ୍ଗୀତମୋଦିନୀ ଯେ । ୫୫ ।
ଅଳଙ୍କାର୍ କାବ୍ୟନାଟକାଦି ରସଜ୍ଞାତା
ଅନ୍ତର୍ଗତ-ବିଷୟଜ୍ଞା ଅଲକ୍ଷ୍ୟ ଇଙ୍ଗିତା ଯେ । ୫୬ ।

---

୪୭ । ସୁମଧ୍ୟମା—ଉତ୍ତମ କଟିବିଶିଷ୍ଟା । ଶାନ୍ତମତି—ଯାହାର ବୁଦ୍ଧି ଶାନ୍ତ, ଧୀରବୁଦ୍ଧି । ସେବାବିଚକ୍ଷଣା—ସେବାତତ୍ପର । ୪୮ । ଅକ୍ଷିବିକାର-ଲକ୍ଷିତା—ଆଖିର ଭଙ୍ଗୀ ଦେଖି ଯେ ମନକଥା ବୁଝିପାରେ । ୪୯ । ଅକୁଟିଳଶୀଳା—ସରଳସ୍ୱଭାବା । ୫୦ । ଅନୁଜ୍ଞାପାଳିନୀ—ଆଜ୍ଞା ପାଳନ କରୁଥିବା । ହାସରସମୋଦଧାରୀ—ହାସ୍ୟରସରେ ଯେ ଆନନ୍ଦିତା ହୁଏ । ୫୧ । କୋପନିରପେକ୍ଷୀ—ସଖୀ ରାଗ କଲେ ଯେ ତାହା ମନରେ ଧରେ ନାହିଁ । ୫୨ । ଅମରବରମୋହିନୀ—ଇନ୍ଦ୍ରଙ୍କୁ ଯେ ମୋହିତ କରିପାରେ, ଉର୍ବଶୀ ପ୍ରଭୃତିଙ୍କ ପରି । ଅଟବୀବିହାର—ବନବିହାର । ୫୩ । ଅନୁରାଗୀ—ଅନୁରକ୍ତା । ସଙ୍ଗିନୀ ରଙ୍ଗିନୀ ସଖୀମାନଙ୍କ ସଙ୍ଗେ ଯେ କ୍ରୀଡ଼ାକୌତୁକ କରେ । ୫୪ । ଅବଲୋକି... ରକ୍ଷିଣୀ—ଯେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ବିଷୟର କରି ମର୍ଯ୍ୟାଦା ରକ୍ଷା କରେ । ୫୫ । ବିପଞ୍ଚୀ—ବୀଣା ।

ଅବଳାମଣି ସଙ୍ଗେ ଏ ସଖୀଏ ବାହାର
ଅନୁସରି ସକଳ ନେଉଛନ୍ତି ବାମାବର ଯେ । ୫୭ ।
ଅଳାଇଚ ଗୁଡ଼ତ୍ୱକ ଲବଙ୍ଗ ମରିଚ
ଅବ୍‌ଜରଜ ମଳୟଜ ମୃଗମଦ ବରଚ ଯେ । ୫୮ ।
ଅଗୁରୁ କୁଙ୍କୁମ ଜାଇପତ୍ର ଜାଇଫଳ
ଅନେକ ସୁବାସପେଡ଼ି-ସାମଗ୍ରୀ ମଞ୍ଜୁଳ ଯେ । ୫୯ ।
ଅହଲ୍ୟା ସୀତା ରୁକ୍ମିଣୀ ଦ୍ରୌପଦୀ ରାଧିକା
ଅମ୍ବିକା ଗୋପିକାଗଣ କୃତ୍ରିମପୁତ୍ତ୍ରିକା ଯେ । ୬୦ ।
ଅହିଦଳନ ଯେ ବାଳଗୋପାଳ ମୂରତି
ଅତିବୃଦ୍ଧ-ନନ୍ଦକନ୍ଧ-ଚଢ଼ା ଯଦୁପତି ଯେ । ୬୧ ।
ଅଂଶୁକହରଣ ହରି ଉଲଗ୍ନ ଯେ ଗୋପୀ
ଅଧାମଶ୍ରେର ଯଶୋଦା-ଛାଡ଼ିଖିଆ ରୂପୀ ଯେ । ୬୨ ।
ଅଯୋଧ୍ୟାନାୟକ ସୀତାଶ୍ରେର ଦଶଶିର
ଅବତାର ମତ୍ସ୍ୟ ଆଦି ପୁତ୍ତଳୀନିକର ଯେ । ୬୩ ।
ଅନୁଆନେ କଣ୍ଢାଇ ପେଟିକାମାନ ଦେଲେ
ଅବଲାର ବାଳଖେଳବିଧି ସଜାଡ଼ିଲେ ଯେ । ୬୪ ।
ଅଡ଼ାରେ ବସାଇ ଦେଲେ ବାକ୍ୟପଢ଼ା ଶୁକ
ଅଢ଼ାଇଶ ସାରି ଦେଲେ ପଢ଼ନ୍ତି ନାଟକ ଯେ । ୬୫ ।
ଅଳଙ୍କାର ପଢ଼ା ପିକ ପୁଣି ଦେଲେ ଶତେ
ଅନୁବନ୍ଧ ନାଟୁଆ ମୟୂର ଦେଲେ କେତେ ଯେ । ୬୬ ।
ଅଦୃଶ୍ୟ ଖେଳ ପାରୁଆ ଲୋଟଣୀ କପୋତ
ଅପୂର୍ବ ଖଞ୍ଜନ ହଂସ ହଳଦୀବସନ୍ତ ଯେ । ୬୭ ।
ଅଙ୍ଘ୍ରିମାନଙ୍କରେ ହେମଙ୍ଗ୍ମୁକ୍ତ ନୂପୁର
ଅନୁରୂପ ସ୍ଥାନେ ଏହା ଦେଲେ ଧରବର ଯେ । ୬୮ ।
ଅନେକ ଭଣ୍ଡାର ଶୂନ୍ୟ କରି ସବୁ ଦେଲେ
ଅଥ ବନସ୍ତେ ହରିଙ୍କୁ ବହୁତ କହିଲେ ଯେ । ୬୯ ।

୫୮ । ଅବ୍‌ଜରଜ—କର୍ପୂର ଗୁନା । ମଳୟଜ—ଚନ୍ଦନ । ୬୦ । କୃତ୍ରିମପୁତ୍ତ୍ରିକା—କୁଣ୍ଢେଇ । ୬୧ । ଅହିଦଳନ—କାଳିଦଳନ (ମୂର୍ତ୍ତି) । ୬୨ । ଅଂଶୁକହରଣ ହରି—ବସ୍ତ୍ରଚୋର ଶ୍ରୀକୃଷ୍ଣ ।

ଅମରବ୍ୱିନ୍ଦଙ୍କ ବେଭାର ଦେଲେ ଯେ ଯେମନ୍ତେ
ଅନୁଚରମାନଙ୍କୁ ମେଲାଣି ନାନାମତେ । ୭୦ ।
ଅସ୍ତ୍ରନରେ ଭୋଜନକୁ ଦେଲେ ଦିବ୍ୟରସ
ଅଶେଷ ବରଯାତ୍ରଏ ହୋଇଲେ ସନ୍ତୋଷ ଯେ । ୭୧ ।
ଅପର ଛାନ୍ଦେ ବର୍ଣ୍ଣିବା ବାହୁଡା-ବିଜୟ
ଅବନୀଶ ଭଞ୍ଜଙ୍କ ଶରେ ମୃତ୍ୟୁଞ୍ଜୟ ଯେ । ୭୨ ।

—ଃ✻ଃ—

# ଅଷ୍ଟାବିଂଶ ଛାନ୍ଦ

## ବାହୁଡା-ବିଜେ

### ରାଗ—କୁମ୍ଭକାମୋଦୀ

ଅଚଳଭୂପାଳ—ଠାରୁ ଦିଗବେଳ ମେଲାଣି ହୋଇଲେ
ଅଚଳଙ୍କେ ବଳ ସାଜ ଅନୁକୂଳ କରିବା ବୋଇଲେ ।୧।
ଅନୁଜ୍ଞା ପ୍ରମାଣେ ବାଜଣା ଘୋଷଣ ହେବାକୁ ବାହାର
ଅଇଲେ ତିଆର ହୋଇ ସୁରନର ଅସୁର-ନିକର । ୨ ।
ଅନ୍ତଃପୁର ବେଳ ଜାଣି ଅନୁକୂଳ ଉମାକୁ କରନ୍ତି
ଅଙ୍ଗନା-ଆବଳୀ ମିଳି ହୁଳହୁଳୀ ଆନନ୍ଦେ ଦିଅନ୍ତି ।୩।
ଅମ୍ବା ଧାତ୍ରୀ ସଖୀ ହୋଇ ଅତି ଦୁଃଖୀ କରନ୍ତି ରୋଦନ
ଅନୁରାଗ ଶୋକେ କ୍ଷୀନ ବସନେ ବେ ପୋଛନ୍ତି ବଦନ ।୪।

୭୧ । ଅସ୍ତ୍ରନରେ—ବାଟରେ । ୭୨ । ମୃତ୍ୟୁଞ୍ଜୟ—ଶିବ ।

---

ଅଷ୍ଟାବିଂଶ ଛାନ୍ଦ

୧ । ଅଚଳଭୂପାଳ—ପର୍ବତରାଜ ହିମାଳୟ । ଦିଗବେଳ—ଦିଗମ୍ବର, ଶିବ । ୨ । ଘୋଷଣ—ଅନୁକୂଳ କାଳର ବାଦ୍ୟ । ୩ । ଅନ୍ତଃପୁର—ନଅର ଭିତର ସ୍ତ୍ରୀଲୋକ । ଅଙ୍ଗନା-ଆବଳୀ—ସ୍ତ୍ରୀମାନେ । ୪ । ଅମ୍ବା—ମାତା । ଧାତ୍ରୀ—ଧାଈ । ଅନୁରାଗ ଶୋକେ—ସ୍ନେହ ହେତୁ ଜାତ ଦୁଃଖରେ ।

ଅମ୍ବୁ ପୂର୍ଣ୍ଣ କରି ଲୋଚନେ କେ ନାଥ ବୋଲଇ ବଚନେ
ଅଦ୍ରୀଶ୍ୱର ପୁର ତେଜ କମଳିନୀ ଗଲା ଏତେ କାଳେ ।୫।
ଅଳକରେ କର ତାଡଇ କେ ଉର ଉପରେ କୋଡଇ
ଅକ୍ଷି ଯା ଯା ଫୁଟି ବୋଲି କେହୁ ଲୋଟି ମହୀରେ ଗଡ଼ଇ ।୬।
ଅଗ୍ରେ କେ ବୋଲଇ ଆରେ କେମାଦେଇ ମୂର୍ଚ୍ଛିବୁ କି କରି
ଅସର ହୋଇବ ଅହର୍ନିଶି ବସି ତୋ ଗୁଣ ସୁମରି ।୭।
ଅନା ଚନ୍ଦ୍ରମୁଖ ଦେଖିଥାଉଁ ଦୁଃଖ-ସଙ୍ଖାଳି ଆମ୍ଭର
ଅଦୃଷ୍ଟ ଫାଟିଲା ବୋଲି କେହୁ କଲା ରୋଦନ ଅପାର ।୮।
ଅତିଦୁଃଖ ମନେ ଆସିଣ ଶମାନେ ବସିଲେ ଗଉଣି
ଅଗ୍ରେ ତାଙ୍କୁ କଲେ ପଛେ ଆଗେ ହେଲେ ଅନ୍ଧକ-ବଇଣି ।୯।
ଅନୁଚରୀ ଦାସୀ ହାନ୍ଦୋଳାରେ ବସି ବାହାର ହୋଇଲେ
ଅଗ୍ରେ ବେତ ଧରି ଆଡ଼ୋ ଆଡ଼ୋ କରି ଦୁଆରୀ ଧାଇଁଲେ ।୧୦।
ଅମର-ଅବନୀ ଅହିପୁର ଘେନି କମ୍ପିଲା ବାଦ୍ୟରେ
ଅମିତ ଉତ୍ପାତ ନଷ୍ଟେ ହେଲା ଜାତ କରେ କେ ହୃଦରେ ।୧୧।
ଅଚଳ-ମଣ୍ଡଳ ଉପୁଞ୍ଜ ପାତାଳ-ପୁରେ କି ପଶିବେ
ଅବା ଗ୍ରହକୁଳେ ସ୍ୱର୍ଗ ଏକାବେଳେ ତଳକୁ ଛୁଟିବେ ।୧୨।
ଅତ୍ୟନ୍ତ ସଘନେ ନିବିଡ଼ାଲିଙ୍ଗନେ ରହିଲେ ଦମ୍ପତି
ଅପବର୍ଗ ଠୁଳେ ପାଇଲା ସେକାଳେ ମାନବତୀ-ପତି ।୧୩।
ଅଙ୍ଗୁଳି କର୍ଣ୍ଣରେ କରି କେ ଛନ୍ନରେ ନିସ୍ତଳେ ଅଛନ୍ତି
ଅତ୍ୟନ୍ତ ବଧିର ଏ କି ବୋଲି ଧୀର—ଆସରେ ପୁଚ୍ଛନ୍ତି ।୧୪।

---

୫ । ଅଦ୍ରୀଶ୍ୱର—ପର୍ବତରାଜ, ହିମାଳୟ । କମଳିନୀ—କମଳା ଅର୍ଥରେ ବ୍ୟବହୃତ, ଲକ୍ଷ୍ମୀ ।୬। ଅଳକରେ—ମସ୍ତକରେ । ଉର—ଛାତି । କୋଡଇ—ପିଟଇ । ୭ । ଅସର ହୋଇବ—ସରିବ ନାହିଁ । ୧୧ । ଅମର-ଅବନୀ—ସ୍ୱର୍ଗ । ଅହିପୁର—ସର୍ପପୁର ବା ପାତାଳ । ୧୩ । ନିବିଡ଼ାଲିଙ୍ଗନେ—ଗାଢ ଆଲିଙ୍ଗନ କରି । ଦମ୍ପତି—ସ୍ତ୍ରୀ ପୁରୁଷ ଦୁହେଁ , ଏଠାରେ ଶିବ ଗୌରୀ । ଅପବର୍ଗ—ଧର୍ମ, ଅର୍ଥ, ମୋକ୍ଷ, କାମ । ଠୁଳେ—ଏକାଠି,ଏକ କାଳରେ । ମାନବତୀ-ପତି—ମାନିନୀମାନଙ୍କର ସ୍ୱାମୀ । ମାନିନୀମାନେ ଶବ୍ଦ ଶୁଣି ଭୀତା ହୋଇ ମାନ ତେଜି ସ୍ୱାମୀମାନଙ୍କୁ ଆଲିଙ୍ଗନ କଲେ । ୧୪ । ଛନ୍ନରେ—ଭୀତ ହୋଇ । ବଧିର—କାଲ । ଅତି କାଲମାନେ ମଧ୍ୟ ଏ ଶବ୍ଦ ଶୁଣିପାରି 'ଏ କି ଶବ୍ଦ' ବୋଲି ପଚାରୁଥିଲେ । ଧୀର-ଆସରେ—ଧୀରଭାବରେ ଅଥବା (ଧୀର) ପଣ୍ଡିତମାନଙ୍କ (ଆସରେ) ଗୋଷ୍ଠୀରେ ।

ଅତି କଉତୁକେ ଗାଳଦିଅନ୍ତି କେ ଉମାଙ୍କୁ ଉଷତେ
ଅଧର-ଚଳନ୍ତୁଁ ହେଜ ତା ସୂଚନୁ ହସନ୍ତି ଈଷିତେ ।୧୫।
ଅଶ୍ୱ-ହସ୍ତି-ରଥ-ପତ୍ତି-ପାଦଘାତ ରେଣୁ ଉଡିବାରେ
ଅନ୍ଧକାର-ରାଶି ଗୃହ୍ଣୁଁ ଗୃହ୍ଣୁଁ ଆସି ଘୋଟିଲା ଦିବାରେ ।୧୬।
ଅସିତ-ଭୂଷଣେ ଅଭିସାରଗଣେ କଲେ ଅଭିସାର
ଅହଃଶେଷ ଚକ୍ର କ ଚକଦମ୍ପତି ହୁଅନ୍ତି ଅନ୍ତର । ୧୭ ।
ଅତର୍କିତ କାଳ-ବଶେ ଖୁଣ୍ଟିପାଳ ହୁଅଇ କାତର
ଅବନୀ-ଈଶ୍ୱର ପୁଚ୍ଛନ୍ତେ ତାହାର ନ ଆସେ ଉତ୍ତର । ୧୮ ।
ଅମ୍ବୁରୁହ-କୋଳ-ଭିତରେ ଭ୍ରସଳ କରୁଛି ଶୟନ
ଅମୁଦ୍ରିତ ହୋଇଥିବାରୁ ସେ ତହୁଁ କରଇ ଗମନ । ୧୯ ।
ଅପ୍ରମିତ ଥାଟ ଅବାଟକୁ ବାଟ କରିଣ ଚଳିଲେ
ଅଳକାଭୁବନ ପାରୁଷ କାନନ ମଧ୍ୟରେ ମିଳିଲେ । ୨୦ ।
ଅମଳ ଶୀତଳ ସୁବାସିତ ଜଳ ଶ୍ରମେ କେ ପିଅନ୍ତି
ଅମୂଲ୍ୟ ପଇଡପଣା କେହୁ ବଡ ସରାଗେ ପାଆନ୍ତି । ୨୧ ।
ଅନଳ-ଆଶରୁ କେ କରଦେଶରୁ ପଙ୍ଖା ନ ଥୁଅଇ
ଅପାର କର୍ପୂର ମଳୟଜ-ନୀର କେ ବୋଳି ହୁଅଇ । ୨୨ ।
ଅମ୍ବରେ ଛନ୍ଦାଇ ବସନ ବେଢ଼ାଇ ଅଛି କେ ହୁଦରେ
ଅଣାଏ ଶୋଇବ ବୋଲି କେ ପଲ୍ଲବ ଅତ୍ୟନ୍ତ ଆଦରେ । ୨୩ ।
ଅତି ମନୋହର ରହଃସ୍ଥାନେ ହର ବଜାୟି ତୋଷରେ
ଅମ୍ବିକାଙ୍କୁ ଯାଇଁ ବମାନୁଁ ଓହ୍ଲାଇ ମିଳିଲେ ପାଶରେ । ୨୪ ।
ଅନୁଚରୀ-ବାରେ ଯେ ଯାହା ସେବାରେ ଖଟିଲେ ସତ୍ୱର
ଅଗ୍ରେ କେଉଁ ବାଲୀ ଥୋଇଲାକ ଗୋଳି ଚନ୍ଦନ-କର୍ପୂର । ୨୫ ।
ଅନ୍ତକେ ଆଲଟ ଉଲଟ ପାଲଟ କରି କେ ପକାନ୍ତି
ଅପାଙ୍ଗ-ଭଙ୍ଗୀରୁ ଜାଣି କେ ରମ୍ଭୋରୁ ତାମ୍ବୂଳ ଦିଅନ୍ତି । ୨୬ ।

---

୧୫ । ଉଷତେ—ଆନନ୍ଦରେ । ଅଧର ଚଳନ୍ତୁଁ—ଓଠ ହଲିବାରୁ । ୧୬ । ପତ୍ତି—ପଦାତି, ଘୋଡ଼ାରେ ବସି ଯେଉଁମାନେ ଯୁଦ୍ଧ କରନ୍ତି ।୧୭। ଅହଃଶେଷ …ଅନ୍ତର—ଦିନ ଶେଷ ହୋଇଗଲା ଭିବା ଚକବାକ ଓ ଚକବାକୀ ପରସ୍ପରଠାରୁ ଅଲଗା ହୋଇ ଯାଉଛନ୍ତି ; ରାତିରେ ସେମାନଙ୍କର ବିରହ ଘଟନା କବି ସମ୍ପ୍ରଦାୟ-ସିଦ୍ଧ । ୧୮ । ଖୁଣ୍ଟିପାଳ—ଦ୍ୱାରରକ୍ଷକ, ଘାଟିରକ୍ଷକ । ୧୯ । ଅମ୍ବୁରୁହ—ପଦ୍ମ । ଭ୍ରସଳ—ଭ୍ରମର ।୨୧। ପାଆନ୍ତି—ଆଦର ସହ ଖାଆନ୍ତି , ଯଥା—ପାହୁଳ ପାଇବା । ୨୨ । ମଳୟଜ ନୀର—ଚନ୍ଦନ ପାଣି । ୨୪ । ରହଃସ୍ଥାନ—ନିର୍ଜନ ଜାଗା ।

ଅର୍କ କ୍ରମେ କ୍ରମେ ଚଳିଲେ ପଶ୍ଚିମେ ଅହ୍ନ ହେଲା ଶେଷ
ଅବ୍‌ଜ ମୂଦ୍ରିତ ଅସକୁ ଦେଖି ଅଳି ହୋଏ ପାଶ ପାଶ । ୨୭ ।
ଅନ୍ତର ହେବ ବୋଲି ଚକ୍ରବାକ ଭାବର ଭ୍ରମତ
ଅଟବୀରେ ନାନା ବିଟପୀରେ ହେଲେ ପକ୍ଷୀ ଉପଗତ । ୨୮ ।
ଅରୁଣ-କିରଣ-ବଢ଼ାରୁଁ ଅରୁଣ ଦିଗ ଯା ଦିଶଇ
ଅନୁରାଗେ ନିଶା-ବାଳା ଚନ୍ଦ୍ର-କାନ୍ତ ପାଶେ କି ଆସଇ । ୨୯ ।
ଅଙ୍ଗନାଏ ଜୂତ ଖେଳାନ୍ତି ସେ ବରକନ୍ୟାଙ୍କୁ ଉତ୍ସବେ
ଅକ୍ଷତ ଦୁବାରେ ସପ୍ତ-ଦୀପେ ବନ୍ଦାପନା ବିଧିପୂର୍ବେ । ୩୦ ।
ଅନୁଜ୍ଞା ଦେଲେ ଈଶ୍ୱରେ ବାଜେ ହେବେ ସଜ ହୋନ୍ତି ବଳ
ଅତରେ ଯେ ଯାର ସମ୍ମାରେ ବାହାର ହୋଇଲେ ସକଳ । ୩୧ ।
ଅମୃତ-ଯୋଗରେ କୈଳାସ-ନଗରେ ହେଲେ ପରବେଶ
ଅନୁକ୍ଷଣେ କ୍ଷଣେ ବରଯାତ୍ରିଗଣେ ଆଦର-ବିଶେଷ । ୩୨ ।
ଅଷ୍ଟମ ମଙ୍ଗଳା ଢଳେ ସେ ମଙ୍ଗଳାଚରଣ-ବିଧିରେ
ଅଥ ଦେବାସୁର ସମସ୍ତେ ମେଲାଣି ହୋଇଲେ ସିଦ୍ଧିରେ । ୩୩ ।
ଅନଙ୍ଗ-ଗର୍ବ-ପର୍ବତ-ପବି ରବି-ଚନ୍ଦ୍ରାନଳ-ଆଖି
ଅମ୍ବୁଜ-ଚରଣ ଶରଣରେ ନୃପ ବଳଭଦ୍ର ସୁଖୀ । ୩୪ ।



---

୨୭ । ଅବ୍‌ଜ ମୁଦ୍ରିତ ଆସକୁ ଦେଖି—ପଦ୍ମ ବୁଜ ହୋଇଥିବାର ଦେଖି । ୨୮ । ଅଟବୀ—ବନ । ନାନା ବିଟପୀରେ—ବୃକ୍ଷମାନଙ୍କରେ । ୨୯ । ଅରୁଣ—ସୂର୍ଯ୍ୟ । ବଢ଼ାରୁ—ପରିବର୍ଦ୍ଧନ ହେତୁଁ । ଅରୁଣ—ରକ୍ତବର୍ଣ୍ଣ । ଅନୁରାଗ—ସ୍ନେହରେ । ନିଶା-ବାଳା—ରଜନିରୁପିଣୀ ନାୟିକା । ଚନ୍ଦ୍ରକାନ୍ତ—ଚନ୍ଦ୍ରରୁପ ନାୟକ । ଅନୁରାଗକୁ ରକ୍ତବର୍ଣ୍ଣ ବୋଲି ବର୍ଣ୍ଣନ କରିବା କବିସମ୍ପ୍ରଦାୟ ସିଦ୍ଧ । ୩୪ । ଅନଙ୍ଗ....ପବି—କାମର ଗର୍ବରୁପ ପର୍ବତର ବଜ୍ର ସ୍ୱରୁପ । ରବି, ଚନ୍ଦ୍ର ଓ ଅଗ୍ନି ଯାହାଙ୍କର ଆଖି ।



# ଊନତ୍ରିଂଶ ଛାନ୍ଦ

## ବର୍ଷାବର୍ଣ୍ଣନ, ଅକ୍ଷରମନନସା, ନ୍ୟାୟବଳ ଖେଳ ଓ କେଳି

ରାଗ—କଳହଂସକେଦାର

ଅଥ ଶୁଣ ହେ ଗୁଣନିପୁଣ ରସ
ଅଚଳେ କଇଲାସ ଅଚଳେ ଈଶ ଯେ ।
ଅବଳାମଣି ରତ-ରତନ ପାଇ
ଅନୁଦିନେ ବଞ୍ଚନ୍ତି ଆନନ୍ଦ ହୋଇ ସେ । ୧ ।
ଅହଃଶେଷରେ ଦିନେ ଏହି ସମୟେ
ଅମ୍ବୁଦ ପୂର୍ବଦିଗୁଁ ହେଲେ ଉଦୟେ ଯେ ।
ଅଞ୍ଜନଧର-ଶୋଭା-ଗଞ୍ଜନ କାନ୍ତି
ଅକ୍ଷିପତନେ ଦେଲେ ଇନ୍ଦ୍ର ସମ୍ପତ୍ତି ସେ । ୨ ।
ଅଙ୍ଗନା-ବନା-ଜନେ ଯମ ସମ ସେ
ଅମରପୁରତରୁ ତରୁଣୀ-ପୁଂସେ ଯେ ।
ଅହିବତ ଅହିତ ଋଷି-ମୂଷିକେ
ଅର୍କ-କର୍କଶ-ସ୍ୱଭାବ ଏକାକୀ ଲୋକେ ସେ । ୩ ।

---

ଊନତ୍ରିଂଶ ଛାନ୍ଦ

୧ । ଗୁଣନିପୁଣ—ଗୁଣୀ । ଅଚଳେ—ସ୍ଥିରରେ । ଅଚଳେ—ପର୍ବତରେ । ଈଶ—ମହାଦେବ । ଅବଳାମଣି-ରତ-ରତନ— ନାରୀଶ୍ରେଷ୍ଠ ଗୌରୀଙ୍କର ସୁରତ ରୂପ ରତ୍ନକୁ । ଅନୁଦିନେ—ପ୍ରତ୍ୟହ ।୨। ଅହଃଶେଷରେ—ସନ୍ଧ୍ୟାକାଳରେ । ଅମ୍ବୁଦ—ମେଘ । ଅଞ୍ଜନଧର—କଳା ପର୍ବତ । ଅକ୍ଷିପତନେ—ଆଖି ପଡିଲାକ୍ଷଣି । ଇନ୍ଦ୍ର ସମ୍ପତ୍—ଅତି ସୁଖ । ।୩। ଅଙ୍ଗନା-ବନା-ଜନେ—ସ୍ତ୍ରୀରହିତ ଲୋକମାନଙ୍କ ପକ୍ଷରେ । ତରୁଣୀ-ପୁଂସେ—ସ୍ତ୍ରୀ ସହିତ ଥିବା ପୁରୁଷମାନଙ୍କ ପକ୍ଷେ; ଦମ୍ପତି ପକ୍ଷେ । ଅମର-ପୁରତରୁ—କଳ୍ପତରୁ । ଅହିବତ....ମୂଷିକେ—ଋଷିରୂପ ମୂଷାମାନଙ୍କ ପକ୍ଷେ ସର୍ପପରି ଅନିଷ୍ଟକର । ଅର୍କକର୍କଶ ସ୍ୱଭାବ—ସୂର୍ଯ୍ୟଙ୍କ ପରି ପ୍ରଖର (ସନ୍ତାପଦ) ।

ଅନାଇଁ ଏ ସମସ୍ତ ଅଶେଷ ରସ
ଅଳସେ ଈଶ ରସବତୀ-ସାଳସ* ଯେ
ଅଙ୍ଗୁଷ୍ଠି ଶମ୍ଭୁଶଷ୍ଟୀ ଶରୁବେ ଦେଇ
ଅନଙ୍ଗରଙ୍ଗେ ରଙ୍ଗକୁ ରଙ୍ଗେ* ଭଜ୍ଜ ଯେ । ୪ ।
ଅମ୍ଭୃତଦ୍ୱାସି ! ହଂସୀଗତ ! କ କ୍ଷଣ ! ! !
ଅସିତ-ମେଘେ ବକତତ ବୀକ୍ଷଣ ଯେ ।
ଅଥ ଗାଢ଼ ଶାମୃକ-ଭେକ-ଫୁତ୍କୃତ
ଅଣୁମଧ୍ୟା ଭସ୍ତ୍ରୃତ ତମଃସଂହୃତ ଯେ । ୫ ।
ଅଶେଷ ଶକ୍ରଗୋପେ କ୍ଷୌଣୀ ପ୍ରକଟ
ଅନେକଶେ ଫୁଟେ ନୀପ-କେତକ-କୂଟ ଯେ ।
ଅଟକ ପଡ଼େ ନେକ ଶିଖି-ନର୍ତ୍ତନେ
ଅସ୍ଥିରେ ତନୁ ବମେ ପନ୍ନଗାଶନେ ଯେ । ୬ ।
ଅମିତ ତଡ଼ିଲ୍ଲତାମାଳ ଫୁଟେବେ
ଅଲକ୍ଷ୍ୟ ଜଳମୁକ ଘୋଟେ କ ଟେକେ ରେ ।
ଅଚଳ-ଚୂଳେ ଓକେକା ଟେକ ଯା ଡାକେ
ଅତନୁ-ସୁଖଧନ ମିଳେ କାମୁକେ ଯେ । ୭ ।

---

୪ । ଅଶେଷ ରସ—ବହୁଜଳ, ପକ୍ଷାନ୍ତରେ ବହୁତ ରସ । ଅଳସେ—ଅନାୟସ୍ତ ଭାବେ । ରସବତୀ—ଗୌରୀ । ଅନଙ୍ଗରଙ୍ଗେ—କାମକ୍ରୀଡ଼ାରେ । ରଙ୍ଗକୁ ରଙ୍ଗେ—ନାନା ରଙ୍ଗେ, ଭଲକୁ ଭଲ । ୫ । କ କ୍ଷଣ—କ ଉତ୍ସବ ଅର୍ଥାତ୍ ଅତି ଉତ୍କୃଷ୍ଟ ଉତ୍ସବ । ଅସିତ ମେଘେ - କଳା ମେଘରେ । ବକତତ ବୀକ୍ଷଣ—ବଗମାନଙ୍କୁ ଦେଖିବା । ଭେକ—ବେଙ୍ଗ । ଫୁତ୍କୃତ—ଫୁତ୍କାର,ରବ । ଅଣୁମଧ୍ୟା—କ୍ଷୀଣକଟି । ତମଃସହୃତ—ଗାଢ ଅନ୍ଧକାର । ୬ । ଶକ୍ରଗୋପ—ଇନ୍ଦ୍ରଗୋପ ବା ସାଧବ ଘର ବୋହୂ ପୋକମାନଙ୍କଦ୍ୱାରା । କ୍ଷୌଣୀ—ପୃଥିବୀ । ନୀପକେତକକୂଟ—କଦମ୍ବ ଓ କଅପୁଲସମୂହ । ଶିଖିନର୍ତ୍ତନେ—ମୟୂର ନାଚରେ । ପନ୍ନଗାଶନେ—ସର୍ପର (ଅଶନ) ଭକ୍ଷ୍ୟ ଅର୍ଥାତ୍ ବାୟୁ, ତଦ୍ୱାରା । ତନୁ—ଶରୀର(ଅସ୍ଥିର ଭାବେ) କମ୍ପେ । ୭ । ତଡ଼ିଲ୍ଲତା—ବିଜୁଳି । ଜଳମୁକ—ମେଘ । କ ଟେକେ—କେଡ଼େ ଗାଢ ଭାବରେ । ଅଚଳଚୂଳେ—ପର୍ବତ ଶିଖରରେ । ଟେକ—ଅତି ଉଚ୍ଚରେ । ଡ଼ାକେ—ଶବ୍ଦ କରେ । ଅତନୁସୁଖଧନ—କାମସୁଖରୂପ ଧନ । କାମୁକେ—କାମାତୁର ବ୍ୟକ୍ତିଙ୍କୁ ।

* ସାରସ (ଖ) * ରଙ୍ଗତରଙ୍ଗେ (ଖ)

ଅଧିକେ ସୁରକ୍ଷଣ-କୋଦଣ୍ଡ ସୁରୁ
ଅଧରକ୍ଷଣ ଧରି କଦର୍ଯ୍ୟ-ଉରୁ ୧ ଯେ ।
ଅଟରେ ସ୍ପନ୍ଦେ ଧର ଦୃଢ଼ ଭିଦୁରେ
ଅଙ୍କେ ଟଙ୍କଧରର ଗୁଣଟଙ୍କାରେ ଯେ । ୮ ।
ଅନବଚ୍ଛିନ୍ନ ଘନ ଗାଢ଼ ଗର୍ଜ୍ଜନ
ଅବନୀବନପରେ ପୂରେ ଜୀବନ ଯେ ।
ଅପଥେ କ୍ଷୁଦ୍ର ନଦୀ ବଢ଼ି ବର୍ଦ୍ଧନ
ଅନଙ୍ଗରସେ ସର୍ବଜନ ପ୍ରସନ୍ନ ଯେ । ୯ ।

(ଅନନ୍ତରୋକ୍ତ ପାଞ୍ଚପଦ ଅକ୍ଷର ମନସା ? )

ଅହି ଶ୍ରୀ ପଙ୍କଜମୁଖୀ ୨ ଜୟଭୂଷଣା
ଅଙ୍ଗି ସ୍ପଟେ ଛବି ପୃଥୁଜଘନା ରେ ।
୩ ଅକ୍ଷି ଦ୍ରୁତରଙ୍ଗି ଧ୍ୱଂସି ଉତ୍କୁମାର
ଅଭିନ୍ନ କରି ଯେନ କହ୍ନ ଉଦର ରେ । ୧୦ ।
ଅପୂର୍ବ ନ୍ୟାୟବଳ ଖେଳରେ ଦିନେ
ଅନୁଶ୍ଳେଷେ କହନ୍ତି ଛଳବଚନେ ଯେ ।
ଅନା ତରୁଣି ! ବୁଡ଼ୁଛୁ ଯେ ତରଣୀ
ଅଟୁ ମନ୍ତ୍ରୀ କା ମନେ ରଖି ତୋ ପୁଣିରେ । ୧୧ ।

---

୮। ସୁରକ୍ଷଣ-କୋଦଣ୍ଡ—( ସୁରକ୍ଷଣ ) ଇନ୍ଦ୍ର (କୋଦଣ୍ଡ ) ଧନୁ, ଇନ୍ଦ୍ରଧନୁ । ସୁରୁ—ସୁନ୍ଦର । "କଦର୍ଯ୍ୟଉରୁଁ" ସ୍ଥଳେ "କର୍ଦ୍ଦମ ଉରୁଁ" ପାଠ ସମୀଚୀନ ବୋଧ ହେଉଅଛି । ଧର—ପର୍ବତ । ଭିଦୁରେ—ବଜ୍ରଦ୍ୱାରା । (ଟଙ୍କଧର) ମହାଦେବ (ଅରି) ଶତ୍ରୁ, କାମ । ୯ । ଅନବଚ୍ଛିନ୍ନ—ନିରନ୍ତର । ଘନ—ମେଘ । ଜୀବନ—ଜଳ । ୧୧ । ନ୍ୟାୟବଳ ଖେଳ—ସତରଞ୍ଜ ଖେଳ । ଅନୁଶ୍ଳେଷେ—ଶ୍ଳେଷାର୍ଥକୁ ଅନୁସରଣ କରି । ତରଣୀ—ନ୍ୟାୟବଳ ପକ୍ଷେ ନୌକାସାର; ଅନ୍ୟ ପକ୍ଷେ (ତରଣି) ସୂର୍ଯ୍ୟ ।

୧—କର୍ଦ୍ଦମଉରୁ । ୨—ଜୟଭୂଷଣା । ୩—ଅକ୍ଷଦ୍ରୁ ତରଙ୍ଗି ଧ୍ୱଂସକ କୁମାର (ଖ)

ଅଥ ପତ୍ତି ଉପରେ ଖେଳବୁ ଙ୍କ ରେ
ଅଛୁ ନାଗର ବଳ ଟି ମୋ ତହିଁରେ ଯେ ।
ଅଚଳସୁତା ଶୁଣି କହନ୍ତି ଛଳେ
ଅଛୁ ତ ମୋର ଗ୍ରଜା ଅତନୁ ବଳେ ଯେ । ୧୨ ।
ଅଦ୍ୟ କରୁଛ ବଳ ତୁମ୍ଭେ ବାଜିତ
ଅଛୁ ଏ କରିଗତ ସଜେ ତହିଁତ ଯେ ।
ଅଜ କହନ୍ତି ଘେନ ପଦାତିବଳ
ଅନାଥ ବାମା ତୁ ଯେ ହୋଇବ ଖେଳ ଯେ ।୧୩।

ଚ୍ୟୁତାକ୍ଷର

ଅବଜ ପଦେ କହ ଦେବ ନିର୍ମାଣି
ଅଳତା, ପୀନସ୍ତନେ ଗୁରୁ ସୁବେଣୀ ରେ ।
୧ ଅହ୍ନସରସିଜେକ୍ଷଣେ ତୋଷମତେ
ଅବସନରେ ମୋତେ ମୋହ ନିରତେ ରେ । ୧୪ ।

---

୧୧ । ନ୍ୟାୟବଳ ପକ୍ଷେ—ମନ୍ତ୍ରୀ (ଉଜୀର) ସାର, ଅନ୍ୟ ପକ୍ଷେ (କି ମନ୍ତ୍ରି) କଅଣ ମନ୍ତ୍ରଣା କର ।

୧୨ । ,, ,,—ପତ୍ତି (ପଦାତି) ,, ,, (ପତି) ସ୍ୱାମୀ ।
,, ,,—ନାଗ (ହାତୀ) ,, ,, (ନାଗ) ହାତୀ ।
,, ,,—ରଜା (ସାର) ଅତନୁ ବଳେ ଅଛୁ—ଅତି ବଳବାନ୍ ହୋଇଛ , ଅନ୍ୟପକ୍ଷେ କାମ ରଜା ଅତି ପ୍ରବଳରେ ରହୁଛି ।

୧୩ । ,, ,,—ଆଜି ତୁମ୍ଭେ (ବାଜିତଃ) ଘୋଡକ ସାର ହେତୁ ବଳ ପ୍ରକାଶ କରୁଛ । ଏହୁ (କରିଗତ) ହସ୍ତୀସାରର ଗତି ତହିଁକି ସଜ ହୋଇଛ ।

ଅନ୍ୟପକ୍ଷେ—ବୃଥା ତୁମ୍ଭେ ବଳପ୍ରକାଶ କରୁଛ ଅଥବା (ଜିତ) ଜୟ କର, ଏ (ନିଜକୁ ନିର୍ଦ୍ଦେଶ କରି) କରିଗତି—ହସ୍ତିସମ ଗମନବଶିଷ୍ଟା ତହିଁକି (ସଜ) ପ୍ରସ୍ତୁତ ।

ନ୍ୟାୟବଳ ପକ୍ଷେ—(ଅଜ) ଶିବ ପଦାତି (ବଳ) ସାର ଘେନ କହନ୍ତି, (ବାମା) ସୁନ୍ଦରି ! ତୁ ଅନାଥ, ଖେଳ ହେବ । ଅନ୍ୟପକ୍ଷେ—(ଅତିବଳ) ଅତି ବଳବାନ୍ (ଅଜ) ଶିବ (ପଦ ଘେନ) ପାର୍ବତୀଙ୍କ ପଦକୁ ଧାରଣ କରି ।

୧୪ । ହେ ସୁନ୍ଦରି ! (କହ) ଅନୁମତି ଦିଅ, ମୁଁ (ଅବଜପଦେ) ପଦ୍ମ ତୁଲ୍ୟ ତୋ ପାଦରେ ଅଳତା ନିର୍ମାଣି ଦେବ ଓ (ପୀନ) ପୃଥୁଳ ସ୍ତନ ଉପରେ (ଗୁରୁ) ସୁନ୍ଦର ସୁବେଣୀ ନିର୍ମାଣି ଦେବ । ହେ (ଅହ୍ନସରସିଜେକ୍ଷଣେ !) ଦିବସ ପଦ୍ମ ପରି ପ୍ରଫୁଲ୍ଲ ଲୋଚନେ ! (ଅବସନରେ) ବସ୍ତ୍ରହୀନ—ଦିଗମ୍ବର, ମୋତେ (ତୋଷମତେ) ଆନନ୍ଦ ମନରେ (ନିରତେ) ସର୍ବଦା (ମୋହ) ମୋହିତ କର । ପରବର୍ତ୍ତୀ ଦୁଇ ପାଦର ମୂଳରୁ ଅ'କାର ଚ୍ୟୁତ କଲେ ହ୍ନସ ରସି ଯେ କ୍ଷଣେ ତୋଷ ମତେ । ବଶ ନିରେ... ...—ଅର୍ଥ ସ୍ପଷ୍ଟ ।

ଅ-ପୂର୍ବ ଶୃ-ବର୍ଣ୍ଣେ ମୋ ହୃଦରେ ଆସ
ଅନୁଭବରେ ତରେ ଭୟ ମୋ ନାଶ ଯେ ।
ଅଳପ ନେତ୍ରପ୍ରାନ୍ତେ ଶୁତ ରମଣି !
ଅଦ୍ଭବଲ୍ଲୀ ଭୁଞ୍ଜାଇ ଦିଅନ୍ତ ଆଣି ରେ । ୧୫ ।
ଅନଙ୍ଗ-ରସନିଧି ତୁ ତ ପ୍ରମାଣ
ଅଟେ ଭ୍ରୂଲତା ବୀଚ ନୟନ ମୀନ ରେ ।
ଅମୃତେହାସ ସୁଧା, ଦନ୍ତ ରତନ
ଅମଳମୁଖ ଚନ୍ଦ୍ର ଉଦୟମାନ ରେ । ୧୬ ।
ଅହି ପ୍ରେମାଳି, ସ୍ତନ ଉନ୍ନତ ଗିରି
ଅତନୁ ବୋହିତ ତୋ ଉରୁ ସ୍ଥଳୀ ରେ ।
ଅଙ୍ଗଭୂଷଣ-ଦ୍ୟୁତି ବାଡବାନଳ
ଅର୍ଦ୍ଧ-ନିତମ୍ବ ଦ୍ୱୀପ ଅତି ମଞ୍ଜୁଳ ରେ । ୧୭ ।
ଅର୍ଜ୍ଜୁନ ପୁଷ୍ପମାଳ ଫେନ ବଲ୍ଲଭି !
ଅଟେ ସୁକଣ୍ଠ ଶଙ୍ଖ, ଉତ୍ତୁଙ୍ଗ ନାଭି ରେ ।

---

୧୫ । ଆସ , ମୋ ହୃଦରେ ( ଅପୂର୍ବ 'ଶୃ'ବର୍ଣ୍ଣ—ଅର ପୂର୍ବରେ ଶୃ ବର୍ଣ୍ଣ ବା "ଶୃଅ" ) ଶୟନ କର । ଅନୁଭବରେ—ଅଣୁ ଭିତରେ ବା ଅଳ୍ପକାଳ ମଧ୍ୟରେ (ତରେ) ଶୀଘ୍ର ମୋ ଭୟ ନାଶକର । ହେ ରମଣି ! (ନେତ୍ର ପ୍ରାନ୍ତରେ) ଅପାଙ୍ଗରେ ଅଳ୍ପ ( ଶୁତ ) ଦୃଷ୍ଟି ( ମଧୁର କଟାକ୍ଷପାତ କର ) "ଶୁତ" ଶବ୍ଦ ହିନ୍ଦୀ ଭାଷାରୁ ଗୃହୀତ । ( ଅଦ୍ଭବଲ୍ଲୀ ) ପାନ ଆଣି ମୁଁ ଭୁଞ୍ଜାଇ ଦଅନ୍ତି । ୧୬-୧୮ । ତୁ ( ଅନଙ୍ଗ-ରସନିଧି ) କାମସମୁଦ୍ର ଅଟୁ । ତୋର ଭ୍ରୂଲତା ସେ ଜଳଧିର ( ବୀଚ ) ତରଙ୍ଗ, ( ନୟନ ) ଆଖି, ତାର ( ମୀନ ) ମାଛ ଅଟେ । ଅଷ୍ଟୁଟ ହାସ—ମନ୍ଦହାସ ( ସ୍ମିତ ) ତାର ଅମୃତ । (ସମୁଦ୍ରରୁ ଅମୃତର ଜନ୍ମ, ଏହା ପୁରାଣପ୍ରସିଦ୍ଧ) । ତୋର ଦନ୍ତ ତାହାର ରତ୍ନ । ତୋହର (ଅମଳ ମୁଖ)—ନିଷ୍କଳଙ୍କ ମୁଖ ତାର ଉଦୟମାନ ଚନ୍ଦ୍ର—ଉଇଁ ଆସୁଥିବା ଚନ୍ଦ୍ର । ତୋର ପ୍ରେମାଳି—ପ୍ରେମଲତା, ତାର ଅହି—ସର୍ପ । ତୋର ସ୍ତନ, ତାର (ଉନ୍ନତ ଗିରି)—ଉଚ୍ଚ ପର୍ବତ । ତୋ (ଉରୁ ସ୍ଥଳୀ) ଉରୁ ପ୍ରଦେଶର ଭଙ୍ଗୀ (ଅତନୁ ବୋହିତ) କାମର ଜାହାଜ । ତୋର ( ଅଙ୍ଗ-ଭୂଷଣ-ଦ୍ୟୁତି ) ତୋର ଦେହର ଅଳଙ୍କାରର ତେଜ ( ବାଡ଼ବାନଳ ) ସମୁଦ୍ର ଭିତରେ ଥିବା ଅଗ୍ନି । (ଅର୍ଦ୍ଧ-ନିତମ୍ବ)—ଚକାକାର ନିତମ୍ବ (ପିଣ୍ଡ) ଦ୍ୱୀପ ପରି । ଅତି ମଞ୍ଜୁଳ—ଅତି ସୁନ୍ଦର । ହେ ବଲ୍ଲଭି—ପ୍ରିୟେ । ତୋର (ଅର୍ଜ୍ଜୁନ ପୁଷ୍ପମାଳ)—ଧଳା ଫୁଲମାଳା, ତାର ଫେନ । ତୋର (ସୁକଣ୍ଠ) ଉତ୍ତମ କଣ୍ଠ

ଅଙ୍ଘ୍ରି-ମଞ୍ଜୁ-ମଞ୍ଜୀର୍-ସ୍ୱନ ତା ଡାକ
ଅବ୍ଜ-ରଜ-ଚନ୍ଦନ ସିକତା ପଙ୍କ ରେ । ୧୮ ।
ଅତନୁ-ତାପେ ଦନ୍ଧ ହେବାରୁ ଦେହ
ଅତି ସୁଖରେ ରସେ ବୁଡନ୍ତି ମୁହିଁ ରେ ।
ଅଣୁମାତ୍ର ଅନ୍ତର୍ ହୋଇବ ନାହିଁ
ଅହର୍ନିଶି ଭାବନା ମୋହୋର୍ ଏହି ରେ । ୧୯ ।
ଅନୁଦିନେ ବଞ୍ଚନ୍ତି ଏ ସ୍ନେହ ଥୋଇ
ଅନୁସରନ୍ତି ଯଥା ଦେହକୁ ଛାଇ ରେ ।
ଅନୁଜ୍ଞାମାନ ଆନ କରନ୍ତି ନାହିଁ
ଅନୁକମ୍ପାରେ ମିଥେ ଲୋଭକୁ ବହି ଯେ । ୨୦ ।

ଅଦ୍ରିକୁମାରୀ ଦିନେ ମନ-ତରଙ୍ଗେ
ଅନଙ୍ଗେ ମାତିଥିଲେ ବଲ୍ଲଭ ସଙ୍ଗେ ରେ ।
ଅକ୍ଷି ପଡିଲା ବର-କପର୍ଦ୍ଦେ ଯାଇଁ
ଅମର୍-ନଦୀ ଛନ୍ତି ଦେଖିଲେ ତହିଁ ଯେ । ୨୧ ।

---

ତାର ଶଙ୍ଖ । ତୋର ନାଭି ତାର ଭଉଁରୀ । ତୋର ( ଅଙ୍ଘ୍ରି-ମଞ୍ଜୁମଞ୍ଜୀର-ସ୍ୱନ ) ପାଦର ସୁନ୍ଦର ନୂପୁରର ଶବ୍ଦ ତାର ( ଡାକ ) ଗର୍ଜନ । ତୋର ( ଅବ୍ଜରଜ ) କର୍ପୂର ଗୁନା ତାର ( ସିକତା ) ବାଲି । ତୋର ଚନ୍ଦନ, ତାର ପଙ୍କ । ୧୯ । ମୋ ଦେହ—ଶରୀର । ଅତନୁତାପେ କାମ ସନ୍ତାପେ, (ଦନ୍ଧ ହେବାରୁ) —ପୋଡିବାରୁ (ମୁହିଁ)—ମୁଁ ଅତି ସୁଖରେ (ରସେ) ଶୃଙ୍ଗାରସ୍ୱରୂପ ଜଳରେ ବୁଡନ୍ତି । ( ଅଣୁମାତ୍ର ) ଟିକିଏ ହେଲେ ( ଅନ୍ତର ) ଅଲଗା ହେବ ନାହିଁ । ମୋହର ( ଅହର୍ନିଶି)ଦିନରାତି ଏହି ଭାବନା । ୨୦ । ( ଏ ସ୍ନେହ ଥୋଇ ) ଏ ପ୍ରକାର ସ୍ନେହ ରଖି, (ଅନୁଦିନେ) ସବୁଦିନେ ମୁଁ ( ବଞ୍ଚନ୍ତି ) ଜୀବନ ଧାରଣ କରନ୍ତି । ଦେହକୁ ଛାଇ ପରି ଅନୁସରିଥାନ୍ତି । ଅନୁକମ୍ପାରେ—ଅନୁଗ୍ରହ ବା କରୁଣାପରବଶ ହୋଇ । ମିଥେ—ପରସ୍ପର ( ଲୋଭ ) ମମତା ବହି ( ଅନୁଜ୍ଞାମାନ ) ଆଦେଶ ମାନ ( ଆନ ) ଅନ୍ୟଥା କରନ୍ତି ନାହିଁ । ୨୧ । ଅଦ୍ରିକୁମାରୀ—ପାର୍ବତୀ । ମନ-ତରଙ୍ଗେ—ମନ ଉତ୍ସୁକରେ । ଅନଙ୍ଗେ—କାମକ୍ରୀଡାରେ । ବର-କପର୍ଦ୍ଦ—ସ୍ୱାମୀଙ୍କର ଜଟାଜୁଟ । ଅମର-ନଦୀ —ଗଙ୍ଗା ।

ଅମୃତ-ଚନ୍ଦ୍ରରୁଚ ବଚନ୍ଦ ତୋଷ୍
ଅଙ୍ଗଭୂଷଣଗଣ ଈକ୍ଷଣ-କାସ୍ ଯେ ।
ଅସିତ ଝୀନବାସ ଭୂଷିତ ଅଙ୍ଗ
ଅଧର୍ ନନ୍ଦେ ବମ୍ବ ବଧୂଲି ରଙ୍ଗ ଯେ । ୨୨ ।
ଅଣୁକ୍ଷୀଣମଧ୍ୟମା ସ୍ଥାଣୁଉରଜା
ଅମଳଗାତ୍ରୀ କାନ୍ତ-ଧଜଧରଜା ଯେ
ଅଶେଷ ବାମାଶିର୍-ହୀର୍‌ଭ୍ରମଣି
ଅଙ୍ଘ୍ରି ଅସମ ଯାର୍ ସୁର୍-ରମଣୀ ଯେ । ୨୩ ।
ଅନାଇ ସୁର୍-ତରଙ୍ଗିଣୀ ଏ ତୋଷ୍
ଅମ୍ବିକା କୋଧେ ହେଲେ ଅତ ଅଧୀସ୍ ଯେ ।
ଅଙ୍କୁ ଖସି ବସିଲେ ମହୀ ଉପରେ
ଅକ୍ଷି ପୂର୍ଣ୍ଣ ହେଲାକ ଲୁଅ-ଆପରେ ଯେ । ୨୪ ।
ଅଧର୍ ଥରଥର୍ ଅରୁଣ ମୁଖ
ଅବନୀ ଚର୍‌ବାକୁ ଉନ୍ମୁଖ ନଖ ଯେ ।
ଅଳକର୍ ତିଳକ ପକାଇ ପୋଛୁ
ଅଳକାର୍ ସୁମନ ନ ରଖେ କାଛୁ ଯେ । ୨୫ ।

---

୨୨ । ଅମୃତଚନ୍ଦ୍ରରୁଚ—ଅମୃତମୟ ଚନ୍ଦ୍ରଙ୍କର କାନ୍ତି ପର କାନ୍ତିଯୁକ୍ତା । ବଚନ୍ଦ ତୋସ—ଚମତ୍କାର ଝଟକ । ଅଙ୍ଗଭୂଷଣଗଣ—ଦେହର ଅଳଙ୍କାରମାନ । ଈକ୍ଷଣ-କାସ—ନେତ୍ରର ବନ୍ଦୀଘର । ଅସିତ ଝୀନବାସ—ଧଳା ଅତି ସରୁଲୁଗା । ଚନ୍ଦ୍ରାସ (ଅଙ୍ଗ)—ଦେହ, (ଭୂଷିତ)—ଅଳଙ୍କୃତ । ଅଧର—ଓଷ୍ଠ । ବମ୍ବ—ଗୋରୁଖିଆଫଳ (କଇଁଚ କାକୁଡ ଫଳ) । ବଧୂଲି—ଦପହରିଆ ଫୁଲ । ଅଙ୍ଗ ଶରୀର । ଏଠାରେ କାନ୍ତି ହିଁ ଅଭିପ୍ରେତ ।୨୩। ଅଣୁକ୍ଷୀଣ-ମଧ୍ୟମା—ଅତି ସରୁ କଟି । ସ୍ଥାଣୁଉରଜା—ଶିବଲିଙ୍ଗ ପରି ପୃଥୁଳ ସ୍ତନବିଶିଷ୍ଟା । ଅଶେଷ·····ମଣି—ସମସ୍ତ ସ୍ତ୍ରୀଜାତିର ମସ୍ତକସ୍ଥିତ ହୀରା ପରି ଅର୍ଥାତ୍ ନାରୀଶ୍ରେଷ୍ଠା । ସୁରରମଣୀ—ଦେବ ସ୍ତ୍ରୀ,ଯାହାର (ଅଙ୍ଘ୍ରି-ଅସମ)—ପାଦ ତଳକୁ ସରି ନୁହନ୍ତି ।୨୪। ସୁରତରଙ୍ଗିଣୀ—ଗଙ୍ଗାକୁ । ଏ ତୋସ—ଏ ପ୍ରକାର ଉଜ୍ଜ୍ୱଳବେଶୀ ଦେଖି, ଅମ୍ବିକା ପାର୍ବତୀ, କୋଧରେ ଅତି ଅଧୀର ହେଲେ । ଅଙ୍କୁ – କୋଳରୁ । ମହୀ ଉପରେ—ଭୂଇଁ ରେ, ଅକ୍ଷି—ଆଖି । ଲୁଅ—ଲୁହ (ଅଶ୍ରୁ) । ଆପରେ—ଜଳରେ । ୨୫ । ଅରୁଣ—ରକ୍ତବର୍ଣ୍ଣ । ଅବନୀ ଚରିବାକୁ—ଭୂଇଁରେ ଗାର ପକାଇବାକୁ ( କୋଧ ଓ ଲଜ୍ଜାବେଳେ ସ୍ତ୍ରୀମାନେ ଭୂଇଁରେ ନଖରେ ଗାର ପକାନ୍ତି ।) ଉନ୍ମୁଖ—ଉଦ୍ୟତ । ଅଳକର—କପାଳର । ତିଳକ—ଚନ୍ଦନ, କସ୍ତୁରୀ ପ୍ରଭୃତିର ଟିକା । ଅଳକାର ସୁମନ – କେଶରେ ଭଆ ହୋଇଥିବା ଫୁଲ ।

ଅତ୍ର ଯଷ୍ଟିପ୍ରହାରେ ଯଥା ଅସ୍ଥିର
ଅଙ୍କୁଶଘାତେ ଦନ୍ତୀ ଯେହ୍ନେ ପ୍ରଖର ଯେ
ଅନାଇ ସେ କୋପନା-ସ୍ୱିତ ମହେଶ
ଅତି କାତର ହୋଇ ମତ ବିରସ ଯେ । ୨୬ ।
ଅନଳନୟନ ବାଞ୍ଛାପ୍ରଦ ଶିବ
ଅକଳଙ୍କ ବଦନ ସିତାବୟବ ହେ
ଅଚଳ-ବାସ ଏକାଚମ୍ବିତ ତେଜ
ଅଲେକିତ ସ୍ୱିତ ହେ ତା ଜାଣେ ଅଜ ହେ । ୨୭ ।

ଗୋମୂତ୍ରିକା ବନ୍ଧ

| ଅ | ନ୍ତୁ | ର | ପ | କ୍ଷ | ନ | ର | ର | କ୍ଷ | ତ୍ର | ଣ | ଦ |
|---|---|---|---|---|---|---|---|---|---|---|---|
| ଅ | ସୁ | ର | ର | କ୍ଷ | ବ | ର | ମୋ | କ୍ଷ | କ୍ଷ | ଣ | ଦ |

ଅନ୍ତୂରପକ୍ଷ ନରରକ୍ଷ-ତ୍ରାଣଦ
ଅସୁର ରକ୍ଷବର ମୋକ୍ଷକ୍ଷଣଦ ହେ
ଅଜସ୍ର ଜଗଜ୍ଜନ ଜଳ ଜଳଜ
ଅକ୍ଷେ ଅନାଥ ହୁଅ ତ ଅସ୍ପୃଅଜ ହେ ? ୨୮ ।

---

୨୬ । ଅତ୍ର—ସାପ । ଯଷ୍ଟିପ୍ରହାରେ—ବାଡ଼ି ଆଘାତରେ । ଅଙ୍କୁଶଘାତେ—ଅଙ୍କୁଶ ମାଡରେ । ଦନ୍ତୀ—ହାତୀ । ପ୍ରଖର—ରାଗରେ ଜରଜର । କୋପନାସ୍ୱିତ—କ୍ରୋଧଯୁକ୍ତା ପାର୍ବତୀଙ୍କର ଡାଙ୍ଗ । ମହେଶ—ଶିବ । ବିରସ—ଦୁଃଖିତ । ୨୭ । ଅନଳନୟନ—ଅଗ୍ନି ଯାହାଙ୍କର ନେତ୍ର । ବାଞ୍ଛାପ୍ରଦ—କାମନା ପୂରଣକାରୀ । ଶିବ—ମଙ୍ଗଳପ୍ରଦ । ଅକଳଙ୍କ-ବଦନ—ନିର୍ମଳ-ମୁଖ । ସିତାବୟବ—ଧବଳ ଶରୀର । ଅଚଳବାସ – ପର୍ବତବାସୀ । ଏକ—ଅଦ୍ୱିତୀୟ । ଆଚମ୍ବିତ - ବିସ୍ମୟ-ଉତ୍ପାଦକ । ତେଜ—ପ୍ରଭବ । ଅଲେକିତ—ଅଲୌକିକ (ଅସାଧାରଣ)। ସ୍ୱିତ—ପ୍ରକାର । ଅଜ—ଜନ୍ମରହିତ (ସମ୍ବୋଧନ) । ୨୮ । (ଅନ୍ତୂର ପକ୍ଷ) ଦୟାଳୁମାନଙ୍କର ସହାୟ (ଯେଉଁ ନର ) ମନୁଷ୍ୟମାନେ, ସେମାନଙ୍କର (ରକ୍ଷାକର୍ତ୍ତା) ପାଳନ କର୍ତ୍ତା । (ଅସୁର-ରକ୍ଷବର ) ବାଣ ପ୍ରଭୃତି ଅସୁର ଓ ( ରକ୍ଷବର ) ରାକ୍ଷସଶ୍ରେଷ୍ଠମାନଙ୍କର ( ମୋକ୍ଷ କ୍ଷଣଦ)– ମୋକ୍ଷରୂପ ଉତ୍ସବପ୍ରଦ । × × + ×

ଅପର ଛାନ୍ଦେ ମାନ ଗୃହ୍ନୁ ବନିତ
ଅର୍ପିତ କରିବେ ଶ୍ରୀନୈଳେକ୍ୟପତି ଯେ
ଅନ୍ନେ ଶଙ୍କର ହର ଗିରିଜାଧବ
ଅନନ୍ତେ ବଳଭଦ୍ର ଶରଣ ହେବ ହେ । ୨୯ ।

———

## ତ୍ରିଂଶ ଛାନ୍ଦ

### ମାନଭଞ୍ଜନ ଗୃହ୍ନୁ

ରାଗ – ଭାମୋଦୀ

ଅମ୍ବିକାବିଳାସରସ ରସସୁଖାକର କର ମନେ ଧୀବରବର
ଅମୃତଛବିଧର-ଧର ଯାହାର ପୁର ପୁର ପର୍ଣହର ହର ସେ
ଉମାବର,
ଅନଙ୍ଗରେ କାତରତର
ଅତି ହେବାରୁ ତରତର
ଅର୍ପିତ କଲେ ବର-ବରମୀକ ଉତ୍ତର ତରଲେ ହୋଇ ଜରଜର ସେ
ଉମାବର । ୧ ।

---

ତ୍ରିଂଶ ଛାନ୍ଦ

୧ । ଅମ୍ବିକାବିଳାସ ରସ—ପାର୍ବତୀଙ୍କ କ୍ରୀଡ଼ାରସ । ରସସୁଖାକର—ଶୃଙ୍ଗାରାଦି ରସଜନିତ ସୁଖର ( ଆକର ) ଆଧାର । ହେ ( ଧୀବରବର ) ପଣ୍ଡିତଶ୍ରେଷ୍ଠମାନେ ତାହାକୁ ( ମନେକର ) ବିଚାରକର, ହେଜ । ( ଅମୃତଛବିଧର ) ଅମୃତର କାନ୍ତିପରି କାନ୍ତିକୁ ଧାରଣ କରିଥିବା ( ଧର ) ପର୍ବତ ଅର୍ଥାତ୍ କୈଳାସ ଯାହାର ( ପୁର ) ଗୃହ । ସେ ( ପୁର-ପର୍ଣ-ହର ) ତ୍ରିପୁରର ବିନାଶକାରୀ ଏବଂ ସେ (ହର) ପାପହରଣ କରୁଥିବାରୁ ହର ନାମରେ ଖ୍ୟାତ, ସେହି ( ଉମାବର ) ପାର୍ବତୀଙ୍କ ସ୍ୱାମୀ, ଶିବ; (ଅନଙ୍ଗରେ ) କାମରେ, ( କାତରତର ) ଅତିଶୟ କାତର ହୋଇ, ( ଅତି ତରତର ) ଚଞ୍ଚଳମନା ହେବାରୁ, ( ତରଲେ ) ଅପ୍ରୈର୍ଯ୍ୟ ଦ୍ୱାରା, (ଜରଜର) ଅତି ଅସ୍ଥିର ହୋଇ ( ବରବରମୀକ ) ବରବର୍ଣ୍ଣିନୀ—ଉତ୍ତମ ଜାତୀୟା ସ୍ତ୍ରୀ ପାର୍ବତୀଙ୍କୁ କହିବାକୁ ଲାଗିଲେ । 'ଯୋଷା ଯୋଷିଦ୍ଵାସିତା ବର୍ଣ୍ଣିନୀ ସ୍ତ୍ରୀ" ଇତି ହଳାୟୁଧ ।

ଅପୂର୍ବ ମୃଦୁଭାଷ ଭାଷନ୍ତୁ ରେ ସରସ-ରସଜାକ୍ଷି ବରଷ ରସ
ଅଙ୍କରେ ବସ ବଶ ଭୋର ମୁଁ ଦାସ ନାଶ ନାଶକ ମାର ହାସ ହାସ ରେ
ପ୍ରାଣବନ୍ଧୁ,
ଅବ୍ଜ-ଆନନ୍ଦ ଆସ ଆସ
ଅଙ୍ଗଦେଶେ ନବେଶ ବେଶ
ଅରବିନ୍ଦ-ସଦୃଶ ଦୃଶ ଖେଳା ବିକାଶ କାଶ କୁମୁଦ ହସ ହସରେ
ପ୍ରାଣବନ୍ଧୁ । ୨ ।

ଅଦୟ ହୋଇ କରି କରିଗତି ଏପରି ପରିଜନେ ବିଗୃରି ଗୃରି—
ଅଙ୍କ-କଟି ନାଗରି ! ଗରିଷ୍ଠ ମୋ ବଇରୀ ଈରଷା ମନେ ଧରି ଧରି ରେ
ପ୍ରାଣବନ୍ଧୁ,
ଅସ୍ମମାନଙ୍କୁ ମାରି ମାରି
ଅଙ୍ଗ ଦେଲାନି ଥରି ଥରି
ଅବ୍ଜାନନ ଗଉରି ଉରୀକୃତ ନ କରି କରିଛୁ ଏତେ ପରି ପରି ରେ
ପ୍ରାଣବନ୍ଧୁ । ୩ ।

---

୨। ଅପୂର୍ବ—ଅସାଧାରଣ । ମୃଦୁଭାଷ—ମଧୁର କଥା । ଭାଷନ୍ତୁ—କହୁଅଛନ୍ତୁ ରେ ସରସରସଜାକ୍ଷି—( ସରସ ) ପ୍ରଫୁଲ୍ଲ ( ରସଜ ) ଜଳଜ—ପଦ୍ମ ପରି ଅକ୍ଷି ଯାହାର—ହେ ପ୍ରଫୁଲ୍ଲ ପଦ୍ମଲୋଚନେ । ( ରସ ) ଅନୁରାଗ, ସ୍ନେହକୁ , ( ବରଷ ) ବୃଷ୍ଟିକର ( ଅଙ୍କରେ ) କୋଳରେ ( ବସ ) ଉପବେଶନ କର; ମୁଁ ତୋର (ବଶ) ଅନୁଗତ (ଦାସ) ଭୃତ୍ୟ ଅଟେ । ନାଶକ—ବିନାଶକାରୀ, ଘାତୁକ । ମାରହାସ —କାମଭୟ (ହାସ) ନାଶକର । ( ଅବ୍ଜଆନନ ) ହେ ପଦ୍ମମୁଖି ( ଅଙ୍ଗଦେଶେ ) ଶରୀରରେ ( ବେଶ ) ଅଳଙ୍କାରାଦି, ( ନବେଶ ) ଖଞ୍ଜିଦିଅ । ( ଅରବିନ୍ଦ-ସଦୃଶ ) ପଦ୍ମତୁଲ୍ୟ (ଦୃଶ) ଆଖି, (ତାର) ଖେଳା—କ୍ରୀଡ଼ା, ଚଞ୍ଚଳ ଚଳନାଦି ( ବିକାଶ ) ପ୍ରକାଶ କର । ( କାଶ ) କାଶତଣ୍ଡୀ ଫୁଲ ଓ କୁମୁଦ—କଇଁପରି (ଧବଳ) ହସକୁ(ହସ) ଅର୍ଥାତ୍ ପ୍ରକାଶ କର । ( ହସଟାଏ ହସି ଦେଲ ଇତ୍ୟାଦି ପ୍ରୟୋଗବତ୍ ) ।
୩ । ହେ ସୂକ୍ଷ୍ମଅଙ୍କ କଟି—ସୂକ୍ଷ୍ମ ଅଙ୍କ ପରି ସୂକ୍ଷ୍ମମଧ୍ୟା (ନାଗରି) ପାର୍ବତି ! (ହେ କରିଗତି ) ଗଜଗମନେ ! ( ଏ ପରିଜନେ ) ଭୃତ୍ୟଠାରେ, (ଅଦୟ) ନିର୍ଦ୍ଦୟ-ହୋଇ,(ଏପରି ବିଗୃରି ? ) ବିଗୃର କରିବା ଉଚିତ କି ? ମୋ' ( ବଇରୀ ) କାମ, ( ଗରିଷ୍ଠ ) ଅତି ବଳବାନ୍ । ସେ ମନେ ମନେ ଈର୍ଷ୍ୟା ଧରି ଧରି ଅସ୍ମମାନଙ୍କୁ, ( ମାରି ମାରି ) ବାରମ୍ବାର ପ୍ରେରଣ କରି, ମୋ ଅଙ୍ଗମାନଙ୍କୁ ଥରଥର କେଲାଣି । ହେ ( ଅବ୍ଜାନନ ) ଚନ୍ଦ୍ରାନନ ଗଉରି! ତୁ (ଉରୀକୃତ) ସ୍ୱୀକାର ନ କରି ମୋତେ (ଏତେ ପରି) ଏତେ ପର କରୁଛୁ ପରି !

ଅବନୀରେ ନ ଗାର ଗାର ମୁଁ ତୋ କାଙ୍କର କରନା ଗଣ୍ଡେ କ'ର କର
ଅଛି ତୁ ପସ୍ତ ପୁର ପୁରତେ ମୋତେ ମାର ମାରଇ ମନେ କର କର ରେ
ପ୍ରାଣବନ୍ଧୁ,
ଅଶ୍ରୁ କରଣ ଝର ଝର
ଅଧର କରୁ ଥର ଥର
ଅତ ସଘନେ ଉର ଉରଜେ ଭିଡ ଧର ଧରଜା ମୋତେ ତରତର ରେ
ପ୍ରାଣବନ୍ଧୁ । ୪ ।
ଅଞ୍ଜନପୁଞ୍ଜ-ଘନ-ଘନକେଶି ବିମନ ମନ ନ କର ଛନ ଛନ
ଅମାନ ଶ୍ୱାସ ଘନ ଘନ ନ ତେଜ ମାନ ମାନସେ ଆଉ ଧନ ଧ'ନରେ
ପ୍ରାଣବନ୍ଧୁ,
ଅମନ୍ଦେ ଶୁଣା ମନମନ
ଅଦ୍ୟ କର ସୁମନ ମନ
ଅନୁଜ୍ଞା ଦିଅ ପାନ ପାନ କରାଇ ଆନ ଆ ନବୀନା ମୋଘେ ନ ଘେନ ରେ
ପ୍ରାଣବନ୍ଧୁ । ୫ ।

---

୪ । ହେ ( ଧରଜା ) ପାର୍ବତି ! ତୁ ( ଅବନୀରେ ) ଭୂଇଁରେ, ( ନ ଗାର ) ଗାର ପକାଅ ନାହିଁ । ମୁଁ ତୋର ( କାଙ୍କର ) ଭୃତ୍ୟ , ଏହା ( ଗାର ) ନିଶ୍ଚିତ । (ଗଣ୍ଡେ) ଗାଲରେ, (କମ୍ବା) ( କ'ର ) ମସ୍ତକରେ, ( କର ) ହସ୍ତ, ( କରନା ) କର ନାହିଁ । ତୁ (ମୋର) ପୁର—ଗୃହ (ନଗୃହଂ ଗୃହମିତ୍ୟାହୁ ର୍ଗୃହିଣୀ ଗୃହ-ମୁଚ୍ୟତେ) ଏହି ସ୍ଥିତିରେ ଅଛୁ ପସ୍ତ । ( ପୁରତେ ) ତୋ ସମ୍ମୁଖରେ, ମାର ମୋତେ ( ମାରଇ ) ମାରୁଛି,ଏହା ମନେକର । ତୁ, (ଅଶ୍ରୁ) ଲୋତକ, ଝର ଝର କରି ଅଧରକୁ ଥର ଥର କରୁଛୁ । ଅତ ( ସଘନେ ) ନିବିଡ଼ ଭାବେ, ( ତର ତର ) ଅତିଶୀଘ୍ର, ମୋ (ଉରକୁ,) ବକ୍ଷକୁ (ଉରଜେ) ସ୍ତନରେ, ଭିଡ ଧର ।୫। (ଅଞ୍ଜନପୁଞ୍ଜ) କଜ୍ଜ୍ୱଳ ସଦୃଶ ଓ ( ଘନ ) ମେଘପରି (କଳା) ଓ ( ଘନ ) ଗହଳ କେଶବିଶିଷ୍ଟ । ହେ ପାର୍ବତି ! ମନକୁ, ( ବିମନ ) ଦୁଃଖିତ କର ନାହିଁ । ମନକୁ ( ଛନ ଛନ ) ଚଞ୍ଚଳ କର ନାହିଁ । ( ଅମାନ ) ଅତିଦୀର୍ଘ, (ଶ୍ୱାସ) ନିଃଶ୍ୱାସ; ( ଘନ ଘନ ) ଚଞ୍ଚଳ ଚଞ୍ଚଳ, ( ନ ତେଜ ) ପରିତ୍ୟାଗ କର ନାହିଁ । ରେ ଧନ ! ( ମାନସେ ) ମନରେ, ଆଉ ( ମାନ ) କ୍ରୋଧ, ( ଧ'ନ ) ଧର ନାହିଁ । ଅମନ୍ଦେ ଅତିଶୀଘ୍ର, (ମନମନ) ଗଦଗଦ ଧ୍ୱନି, ଶୁଣାଅ । ( ଅଦ୍ୟ ) ଆଜ ( ସୁମନ କର ) ମନକୁ-ପ୍ରସନ୍ନ କରି, ( ପାନ ) ତାମ୍ବୁଲ, ( ପାନ କରାଇ ) ଖୁଆଇ ମୁଖରୁ ( ଆନ ) ଅପର, (ଅନୁଜ୍ଞା) ଆଦେଶ ଦିଅ । ନବୀନା—ହେ ମୁଗ୍‌ଧେ, ଆ' ଏହା ( ମୋଘେ ) ବ୍ୟର୍ଥରେ (ନ ଘେନ) ଗ୍ରହଣ କର ନାହିଁ ।

ଅପସର୍ବୃନ୍ଦରେ ଦରେ ମନ ନ ଧରେ ଧରେଶଜା ସ୍ନେହରେ ହରେ
ଅଛୁ କି ଜଗତରେ ତରେକ୍ଷଣୀ ଗ୍ରାମାରେ ମାରେ ତୋତେ ଭୂପରେ ପରେରେ
ପ୍ରାଣବନ୍ଧୁ,
ଅନା ଅନା ସୁଖରେ ଖରେ
ଅଛୁ ସେବାରେ ବାରେ ବାରେ
ଅତନୁ-ର୍ସଧିରେ ଧୀରେ ଭାସି ଭସାରେ ସାରେଭଗତ ! ଆରେ ଆରେ ରେ
ପ୍ରାଣବନ୍ଧୁ । ୨ ।
ଅନା ରଜନୀ-ଧବ ଧବଳକରେ ଭବ-ଭବନ-ଶୋଭା ଜୀବଜୀବ !
ଅତନୁଶର ନବ ନବମାଲିକା ଶିବ ଶିବ କି ହେବ ଜୀବ ଯିବ ରେ
ପ୍ରାଣବନ୍ଧୁ,
ଅନଷ୍ଟ କାମଦେବ ଦେବ
ଅବଶ୍ୟ ସଦାଶିବ ଶିବ

---

୨। ଅପସର୍ବୃନ୍ଦରେ—ଅପସରମାନଙ୍କଠାରେ, ମୋ ମନ (ଦରେ) ଅଳ୍ପପରିମାଣରେ ମଧ୍ୟ,(ନ ଧରେ) ଲାଗେ ନାହିଁ, ରହେ ନାହିଁ, କେବଳ (ଧରେଶଜା) ପାର୍ବତୀ (ସ୍ନେହରେ) ପ୍ରୀତିରେ ମୋ ମନକୁ (ହରେ) ହରଣ କରେ । (ଜଗତରେ) ବିଶ୍ୱରେ (ତରେକ୍ଷଣୀଗ୍ରାମାରେ) ଚଞ୍ଚଳନେତ୍ରା ସ୍ତ୍ରୀମାନଙ୍କ ମଧ୍ୟରେ (ଭୂପରେ) ପୃଥିବୀପୃଷ୍ଠରେ (ମାରେ—ମା ଲକ୍ଷ୍ମୀ) ଶୋଭାରେ (ତୋତେ ପରେ)—ତୋ'ପ୍ରତି ଉତ୍କୃଷ୍ଟ ଭାବରେ(ଅଥବା ତୋହ୍ନପରି) କିଏ ଅଛି ? (ଖରେ) ଶୀଘ୍ର, ସୁଖରେ (ଅନା ଅନା) ଚାହଁ ଚାହଁ । ମୁଁ ତୋ ସେବାରେ—ସେବକ କାର୍ଯ୍ୟରେ, (ବାରେ ବାରେ) ବାରମ୍ବାର ରହିଅଛି । ଆରେ ପ୍ରାଣବନ୍ଧୁ ! ହେ(ସାରେଭଗତ)ଉତ୍କୃଷ୍ଟ ହଂସପରି ଗମନ-ବିଶିଷ୍ଟା ! ତୁ (ଅତନୁରସଧିରେ) କାମସମୁଦ୍ରରେ ଧୀରେ ଭାସି ଭସା । ତୋ ହୃଦୟରେ ଅଳ୍ପ କାମଭାବର ଉଦ୍ରେକ ଦେଖିଲେ ଏ ସେବକର ମନ ଅତି ଉତ୍ଫୁଲ୍ଲ ହେବ । ୨ । ହେ (ଜୀବ-ଜୀବ) ହେ ପ୍ରାଣାଧିକେ ! (ରଜନୀଧବଙ୍କର) ଚନ୍ଦ୍ରଙ୍କର, (ଧବଳକରେ) ଧଳା କିରଣରେ ହୋଇଥିବା (ଭବ-ଭବନର) ପୃଥିବୀ ରୂପ ଗୃହର, ଶୋଭାକୁ (ଅନା) ଦେଖ । (ଅତନୁଶର) କନ୍ଦର୍ପଶରସ୍ୱରୂପ, (ନବ) ନୂଆ, ପ୍ରସ୍ଫୁଟିତ ନବମାଲିକାକୁ ମଧ୍ୟ ଦେଖ । (ଶିବଶିବ) ହାୟ ହାୟ (ଖେଦୋକ୍ତି) କଅଣ ହେବ କେଜାଣି ? (ଜୀବ) ପ୍ରାଣ (ଯିବ) ଚାଲିଯିବ । କାମଦେବ, (ଅନଷ୍ଟ) ଅମଙ୍ଗଳ ଫଳ ଦେବ । (ଅବଶ୍ୟ) ନିଶ୍ଚୟ ଶିବକୁ ଅର୍ଥାତ୍ ମୋତେ (ସଦାଶିବ) ମାରିବ । ହେ ବନ୍ଧୁ ! ଆସ, ମୋର (ଅଙ୍କେ) କୋଳରେ ବସ । (ରଣଭାବ)

ଅଙ୍କେ ମୋର୍ ଆସ ବସ ବନ୍ଧୁ ରତିଭାବ ଭାବ ସ୍ନେହେ ଦୁର୍ଲ୍ଲଭ ଲଭ ରେ
ପ୍ରାଣ ବନ୍ଧୁ । ୭ ।

ଅଙ୍ଗନା ଅନା ଅନା ବଶ ଦାସ ନାଶ ନା ଘେନ ବାରେ ସୁମନା ମନା
ଅୟେ ନବୀନା ବିନା ଦୋଷେ ହେବ ନା ବିନାଶ ମୁଁ ହେଜ ଭାବନା ବନା ରେ
ପ୍ରାଣବନ୍ଧୁ,
ଅପାଙ୍ଗରଙ୍ଗେ ଅନା ଅନା
ଅନଙ୍ଗ କରେ ଚେନା ଚେନା
ଅବ୍ଜ-ହାସି ନାଶି ନା କି ସୁଖ-ମନା ମନାକୁଳେ ଭାଷ ନା ନା ନା ନା ନା ରେ
ପ୍ରାଣବନ୍ଧୁ । ୮ ।

ଅତି ପରମରମଣୀୟ ଆରାମ ରମନୟନା ଗୃହୁଁ କାମ କାମ
ଅଧିବେ ତମତମ ଉକ୍ତ ତ ତମ-ତମ-କେଶି ! ଏ ନିଶି କାମ କାମ ରେ
ପ୍ରାଣବନ୍ଧୁ,
ଅନାଇଁ ତୋ ଏ ତମତମ
ଅଙ୍ଗ ମୋ ହୋଏ ଦମଦମ

---

ଯୁରତିବଶଯୁକ୍ତ ଭାବନାକୁ ( ସ୍ନେହେ ) ପ୍ରୀତିସହ ( ଭାବ ) ମନରେ କର, ଦୁର୍ଲ୍ଲଭ ( ଯଶଃ )କୁ ଲଭକର । ୮ । ରେ ଅଙ୍ଗନା, ( ଅନା ଅନା ) ଦେଖ ଦେଖ, ( ବଶ ) ବଶୀଭୂତ ( ଦାସ ) ଭୃତ୍ୟକୁ ( ନାଶ ନା ) ନାଶ କର ନାହିଁ । ହେ ସୁମନ ( ବାରେ ) ଥରେ ମାନ (ମନା ଘେନ) ବାରଣ ମାନ । ଅୟେ (ହେ) ନବୀନା, ବିନା ଦୋଷେ ବିନାଶ (ହେବ ନା ?) ହେବା ଠିକ ? ଏହି କଥା ହେଜ (ଭାବନାକୁ) ଚିନ୍ତାକୁ (ବନା) ତିଆର କର ଅର୍ଥାତ୍ ରଚନା କର । ( ଅପାଙ୍ଗରଙ୍ଗେ ) କଟାକ୍ଷଛଟାରେ ଚାହିଁ ଚାହିଁ । (ଅନଙ୍ଗ) କାମ ମୋତେ ( ଚେନା ଚେନା ) ଟିକି ଟିକି ( କରେ ) କରୁଛି । ହେ (ଅବ୍ଜହାସି) ଚନ୍ଦ୍ରହାସି ( ନା ) ପୁରୁଷକୁ ନାଶି ( ସୁଖମନା ) ଆନନ୍ଦମନା ହେବୁ କି ? ଅତଏବ ( ମନାକୁଳେ ) ମନ ଦୁଃଖରେ 'ନା ନା ନା ନା' ଏହି ପଦମାନ ( ଭାଷନା ) କହନା । ଅଥବା ମନ ଦୁଃଖରେ (ନା ନା ନା ନା) ଏଣୁତେଣୁ ଅନେକପ୍ରକାର କହନା । ୯ । ହେ ( ରମନୟନା) ସୁନ୍ଦର ଲୋଚନେ ବା ମୃଗଲୋଚନେ, ଏ (ପରମରମଣୀୟ) ଅତିମନୋହର ( ଆରାମ ) ଉପବନ, ବଗିଚାକୁ ଗୃହୁଁ ( କାମ ) ମଦନ (କାମ-ଅଧିବେ) କୌଣସି କାର୍ଯ୍ୟ ନ ପାଇବାରୁ (ତମ ତମ ହେଉଛି ) କମ୍ପୁଛି । (ହେ ତମ-ତମକେଶି ) ଗାଢ ଅନ୍ଧକାର ପରି କୃଷ୍ଣ କେଶବିଶିଷ୍ଟା ପାର୍ବତୀ ! ଏ ( ନିଶି ) ଆଜି ରାତିରେ (କାମ) ମଦନ (କାମ) କାର୍ଯ୍ୟ (ଉକ୍ତ ତ) ଲବ୍ଧ 'ତ' ( ଅନୁରୋଧ ବ୍ୟଞ୍ଜକ ) ତୋର ଏ ( ତମ ତମ ) କ୍ରୋଧଭାବ ଦେଖି ମୋର ( ଅଙ୍ଗ ) ଶରୀର ( ଏଠାରେ,

ଅଦ୍ୟ ବିଷମସମୟେ ନୁହ ବାମ ବାମ-ଅଙ୍ଗୀ ବିନାଶ ଭ୍ରିମଭ୍ରିମ ରେ
ପ୍ରାଣବନ୍ଧୁ । ୯ ।
ଅତ୍ୟନ୍ତ ନତି ନତି ନୁତି-ଭାରତୀ ରତୀଶାରିଙ୍କ ଘେନି ମତି ମତି
ଅଲବ-ଗତି ଗତି କଲେ ପାର୍ବତୀ ରତି ସୂଚଲା ନେତ୍ର ଶିତିଶିତି ରେ
ପ୍ରାଣବନ୍ଧୁ,
ଅସମ ସେ ମୂରତି ରତି
ଅଂଶ କୁ ହିଁ ଭାରତୀ ରତି
ଅତି ବିପତ୍ତି ପତି ଛାଡିଲେ ରତି-ରତିସ୍ନେହେ ହୁଅନ୍ତେ କତି କତି ସେ
ପ୍ରାଣବନ୍ଧୁ । ୧୦ ।
ଅଘ-କାଳଭୁଜଗ ଜଗଦୀଶ ! ମୋ ଆଗ ଆଗ ନାଶ ଉଦ୍‌ବେଗ ବେଗ
ଅନ୍ତର କର ନାଗ-ନାଗଚର୍ମଧର ଗରଗଳ ମୁଦି ନାଗ-ନାଗ ହେ
ମହାପ୍ରଭୁ,

---

ଛାତି ) ଦମ ଦମ ହେଉଛି—ଥରୁଛି, ଉଚୁଛି ପଡୁଛି । ହେ (ବାମଅଙ୍ଗୀ) ସୁନ୍ଦରାଙ୍ଗି, ମୋ ପକ୍ଷେ ( ବିଷମସମୟେ ) ସଙ୍କଟ କାଳରେ (ବାମ) ପ୍ରତିକୂଳ । ମାନିନୀ ( ନୁହ ) ହୁଅ ନାହିଁ । ହେ ( ବାମ ଅଙ୍ଗି ) ସୁନ୍ଦରାଙ୍ଗି ( ଭ୍ରିମ ) ଶିବର ( ଭ୍ରିମ ) ଭୟ ନାଶ କର । ଶିବର ଭୟ ବିନାଶ କର । ୧୦ । (ରତୀଶାରିଙ୍କ ) କାମଶତ୍ରୁ ମହାଦେବଙ୍କର ଅତ୍ୟନ୍ତ ( ନତି-ନତି ) ଅତି ବିନମ୍ର ନମସ୍କାର ଓ (ନୁତି-ଭାରତୀ ) ସ୍ତୁତି ବାକ୍ୟ, ( ମତି ମତି ) ମନେ ମନେ, ( ଘେନି ) ଗ୍ରହଣ କରି, ( ଅଳବଗତି ) ମନ୍ଦଗମନା ପାର୍ବତୀ ଗତି କଲେ । ତାହାଙ୍କର ନେତ୍ରର ( ଶିତି ଶିତି ) କମ୍ପନ ( ପ୍ରୀତିମୟ ) ( ରତି ) ଅନୁରାଗକୁ (ସୂଚଲା) ବ୍ୟକ୍ତ କଲା । ସେ (ମୂର୍ତ୍ତି) ରୂପ (ଅସମ) ତାହାର ତୁଳନା ନାହିଁ । ସେହି ରୂପର ଏକ ଅଂଶକୁ, ( ରତି ) କାମସ୍ତ୍ରୀ ସମାନ ହୋଇଥିବାରୁ ତାହାର ନାମ 'ରତି' ଏହି ( ଭାରତୀ ) କଥା ପ୍ରଚଳିତ । ସେହି ପାର୍ବତୀ ସ୍ନେହରେ (ରତି ରତି) ସୁରତି ପ୍ରତି ସ୍ନେହ-ଯୁକ୍ତା ହୋଇ ( କତି କତି ହୁଅନ୍ତେ ) ନିକଟ ନିକଟରୁ ଗମନ କରନ୍ତେ, (ପତି) ସ୍ୱାମୀ, ଶିବ ( ବିପତ୍ତି ) ଦୁଃଖ (ଛାଡିଲେ) ମୂର୍ଚ୍ଛା ହେଲେ । ୧୧ । ହେ ଜଗଦୀଶ ! ( ଆଗ ) ପ୍ରଥମତଃ ମୋର ( ଅଘ ) ପାପ ରୂପ ( କାଳଭୁଜଗ ) କୃଷ୍ଣ ସର୍ପକୁ ଓ ( ଆଗ ) ଅପରାଧକୁ ନାଶକର । ( ଉଦ୍‌ବେଗ ) ଉଦ୍‌ବେଗର ପ୍ରଭାବକୁ, ( ଅନ୍ତରକର ) ଦୂର କର । ଆପଣ ( ନାଗ) ସର୍ପ, (ନାଗଚର୍ମ) ହସ୍ତିଚର୍ମ ସର୍ପ ଓ ହସ୍ତଚର୍ମ ଧାରୀ, (ଗରଗଳ) ବିଷକଣ୍ଠ ( ନାଗ ନାଗ ) ସର୍ପରାଜ ବାସୁକି ନାଗଶବ୍ଦ ଅନ୍ତରେ ରହିଲେ ପ୍ରଧାନକୁ ବୁଝାଏ (ଆପଣଙ୍କର) ମୁଦି—ଅଙ୍ଗୁଳିର ଅଳଙ୍କାର ଅଟେ । ଆପଣ---

ଅନ୍ୟ କର ବିଯୋଗ-ଯୋଗ
ଅଛ ହେ ପ୍ରଭୁ ଯୁଗ ଯୁଗ
ଅନ୍ଧକାରି ଅନଙ୍ଗ-ନଗ-ବଜ୍ର-ସୁଭଗ ଭଗବାନ ବିରାଗ ରାଗ ହେ
ମହାପ୍ରଭୁ । ୧୧ ।
ଅବନୀ ତୁମ୍ଭେ ଜଳ ଜଳଜାକ୍ଷ ଅନଳ ନଳ * ବିଶ୍ୱର ଗରଗଳ
ଅଟ ତୁମ୍ଭେ ଅନିଳ ନୀଳକଣ୍ଠ ସକଳ-କଳନ ଉଗ୍ରବଳ ବଳ ହେ
ମହାପ୍ରଭୁ,
ଅବଜଦଳ-ତଳତଳ
ଅଂଶେ ମୋ ଆୟୁର୍ବଳ ବଳ
ଅତି ବ୍ୟାକୁଳ କୁଳ ଶୀର୍ଣ୍ଣ ଦୁର୍ବଳ ବଳଭଦ୍ର ଭୂପାଳ ପାଳ ପାଳ ହେ
ମହାପ୍ରଭୁ । ୧୨ ।

---

ବିଯୋଗ ଓ ଯୋଗକୁ ( ଅନ୍ୟ ) ବିପରୀତ କରି ଅର୍ଥାତ୍ ପ୍ରଳୟରୁ ସୃଷ୍ଟି ଓ ସୃଷ୍ଟିରୁ ପ୍ରଳୟ କରି ( ଯୁଗେ ଯୁଗେ ) ପ୍ରତିଯୁଗ ବିଦ୍ୟମାନ ଅଛନ୍ତି । (ଅନ୍ଧକାରି) ଅନ୍ଧକାସୁର ଶତ୍ରୁ (ଅନଙ୍ଗ) କାମରୂପ ( ନଗ ) ପର୍ବତର ଦଳନ ବିଷୟରେ ବଜ୍ର ପରି ( ସୁଭଗ ) ଦକ୍ଷ . ସୁନ୍ଦର ଅଟନ୍ତି । ( ଭଗବାନ ) ଷଡ଼ୈଶ୍ୱର୍ଯ୍ୟଶାଳୀ ଅଟନ୍ତି; ଆଉ ମଧ୍ୟ ( ବିରାଗ ) ବୈରାଗ୍ୟମୟ ଓ ( ଅନୁରାଗ ) ଅନୁରାଗମୟ ଅଟନ୍ତି ।
୧୨ । ହେ ( ଜଳଜାକ୍ଷ ) ପଦ୍ମନେତ୍ର, (ଗରଗଳ) ବିଷକଣ୍ଠ ଶିବ, ତୁମ୍ଭେ (ଅବନୀ) କ୍ଷିତି (ମାଟି),, ଜଳ, ( ଅନଳ ) ଅଗ୍ନି (ତେଜ) ନଳବିଶ୍ୱର (?)—ଆକାଶ ( ? )—(ଅନିଳ) ପବନ ଅଟ । ହେ ନୀଳକଣ୍ଠ, ତୁମ୍ଭେ ( ସକଳ କଳନ ) ସର୍ବ-ସଂହାରକ, ( ଉଗ୍ରବଳ ) ଉତ୍କଟ ବଳଶାଳୀମାନଙ୍କ ବଳନକାରୀ (ବିନାଶକ) (ଅବ୍ଜ-ଦଳ ) ପଦ୍ମପାଖୁଡ଼ା ପରି ଆରକ୍ତ ( ତଳ ) କରତଳର ତଳ ଅଂଶରେ ଅର୍ଥାତ୍ ହାତ-ମୁଠାରେ ମୋ (ଆୟୁର୍ବଳ ) ଆୟୁଷକୁ (ବଳ) ଗଢୁଥାଅ, ( ହାତରେ ଧରି ବାଟୁଳି ବଳିଲା ପରି) । ଅତି ( ବ୍ୟାକୁଳ ) ଦୁଃଖ ବା ଦୁର୍ଗତି (ବ୍ୟାକୁଳତାର ଉତ୍ପାଦକ) (ହେତୁମାନ ଓ ହେତୁର ଅଭେଦ) ଦ୍ୱାରା ( ଶୀର୍ଣ୍ଣ ) ଶୁଷ୍କ ଓ ( ଦୁର୍ବଳ ) ବଳହୀନ, ବଳଭଦ୍ର, (ଭୂପାଳ) ରାଜାଙ୍କୁ (ପାଳ ପାଳ) ପାଳନ କର ।

---

* ଦୁଷ୍କର (ଖ)

# ଏକତ୍ରିଂଶ ଛାନ୍ଦ

## ଶରଦ୍‌ବର୍ଣ୍ଣନ

### ରାଗ—ଶଙ୍କରାଭରଣ

ଅମଳ ଦିଶିଲେ ଦିଶ କମଳ ବିକାଶ
ଅଙ୍ଗନା ହାସ-ସଙ୍କାଶ ଶୋଭି ଫୁଟି କାଶ
ଅଚ୍ଛତର ନଦୀଜଳ
ଅମୃତକର-କିରଣ ଅଧିକ ଉଜ୍ଜ୍ୱଳ । ୧ ।
ଅଗସ୍ତି ବିଟପୀ ପ୍ରଫୁଲ୍ଲିତ ହେଲେ ଯହିଁ
ଅନଙ୍ଗମନ୍ତ୍ରେ ବୃଷଭ ଧେନୁକୁ ଗୋଡ଼ାଇ
ଅମ୍ବୁ ନ କରେ ବରଷା
ଅମ୍ବୁଦ ଗର୍ଜ୍ଜନଭରେ ପୂର୍ଣ୍ଣ ହୋଏ ଆଶା । ୨ ।
ଅହ ଶୀର୍ଣ୍ଣ ହୋଇ ହେଲେ ଚାତକ ବିରସ
ଅର୍ମ୍ମିସ୍ର-ପାନେ ଚକୋର ମାନସ ଉଲ୍ଲାସ
ଅମୃତରୁ ସ୍ୱାଦୁ କ୍ଷୀର
ଅଯତ୍ନ ଚଳନ୍ତି ହେଲେ ପଥିକେ ବାହାର । ୩ ।

---

### ଏକତ୍ରିଂଶ ଛାନ୍ଦ

୧ । ଅମଳ— ନିର୍ମଳ । ଦିଶ— ଦିଗମାନେ । କମଳ ବିକାଶ—ପଦ୍ମବିକାଶ ହେଲା ଅର୍ଥାତ୍ ପଦ୍ମମାନେ ଫୁଟିଲେ । କାଶ—କାଶତଣ୍ଡୀଫୁଲ ଫୁଟି (ଅଙ୍ଗନାହାସ-ସଙ୍କାଶ)—ସ୍ତ୍ରୀମାନଙ୍କର ହାସତୁଲ୍ୟ ଶୋଭି ପାଇଲା । ନଦୀଜଳ (ଅଚ୍ଛତର) ଅତି ନିର୍ମଳ ହେଲା । ଅମୃତକରକିରଣ— ଚନ୍ଦ୍ରକିରଣ । ୨ । ବିଟପୀ—ବୃକ୍ଷ । ପ୍ରଫୁଲ୍ଲିତ—ବିକଶିତ (ଯହିଁ ) ଅର୍ଥାତ୍ ଶରତ୍କାଳରେ । (ଅନଙ୍ଗମନ୍ତ୍ରେ) କାମର ମନ୍ତ୍ରଣାରେ । (ଅମ୍ବୁଦ)—ମେଘ, (ଅମ୍ବୁ)—ଜଳ ବରଷା କରେ ନାହିଁ । ଗର୍ଜ୍ଜନଭରେ—ମେଘର ଘଡ଼ଘଡ଼ି ଶବ୍ଦରେ । ଆଶା—ଦିଗ ପୂର୍ଣ୍ଣ ହୁଏ ।

"ଶରଦି ଗର୍ଜତି ନ ବର୍ଷତି ବର୍ଷତି ବର୍ଷାସୁ ନିଃସ୍ୱନୋ ଜଳଦଃ,
ଖଲୋ ବଦତି ନ କୁରୁତେ ସୁଜନସ୍ତୁ କରୋତ୍ୟେବ ।"

୩ । ଅହ—ଖେଦସୂଚକ ଅବ୍ୟୟ । ଚାତକ ପକ୍ଷୀମାନେ (ଶୀର୍ଣ୍ଣ ହୋଇ) ଦୁର୍ବଳ ହୋଇ(ବିରସ)ଦୁଃଖିତ ହେଲେ(ବୃଷ୍ଟି ଅଭାବରୁ ପିଇବାକୁ ଜଳ ନ ପାଇ) । ଅର୍ମ୍ମିସ୍ର—

ଅରୁଣୋଦୟରୁ ସ୍ନାନ ସାରି ସାଧୁଜନେ
ଅନାହାର କୃଚ୍ଛ୍ରାୟଣ ହବିଷ୍ୟ-ବିଧାନେ
ଅଭିଧିଭଦ୍ରତ ଭଜି
ଅବ୍ଜ-ସ୍ଥାନେ ମୃତ୍ତିକାଶଙ୍କରମାନ ପୂଜି । ୪ ।
ଅଁଳା-ତୁଳସୀ-ସେବା ପରମସ୍ୱଳମେ
ଅମେଧ୍ୟ ଆହାର-ମାନ ଛାଡ଼ିଲେ ସଂଯମେ
ଅଙ୍ଗନାଏ ତୋଷଭରି
ଅତି ଉତ୍ସବେ ପୂଜନ୍ତି ସ୍ୱଧା (ଇ?) ଦାମୋଦରି । ୫ ।
ଅନନ୍ତ ଦୀପ ଜାଳନ୍ତି ଦେବତାଙ୍କ ଆଗେ
ଅୟୁତଲକ୍ଷ ତୁଳସୀ ଚଢ଼ାଇ ଶ୍ରୀଅଙ୍ଗେ
ଅନ୍ନ ନୂଆ ଚୂଡ଼ାମାନ
ଅଦନ ଲବଣୀ କଲେ ଭାଗ୍ୟବନ୍ତ ଜନ । ୬ ।
ଅଦା ସାରୁ ବନ୍ତାଳ କଦଳୀ କଳାମୁଗ
ଅଁଳା ଓଉ ତେନ୍ତୁଳ ସୁକୋମଳ ଶାଗ
ଅନୁଆନେ କଲେ ଲୋଡ଼ା
ଅଗସ୍ତି କୁସୁମଶାଗ ଯେ ଲୁଣଖରଡ଼ା । ୭ ।
ଅଷ୍ଟ-ଅର୍ଦ୍ଧ ବର୍ଗ ଦେବାକୁ ଏ ଋତୁ କ୍ଷମ
ଅତି ଦୀନଜନ ହୁଁ ଏ କାଳେ ପୂର୍ଣ୍ଣକ୍ଷମ (କାମ)
ଅହର୍ନିଶି ଧାର୍ମିକୁଳ
ଅନଙ୍ଗରଙ୍ଗେ ଅଙ୍ଗନା ସଙ୍ଗେ ହେଲେ ଖେଳ ।୮।

---

ଅମୃତ । (ପାନେ) ପାନ ହେତୁ, ଚକୋରର, (ମାନସଉଲ୍ଲାସ) ମନର ପ୍ରଫୁଲ୍ଲଭାବ ଜାତ ହେଲା । (ମେଘ ଆକାଶରେ ନ ଥିବାରୁ ଉଜ୍ଜ୍ୱଳ ଚନ୍ଦ୍ରକିରଣ ପଡ଼ିଲା । ଚକୋର ଚନ୍ଦ୍ରକିରଣ ପାନକରେ,ଏହା କବିସମୟସିଦ୍ଧ,ଯଥା-"ଜ୍ୟୋତ୍ସ୍ନା ପେୟା ଚକୋରୈଃ ।") କ୍ଷୀର—ଦୁଧ । ଅୟନ ଚଳିଲା—ସୂର୍ଯ୍ୟଙ୍କର ଦକ୍ଷିଣାୟନ ଆରମ୍ଭ ହେଲା (ଅଥବା ଅୟନ ଚଳିବା ପଥିକେ—ବାଟଚାଲିବା ପଥିକମାନେ ) ବାହାରିଲେ । ୪ । ଅରୁଣୋଦୟରୁ—ସିନ୍ଦୂର ଫାଟିଲା ବେଳୁ । କୃଚ୍ଛ୍ରାୟଣ—ବ୍ରତବିଶେଷ । ଅବ୍ଜସ୍ଥାନେ—ପଦ୍ମସ୍ଥାନ ଅର୍ଥାତ୍ ପୁଷ୍କରଣୀ,ନଦୀମାନଙ୍କରେ ।୫। ସ୍ୱଧା—ସାଇ—ଲକ୍ଷ୍ମୀ-ରୂପିଣୀ ସ୍ୱଧା । ଦାମୋଦର—ବିଷ୍ଣୁ । ୬ । ଅନନ୍ତ ଦୀପ—ଅଖଣ୍ଡ ଦୀପ । ଅଦନ—ଭକ୍ଷଣ । ୭ । ଅନୁଆନେ—ପ୍ରତ୍ୟେକେ । ୮ । ଅଷ୍ଟ ଅର୍ଦ୍ଧ ବର୍ଗ—ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ ଓ ମୋକ୍ଷ) ।

ଅନାଇଁ ଏ କାଳ ନୀଳକଣ୍ଠ ସ୍ନେହବଶେ
ଅଚଳସୁତା-ସଙ୍ଗରେ ଅନଙ୍ଗ ଆବେଶେ
ଅଙ୍କୁ ନ ଛାଡ଼ନ୍ତି କ୍ଷଣେ
ଅହି-ଚକ୍ରଯୁଗ ପରି ହୋଇଲେ ବେନି ଜଣେ । ୯ ।
ଅଲଗା ନ କରି ହୃଦପରୁଁ ପୟୋଧର
ଅନ୍ତର ଘେନି ବାହାର କଲେ ଗୃହଦ୍ୱାର
ଅଙ୍ଗେ ହୋଇ ସ୍ୱେଦୋଦ୍‌ଗମ
ଅସୁଖ ଘେନନ୍ତି ଯେଣୁ ଅସମ ସେ ପ୍ରେମ । ୧୦ ।
ଅପୂର୍ବ ଭଙ୍ଗୀ ତରଳ ଶ୍ଳେଷମିଶା ଭାଷା
ଅପାଙ୍ଗ ପତନ ନେତ୍ରଭଙ୍ଗୀ ଅଭିଳାଷା
ଅଳସରେ ଈଷିବାଣୀ
ଅଧରେ ସ୍ମିତପ୍ରକାଶ ଭ୍ରୂଭଙ୍ଗୀ ଗୃହାଣୀ । ୧୧ ।
ଅହିବଲ୍ଲୀ ଭୁଞ୍ଜାଇ ଭୁଞ୍ଜିବା ଅନୁସ୍ମରେ
ଅଳକା ଲେଖାକୁ ପାଦେ ଗୁନ୍ଥି ନାନାରଙ୍ଗେ
ଅଳଙ୍କାର ଶଙ୍କା ପାଇଁ
ଅଚଳ-କୁଚେ ପତ୍ରାଳି ଲେଖାକୁ ବିନୋଇ । ୧୨ ।
ଅପସରି କରନ୍ତି ହୃଦୟ ପ୍ରୀତିଭାବେ
ଅଲଗା ନୋହେ ଅଧର ଗଣ୍ଡୁ ଚୁମ୍ବ ଲୋଭେ

---

୯ । ନୀଳକଣ୍ଠ—ଶିବ । ଅଚଳସୁତା—ପାର୍ବତୀ । ଅନଙ୍ଗ ଆବେଶେ—କାମ-ଗ୍ରସ୍ତ ହୋଇ । ଅଙ୍କୁ—କୋଳରୁ । ଅହିଚକ୍ରଯୁଗ—ଦିବସର ଚକ୍ରବାକ ଓ ଚକ୍ରବାକୀ ପରି । ୧୦ । ପୟୋଧର—ସ୍ତନ । ଅନ୍ତର ଘେନି—ବ୍ୟବଧାୟକ ହେବୁ । ଅସମ—ଅତୁଲ୍ୟ । ୧୧ । ଅପୂର୍ବ ଭଙ୍ଗୀତରଳ—ଯାହା ଅସାଧାରଣ ରୀତିଯୁକ୍ତ ହୋଇ ଯିବାରୁ ହୃଦୟକୁ ଶୀଘ୍ର ଭେଦିଯାଏ । ଶ୍ଳେଷମିଶା—ଦ୍ୱିପ୍ରକାର ଅର୍ଥଯୁକ୍ତ । ଅପାଙ୍ଗପତନ—କଟାକ୍ଷ ବିକ୍ଷେପ । ଅଚଳ କୁଚେ—ପର୍ବତ ସଦୃଶ ସ୍ତନରେ । ପତ୍ରାଳି—କସ୍ତୁରୀପ୍ରଭୃତି ଚିହ୍ନ । ଶିବ ଉନ୍ନତ କୁଚ ଉପରେ କସ୍ତୁରୀ ଆଦିଦ୍ୱାରା ନାନାପ୍ରକାର ଚିହ୍ନ କରିବାକୁ (ବିନୋଇ) ବିନୟ ସହ ପ୍ରାର୍ଥନା କରନ୍ତି । ୧୨ । ଅହିବଲ୍ଲୀ—ନାଗବଲ୍ଲୀ, ପାନ । ୧୩ । ଅପସରି······ପ୍ରୀତିଭାବେ—ଅତି ପ୍ରୀତି ହେତୁ ବକ୍ଷକୁ ( ଅପସରି ) ତକିଆରୂପେ ବ୍ୟବହାର କରନ୍ତି—ବକ୍ଷ ଉପରେ ମସ୍ତକ ସ୍ଥାପନ କରି ଶୟନ କରନ୍ତି ।

ଅର୍ଦ୍ଧଚନ୍ଦ୍ର କୁଚପରେ
ଅସିତକଣ୍ଠ ସାମ୍ୟରୁ ଦିଅନ୍ତି ନଖରେ । ୧୩ ।
ଅମୃତ-ପ୍ରେମ ବଚନ ରଚନରେ ପୁଣି
ଅର୍ଗ ଥିବାଯାଏ ହେଲେ ଦୁହେଁ କାଣା କାଣି
ଅକଥନ ତାଙ୍କ ପ୍ରୀତି
ଅଇଲି ତ ନାହିଁ କହିବାକୁ ମୋ ଭାରତୀ । ୧୪ ।
ଅଣୁଏ ଯେଉଁ କୁତୁକ ଜାଣି ରତିପତି
ଅଛି ନିର୍ମାଣ କରି ତା ରତିଶାସ୍ତ୍ର ପୋଥି
ଅବଧି ବାଲି ହେବ ଗଣି
ଅଧିକ ପ୍ରବଳ ପ୍ରୀତି କେ ପାରିବ ଭଣି । ୧୫ ।
ଅଷ୍ଟ ଏକ ନେତ୍ର ଶୋଭି ଷଡ଼ଭୁଜ ପୁଣ
ଅବ୍ଜ ବେନି କଳା ବିଭୂଷଣ ତନି ଜଣ
ଅର୍ଚ୍ଚି ଗୁରୁ ଚରଣରେ
ଅହର୍ନିଶି ବଳଭଦ୍ର ଭଞ୍ଜ ଆଶ୍ରେ କରେ । ୧୬ ।



---

ଅସିତକଣ୍ଠ—ମହାଦେବ । ସାମ୍ୟରୁ—ନିଜ ସାଦୃଶ୍ୟ ହେତୁ । (ମହାଦେବ ଅର୍ଦ୍ଧଚନ୍ଦ୍ର ମଣ୍ଡିତ ହୋଇଥିବାରୁ କୁଚରୂପ ନିଜ ମୂର୍ତ୍ତି ଉପରେ ନଖଦ୍ୱାରା ଅର୍ଦ୍ଧଚନ୍ଦ୍ର ଦାନ କରନ୍ତି) । ୧୪ । ଭାରତୀ—ଭାଷା । ୧୫ । ଅଣୁଏ—ଦାନକର । ୧୬ । ଏ ପଦରେ ଗଙ୍ଗାଙ୍କ ସହିତ ହରଗୌରୀଙ୍କୁ ସ୍ତୁତି କରୁଅଛନ୍ତି । ଅଷ୍ଟଏକ ନେତ୍ର—ନଅ ଆଖି । ଅବ୍ଜ—ଚନ୍ଦ୍ର । ଅର୍ଚ୍ଚି—ଅର୍ଚ୍ଚନା କରି ।



# ଦ୍ୱାତ୍ରିଂଶ ଛାନ୍ଦ

## ହିମଋତୁ-ବର୍ଣ୍ଣନ

ରାଗ—ଭୂପାଳ

ଅନାଉଁ ଅନାଉଁ ଭୁବେ ହିମଋତୁ
ଅଇଲା ଉତ୍ତର ଦିଗୁଁ ପରବତୁଁ । ୧ ।
ଅତନୁ ପାଇଲା ବଳଧରଣେ ଗାଢ଼ୀ
ଅଶୀତ ଉପଗ୍ରହରେ ସ୍ନେହ ବଢ଼ି । ୨ ।
ଅନଙ୍ଗ-ପ୍ରତାପ ଅଙ୍ଗନାଙ୍କ ପ୍ରୀତ
ଅଦ୍ୱିତୀୟ ଅଦ୍ୱିତୀୟ ଶୋଭା ଅତ । ୩ ।
ଅହ ଅମ୍ବୁରୁହ ଅପଘନମାନ
ଅ-ତନ ଅତ ନୀରସେ ଅଶୋଭନ । ୪ ।
ଅମ୍ବୁକେଳ ଅଂଶୁକ ତେଜ ଗମନ
ଅସ୍ନିଗ୍ଧ-ଭୋଜନ ଅହଶେଷେ ସ୍ନାନ
ଅସାର ଘେନଲେ ଏହା ଧୀରମତ
ଅ-ଚତୁରେ ଅଚତୁରେ କଲେ ପ୍ରୀତ । ୫ ।

---

### ଦ୍ୱାତ୍ରିଂଶ ଛାନ୍ଦ

୧ । ଭୁବେ—ପୃଥିବୀରେ । ଉତ୍ତରଦିଗୁଁ ପରବତୁଁ—ହିମାଳୟରୁ ।୨ । ଅତନୁ—କାମ । ଅଶୀତ ଉପଗ୍ରହ—ଗ୍ରୀଷ୍ମ ଉପଗ୍ରହ । ୩ । ଅନଙ୍ଗ ପ୍ରତାପ—କାମ-ପ୍ରଭାବ । ଅଙ୍ଗନାଙ୍କ ପ୍ରୀତ—ସ୍ତ୍ରୀମାନଙ୍କ ସ୍ନେହ । (ଅଦ୍ୱିତୀୟ) ଅ-ଦ୍ୱିତୀୟ—ଆଦ୍ୟ ଭାଗରେ ଅକାରଯୁକ୍ତ, ଏହି ଦୁଇ ବସ୍ତୁର ଶୋଭା (ଅଦ୍ୱିତୀୟ ହେଲା) ସର୍ବୋତ୍କୃଷ୍ଟ ହେଲା । ୪ । ଅହ—ଦିନ । ଅମ୍ବୁରୁହ—ପଦ୍ମ । ଅପଘନ—ପ୍ରାଣୀମାନଙ୍କର ଶରୀର । ଏହି (ଅ-ତନ) ଅକାରାଦି ତନ ବସ୍ତୁ (ନୀରସେ) ଶୁଷ୍କ ହେବାରୁ (ଅଶୋଭନ) ଅସୁନ୍ଦର ହେଲା । ଦିନର ପରିମାଣ କମିଲା, କାକର ପଡ଼ି ପଦ୍ମ ନଷ୍ଟ ହେଲା ଓ ଦେହ ସ୍ନିଗ୍ଧତା ଛାଡ଼ି ଖରଖରିଆ ହେଲା । ୫ । ଅମ୍ବୁକେଳି—ଜଳକ୍ରୀଡ଼ା । ଅଂଶୁକ ତେଜ ଗମନ—ଲୁଗା (ଶୀତବସ୍ତ୍ରାଦି) ନ ନେଇ କୌଣସି ସ୍ଥାନକୁ ଯିବା । ଅସ୍ନିଗ୍ଧ ଭୋଜନ—ଚିକ୍କଣ ଦ୍ରବ୍ୟର ଅଭାବରେ ଖାଇବା । ଅହଶେଷେ ସ୍ନାନ—ସନ୍ଧ୍ୟାବେଳେ ଗାଧୋଇବା । ଏହି ଅ-ଚତୁରେ—ଅକାରାଦି ଚାରିଗୋଟି ବସ୍ତୁକୁ (ଅସାର) ନିରର୍ଥକ ବୋଲି ( ଘେନଲେ ) ମନେକଲେ । କିନ୍ତୁ ଅଚତୁରେ—ଅଜ୍ଞ ଲୋକମାନେ ଏଥିରେ (ପ୍ରୀତ କଲେ) ସ୍ନେହ ବଳାଇଲେ ।

ଅମ୍ବୁପେଷ୍ଠୀ ଅନଳ ଅମୃତକର
ଅମ୍ବୁ ଅଗୁରୁ-ଚନ୍ଦନ ଉପଗୃର
ଅହୁତ ଘେନଲେ ବିଚକ୍ଷଣକୁଳ
ଅ-ପାଞ୍ଚରେ ଅପାଞ୍ଚରେ ମୂର୍ଖେ ଖେଳ । ୬ ।
ଅହନିଦ୍ରା ଅଙ୍ଗନା-କଳହ-ସ୍ୱିତ
ଅଟବୀ-ବିହାର ଅନ୍ୟ ଦେଶେ ସ୍ଥିତ
ଅଗଣା-ଶୟନ ଅନାହାର ହେବା
ଅ-ଷଡେ ଅଷଡ଼େ ବଶ ନଶିଦିବା । ୭ ।
ଅହିବଲ୍ଲୀ ଅଙ୍ଗନା ଅହିମାଶନ
ଅନଳ ଅର୍କ ଅମ୍ବର-ତିରୋଧାନ
ଅଗୁରୁ ଧୂପ ଏ ଆଦି ଉପଗୃରେ
ଅ-ସାତ ଅଶାତ ହେଲେ ମୂର୍ଖ ନରେ । ୮ ।
ଅବଳା-କାୟକ କଣ୍ଠ କୁଚ କୋଳ
ଅଥ କୋକିଳ-ବଚନ କାମସ୍ଥଳ

---

୬ । ଅମ୍ବୁପେଷ୍ଠୀ—ପଇଡ଼ । ଅନଳ—ପବନ । ଅମୃତକର—ଚନ୍ଦ୍ର । ଅମ୍ବୁ—ଜଳ । ଅଗୁରୁ ଚନ୍ଦନ ଉପଗୃର—ଅଗୁରୁମିଶା ଚନ୍ଦନ ପ୍ରଭୃତି ଉପକରଣ । ଏହି (ଅ-ପାଞ୍ଚରେ) ଅକାରାଦ୍ୟ ପାଞ୍ଚଗୋଟି ବସ୍ତୁରେ (ବିଚକ୍ଷଣକୁଳ) ଚତୁର ଲୋକମାନେ (ଅହୁତ) ମନ୍ଦ ଘେନଲେ । (ଅପାଞ୍ଚରେ) ପାଞ୍ଚି ନ ପାରି, ବାଗୁର ନ ପାରି ମୂର୍ଖମାନେ ଏଥିରେ ଖେଳ ହେଲେ । ୭ । ଅହନିଦ୍ରା—ଦିନରେ ଶୋଇବା । ଅଙ୍ଗନାକଳହସ୍ୱିତ—ନାୟିକା ସହିତ ପ୍ରଣୟକଳହ । ଅଟବୀବିହାର—ବନଭ୍ରମଣ । ଅନ୍ୟଦେଶ ସ୍ଥିତ—ବିଦେଶରେ ରହିବା । ଅଗଣାଶୟନ—ଦୁଆରେ ( ଖୋଲା ଯାଗାରେ ) ଶୋଇବା । ଅନାହାର ହେବା—ନ ଖାଇ ଶୋଇବା । ଏହି ଅକାରାଦ୍ୟ (ଷଡ଼) ଛଅ ବସ୍ତୁରେ ( ଅଷଡ଼େ) ଅଜ୍ଞ ଲୋକମାନେ (ନଶିଦିବା) ସ୍ୱବଦିନ (ବଶ ହେଲେ) ଲିପ୍ତ ରହିଲେ । ୮ । ଅହିବଲ୍ଲୀ — ପାନ ।ଅଙ୍ଗନା—ସ୍ତ୍ରୀ । ଅହିମାଶନ—ଗରମ ଭୋଜନ । ଅନଳ—ଅଗ୍ନି । ଅର୍କ—ସୂର୍ଯ୍ୟ । ଅମ୍ବର-ତିରୋଧାନ—ଲୁଗା ଘୋଡ ହେବା । ଅଗୁରୁ ଧୂପ । ଏହି ଅକାରାଦ୍ୟ ସାତ (ଉପଗୃର) ଉପକରଣରେ ମୂର୍ଖଲୋକମାନେ (ଅଶାତ ହେଲେ) ଅସୁଖ ବୋଧ-କଲେ । ୯ । ଅବଳାର କାୟକ—ଦେହ , କଣ୍ଠ—କାନ, କୁଚ—ସ୍ତନ, କୋଳ, କୋକିଳସଦୃଶ ବଚନ, କାମସ୍ଥଳ, କଞ୍ଜ—ପଦ୍ମତୁଲ୍ୟ (ଅଛିର) ନେହର (ଖେଳ)

ଅପରେ କଞ୍ଜାକ୍ଷ-ଖେଳ କୁନ୍ଦହାସ
ଅଷ୍ଟ-କରେ ବ୍ରହ୍ମା ହେଲେ କେ ପୁରୁଷ । ୯ ।
ଅଙ୍ଗନା-ଅଙ୍ଗ ଅଧର ଅଙ୍କଦେଶ
ଅପାଙ୍ଗ ଅମୀୟ ବାଣୀ ଅଳ୍ପ ହାସ
ଅଦ୍ରି-କୁଚ ଅତନୁମନ୍ଦିର ତାର
ଅ-ନବ ଅନବରତେ କା ବେପାର । ୧୦ ।
ଅସିତକଣ୍ଠ ଅପର୍ଣ୍ଣା ପ୍ରେମକେଳେ
ଅନେକ କୁତୁକ କଲେ ହିମକାଳେ । ୧୧ ।
ଅଦ୍ରି ସ୍ତନେ ପଶିଥାନ୍ତି ଶୀତ-ଭୟେ
ଅଧର-ଅରୁଣ ସେବା କଠେ୍ୟ ହୋଏ । ୧୨ ।
ଅଭୀଷ୍ଟେ କଲେ ସୁସ୍ନେହ ସମ୍ମାର୍ଜ୍ଜନା
ଅନ୍ୟ ନ ଓଡ଼ନ୍ତି ଅଙ୍ଗ-ତୂଳୀ ବିନା । ୧୩ ।
ଅଭ୍ରତନୁ ଜତ-ଭବ ଶ୍ରୀନିବାସ
ତ୍ର୍ୟାକ୍ଷର { ଅକ୍ଷୟେ ଭୂତବିଳାସୀ ବୃଷବଶ
ଅଘନାଶୀ ସୁରଗୁଣେକ୍ଷଣପର
ଅନନ୍ତ ଆଦି ଭବରେ ଅଗୋଚର । ୧୪ ।

---

ଚଳନ, କୁନ୍ଦତୁଲ୍ୟ ହାସ—ଏହି ଅଷ୍ଟକରେ—କକାରାଦ ଆଠଗୋଟି ବସ୍ତୁରେ ଯୁକ୍ତ ହୋଇ କୌଣସି ପୁରୁଷ (ବ୍ରହ୍ମା ହେଲା) ବ୍ରହ୍ମା ସଦୃଶ ହେଲା; ବ୍ରହ୍ମା ଅଷ୍ଟ କଦ୍ୱାର—ଆଠ ଗୋଟି ନେତ୍ରଦ୍ୱାର ଯୁକ୍ତ ହୋଇଥାନ୍ତି ।୧୦। (ଅ ନବରେ) ଅକାରାଦ ନଅଗୋଟି ବସ୍ତୁରେ (ଅନବରତେ) ସର୍ବଦା କାହାର (ବେପାର)-କାରବାର ହେଲା । ୧୧ । ଅସିତକଣ୍ଠ—ହର । ଅପର୍ଣ୍ଣା—ପାର୍ବତୀ । ୧୨ । ଅଦ୍ରିସ୍ତନେ—ପର୍ବତ ସଦୃଶ କୁଚରେ; ଅଧରରୂପଅରୁଣ—ଓଷ୍ଠରୂପ ସୂର୍ଯ୍ୟ;ଓଷ୍ଠବର୍ଣ୍ଣ ଓ ପ୍ରାତଃକାଳ ସୂର୍ଯ୍ୟବର୍ଣ୍ଣ ସମାନ ହୋଇଥିବାରୁ ଏପରି ରୂପଣ କରାଗଲା । ୧୩ । ଅଭୀଷ୍ଟେ—ଇଚ୍ଛା ସୁଖେ । ସସ୍ନେହ ସମ୍ମାର୍ଜ୍ଜନା—ଉତ୍ତମ ସ୍ନେହରୂପ ତୈଳର ଲେପନ । ( ସ୍ନେହ ଶବ୍ଦ ତୈଳ ଓ ପ୍ରୀତି ଏହି ଦୁଇ ଅର୍ଥ ପ୍ରକାଶ କରୁଛି ।) ଅଙ୍ଗତୂଳୀ—ତୂଳୀପରି କୋମଳ ଶରୀରରୂପ ଶେଯ । (ନ ଓଡନ୍ତି)—ଘୋଡ଼ି ହୁଅନ୍ତିନାହିଁ ।୧୪। ବିଷ୍ଣୁପକ୍ଷେ—ଅଭ୍ରତନୁ – ଯାହାଙ୍କର ଶରୀର-କାନ୍ତି ମେଘ ପରି । ଜତଭବ—ଯେ (ଭବ) ଜନ୍ମକୁ ଜିଣିଛନ୍ତି (ଅଜ) । ଶ୍ରୀନିବାସ —ଲକ୍ଷ୍ମୀଙ୍କର ନିବାସସ୍ଥାନ (ବିଷ୍ଣୁଙ୍କର ବକ୍ଷରେ ଲକ୍ଷ୍ମୀଙ୍କର ବାସ ପୁରାଣପ୍ରସିଦ୍ଧ । ) ଅକ୍ଷୟେ—ପୂର୍ଣ୍ଣରୂପେ । ଭୂତବିଳାସୀ—ଯେ ପଞ୍ଚଭୂତ ନିର୍ମ୍ମିତ ଯାବତୀୟ ବସ୍ତୁରେ

( ଅର୍ଥ ହୋଇବ ଏ ପଦ ଅଚ୍ୟୁତଙ୍କୁ
ଅଦ୍ୱିତୀୟ ବର୍ଣ୍ଣ ହେଲେ ଈଶାନଙ୍କୁ )

ତତ୍ତ୍ୱାକ୍ଷର { ଅନନ୍ତ ପରମାନନ୍ଦ ସୁରଜିତ
ଅସୁର ଦାନବବାର ଦୁଃଖ ଶାନ୍ତ
ଅବନୀନାୟକ ବଳଭଦ୍ର ମତ
ଅହର୍ନିଶି ଚନ୍ତେ * ସିତ-ଗିରିପତ ।୧୫।



---

ବଦ୍ୟମାନ । ବୃଷବଶ—ଧର୍ମର ଅଧୀନ (ଧର୍ମ କଲେ ଯାହାଙ୍କୁ ଅକ୍ଳେଶରେ ପାଇ ପାରନ୍ତି ।) ଅଘନାଶୀ—ଅଘାସୁର ପାପର ବିନାଶକ । ସୁରରାଜେକ୍ଷଣପର—(ସୁରରାଜ) ଇନ୍ଦ୍ରଙ୍କ (ଈକ୍ଷଣ) ଅବଲୋକନ କରିବା ବିଷୟରେ ତତ୍ପର ।

ନୈଷଧ—"କାନ୍ତୁକେ ମମ କିଳେ ଦନୁଜ ରୌ ଜାଗତ ସ୍ୱଶରଣେ ରଣଚର୍ଚ୍ଚା ।"
ତଦ୍ଭୁଜାଙ୍କମୁପଧାୟ ଜୟାଙ୍କଂ ଶର୍ମଣା ସ୍ୱପିମି ବୀତବଶଙ୍କଃ ।

ଅନନ୍ତ—ଅସୀମ । (ଆଦ୍ୟନ୍ତ) ବ୍ରହ୍ମାଙ୍କୁ, ମଧ୍ୟ (ଅଗୋଚର) ଅଜଣା । ଶିବପକ୍ଷେ —ଅତନୁଜିତ—କନ୍ଦର୍ପଜୟୀ । ଭବ—'ଭବ'ବୋଲି ଖ୍ୟାତ । ଶୀନବାସ—ଶ୍ରୀକଣ୍ଠ ନାମଧାରୀ । ଅଯ୍ୟେ—ହେ । ଭୂତବିଳାସୀ—ଭୂତଗଣଙ୍କ ସଙ୍ଗେ କ୍ରୀଡ଼ାକାରୀ । ବୃଷବଶ—ବୃଷଭଠାରେ ସ୍ନେହପରାୟଣ । ଅନାଶୀ—ଯାହାଙ୍କର ବିନାଶ ନାହିଁ । ସୁର—ସୂର୍ଯ୍ୟ, ରାଜା—ଚନ୍ଦ୍ର, ଏ ଦୁହେଁ ଯାହାଙ୍କର (ଈକ୍ଷଣ) ନେତ୍ର । ଯେ ପର—ଉତ୍କୃଷ୍ଟତମ ।

୧୨ । ଅନନ୍ତ ପରମାନନ୍ଦ କ ସୁରଜିତ
ଅସୁର ଦାନବ ବାରଣ ଦୁଃଖଶାନ୍ତ ।

ଅବନୀନାୟକ—ରାଜା । ମତ—ମନ । ଅହର୍ନିଶି—ଦିନରାତି । ସିତଗିରିପତି—କୈଳାସର ପତି ।



* 'ଶିତ' ପାଠାନ୍ତର

# ତ୍ରୟସ୍ତ୍ରିଂଶ ଛାନ୍ଦ

## ଶିଶିର-ବର୍ଣ୍ଣନ

### ରାଗ—ରସକଦମ୍ବ

**ଅଇଲ ଶିଶିର ଋତୁ ମାର୍ଗଶିର ପୌଷ ବେନି ମାସ ଶେଷେ**
**ଅହ୍ନରେ ଅନ୍ଧାର ପୂର୍ଣ୍ଣ ହେଲା ଘୋର ତୁଷାର ବରଷା ବଶେ ଯେ, ଅତି**
**ଅମ୍ବୁଜକୁ ପଡିଲା ବିପତ୍ତି ସେ ,,**
**ଅମାରାବେ ଯଥା ନିଶାପତି ସେ ,,**
**ଅମ୍ବୁ-ଯୋଗେ ଯେହ୍ନେ ଲୁଣ ଗତି ସେ ଅତି ।୧।**

**ମହାଯମକ**

**ଅତନୁ ଶୀତରେ ସଂଯୋଗୀଙ୍କ ପୁରେ ଉଜ୍ଜ୍ୱଳ ଭାବେ ହସନ୍ତ**
**ଅତନୁ ଶୀତରେ ସଂଯୋଗୀଙ୍କ ପୁରେ ଉଜ୍ଜ୍ୱଳ ଭାବେ ହସନ୍ତ ସେ ଅନ୍ନ**
**ଅତି ସୁଲଭ ପ୍ରତି ଭୁବନ ସେ ଅନ୍ନ**
**ଅର୍ଦ୍ଧ ଶୀର୍ଣ୍ଣରୂପ ଚନ୍ଦ୍ର ବର୍ଣ୍ଣ ସେ ,,**
**ଅନାଇଲା ମାତ୍ରେ ହରେ ମନ ସେ ଅନ୍ନ ।୨।**

---

### ତ୍ରୟସ୍ତ୍ରିଂଶ ଛାନ୍ଦ

୧ । ଅହ୍ନରେ—ଦିନରେ । ତୁଷାର ବରଷାବଶେ—କାକର ବର୍ଷଣ ହେତୁ । ଅମ୍ବୁଜକୁ—ପଦ୍ମକୁ । ବିପତ୍ତି—ବିପଦ (କାକର ବର୍ଷିଲେ ପଦ୍ମ ନଷ୍ଟ ହୋଇଯାଏ) । ଅମାରାବେ—ଅମାବାସ୍ୟା ରାତିରେ । ନିଶାପତି—ଚନ୍ଦ୍ର । ଅମ୍ବୁଯୋଗେ—ପାଣି ମିଶିଲେ । ୨। ଅତନୁ ଶୀତରେ—ଗାଢ ଶୀତକାଳରେ । ସଯୋଗୀ—ଉଦ୍ୟମଶୀଳ ଲୋକଙ୍କ (ପୁରେ) ଗୃହରେ । ହସନ୍ତୀ—ନିଆଁ ଉହ୍ନେଇ । ଉଜ୍ଜ୍ୱଳଭାବେ—ଦାଉ ଦାଉ କରି (ଜଳୁଛି) । ଅତନୁ ଶୀତରେ—କାମଜନିତ କମ୍ପହେତୁ । ସଯୋଗୀଙ୍କ ପୁରେ—ନାୟିକା ନିକଟରେ ଥିବା ପୁରୁଷମାନଙ୍କ ନିକଟରେ । (ନାୟିକାମାନେ) ଉଜ୍ଜ୍ୱଳଭାବେ—ଶୃଙ୍ଗାର ରସରୁ ଜାତ ମାନସ ବିକାରରେ । ହସନ୍ତି—ହାସ କରୁଅଛନ୍ତି । ଅନ୍ନ—ଖାଦ୍ୟଦ୍ରବ୍ୟ । ସୁଲଭ—ଯାହା ସହଜରେ ମିଳେ । ପ୍ରତିଭୁବନ—ସମସ୍ତଙ୍କ ଘରେ । ଚନ୍ଦ୍ରବର୍ଣ୍ଣ—ଚନ୍ଦ୍ରଙ୍କର କାନ୍ତି । ଅର୍ଦ୍ଧଶୀର୍ଣ୍ଣରୂପ—ଅଧାଅଧି ମଳିନ ।

ଅଗୁରୁ ଧୂପେ ଧୂପିତ କରି ବାସ ଯେଉଁ ରସିକ ପୁରୁଷ
ଅନିଳାୟନମାନ ମୁଦି ମନ୍ଦିରେ ମଦିରନୟନାବଶ ସେ      ଅଙ୍ଗେ ।
      ଅଙ୍ଗୀ କଲା ଅଙ୍ଗନାଙ୍କ ରଙ୍ଗେ ସେ      ,,
      ଅନୁଲକ୍ଷି ହେଲା ଇନ୍ଦ୍ର ସଙ୍ଗେ ସେ      ,,
      ଅନଙ୍ଗକୁ ଜୟ କଲା ରଙ୍ଗେ ସେ      ଅଙ୍ଗେ ।୩।

ଅଗାରେ ଅଳପ ରନ୍ଧ୍ର ଥିଲେ ଗଳି ପଶଇ ଶିଶିର ସ୍ୱୈର
ଅଙ୍ଗରୁ ନିଦ୍ରା-ମୁଦ୍ରା ହରେ ତା ଡରେ ନରେ ହୋନ୍ତି ଥରଥର ତା-ଅଟେ
      ଅଙ୍କ ଭିତରେ କେ ବେକ ଭିଡ଼େ, ତା—ଅଡ଼େ
      ଅଜୀବନ ହେଲା ପରି ପଡେ, ତା—      ,,
      ଅମ୍ବୁଜାକ୍ଷୀ ନ ଥିବାରୁ କୋଡେ, ତା— ଅଟେ ।୪।

ଅପାର ଦୂରେ ଥାଇଁ ଯେଉଁ ବିଦେଶୀ କପାଳେ ମାରଇ କର
ଅଧର-ଚଳଦଳ-ଦଳ, କରକା ପରିଏ ଅଙ୍ଗ କାତର, ତା -ଅକ୍ଷି
      ଅଶ୍ରୁ-ବରଷା ହେବ କି ଲକ୍ଷି ତା—      ,,
      ଅନଙ୍ଗର ଭାଣ୍ଡ ନୋହେ ଲେଖି ତା—      ,,
      ଅଙ୍ଗଯାକେ ଯାଗା ନାହିଁ ରଖି ତା—      ଅକ୍ଷି ।୫।

ଅଇଲା ଯେଉଁ ପରବାସୀ ବାସରେ ସୁବାସି-ବଦନ ଗୃହୁଁ
ଅଙ୍ଗୁଳି ନଖରେ ପକାଇ ହସରେ ବୋଲେ କାମ ଗଲା କାହିଁ, ଯେ ଅଦ୍ୟ
      ଅତନୁର ଛଡ଼ାଇବ ମଦ୍ୟ, ଯେ      ,,
      ଅସ୍ତ୍ରଶସ୍ତ୍ରରେ ହେବ ନିର୍ବେଦ, ଯେ      ,,
      ଅଗ୍ରେ ବାଜବଟି ବୀରବାଦ୍ୟ, ଯେ      ଅଦ୍ୟ ।୬।

---

୩। ଧୂପିତ କରି—ସୁବାସିତ କରି। ବାସ—ଗୃହ। ଅନିଳାୟନ—ଝରକା। ମୁଦି—ବନ୍ଦକରି। ମଦିରନୟନାବଶ—ସ୍ତ୍ରୀଠାରେ ଆସକ୍ତ। ଅଙ୍ଗୀକଲା—ଗ୍ରହଣ କଲା। ଅନୁଲକ୍ଷିହେଲା—ସମାନ ବୋଲି ମନେକଲା। ରଙ୍ଗେ—ଅନାୟାସରେ
୪। ଅଗାରେ—ଗୃହରେ। ରନ୍ଧ୍ର—ଛିଦ୍ର। ଶିଶିର ରୂପ ସ୍ୱୈର। ନିଦ୍ରା ରୂପ (ମୁଦ୍ରା) ଠିଙ୍କା। ଅଜୀବନ—ମୃତ। ଅମ୍ବୁଜାକ୍ଷୀ—ପଦ୍ମନୟନା। ୫। ଅପାର ଦୂରେ—ବହୁଦୂରେ। ଚଳଦଳଦଳ—ଅଶ୍ୱତ୍ଥ ପତ୍ର। କରକା—କୁଆପଥର। ଅକ୍ଷି—ଆଖି। ଅଶ୍ରୁବରଷା—ବୋହୁଥିବା ଲୁହ। ୬। ବାସରେ—ଗୃହରେ। ସୁବାସୀ—ସୁବାସିନୀ ସ୍ତ୍ରୀ। ବଦନ—ମୁଖ। ମଦ୍ୟ—ମଦ, ଗର୍ବ। ନିର୍ବେଦ—ହତବୁଦ୍ଧି।

ଅଙ୍ଗନା ଯେ ଆଖି ତେରିଥିଲା ରଖି କାନ୍ତ ଆଗମନ ଖୁଣ୍ଟି
ଅର୍କ ଅସ୍ତାଚଳେ ଚଳନ୍ତେ ନିଷ୍ଟଳେ କରପାଦ ଗଲା ରହି, ତା—ଅକ୍ଷେ
ଅଶ୍ରୁ, ପୂର୍ଣ୍ଣ ଶିବ-ନାମ ମୁଖେ, ତା ,,
ଅଙ୍ଗେ କାମ-କାଣ୍ଡ ଲକ୍ଷେ ଲକ୍ଷେ, ତା— ,,
ଅବ୍ଧି-ଫଳ ଫୁଟିପଡ଼େ ବକ୍ଷେ, ତା ଅକ୍ଷେ ।୭।

ଅପୂର୍ବ ଚତୁରୀ ଅଟେ ଯେ ଚତୁରୀ-ଗିର ପଥିକକୁ କହେ
ଅଗାରେ ନ ରହି ବାହାରୁଛ କାହିଁ ମହିଳା ନାହିଁ କି ଗୃହେ, ହେ ଅବା
ଅଙ୍ଗେ ଲାଗି ନାହିଁ ମନୋଭବ ହେ ,,
ଅନୁମାନ ତ ଅମୂଲ୍ୟ ଯୁବା ହେ ,,
ଅନୁରୂପେ ନୋହେ ପ୍ରିୟା କିବା ହେ ଅବା ।୮।

ଅମ୍ବୁଜାକ୍ଷୀ-ଗିରେ ଯୁବା କହେ ଆରେ ମନମୋହିନୀ ଜୀବନ
ଅମ୍ବୁଦ-ଜୀବନ ବହିନେ କି ଆନ ଜଳ କରେ ସ୍ତୋକ ପାନ ରେ ଅଳି

---

୭ । ଅଙ୍ଗନା—ସ୍ତ୍ରୀ । ଆଖିକୁ ତେର ରହୁଥିଲା—ଖୁଣ୍ଟି ବସିଥିଲା । ଅର୍କ—ସୂର୍ଯ୍ୟ । ଅସ୍ତାଚଳେ—ଅସ୍ତପର୍ବତକୁ । ନିଷ୍ଟଳେ......ରହି—ହାତଗୋଡ଼ ଯେ ଯେଉଁଠି ରହିଗଲା, ଚଳିଲା ନାହିଁ । ଅକ୍ଷେ—ଆଖିରେ । ଶିବ—ମହାଦେବ । ଶିବ କନ୍ଦର୍ପକୁ ଦାହ କରିଥିଲେ; ତେଣୁ ତାଙ୍କ ନାମ ଉଚ୍ଚାରଣ କଲେ କେଜାଣି ବା କାମ ଭୟରେ ଛାଡ଼ିଯିବ, ଏହି ଆଶାରେ ଶିବ ନାମ ଉଚ୍ଚାରଣ କରୁଥିଲା । କାମକାଣ୍ଡ—କାମବାଣ । ଅବ୍ଧିଫଳ—ମୁକ୍ତା । ବକ୍ଷେ—ଛାତିରେ । ବିରହତାପରେ ହାର ମୁକ୍ତା ସବୁ ପୋଡ଼ି ହୋଇ ଫୁଟି ପଡ଼ୁଥିଲା, (ଏହା କବି ପ୍ରୌଢୋକ୍ତି ସିଦ୍ଧ) ।
୮ । କୌଣସି ପଥିକକୁ କେହି ଅପୂର୍ବ ଚତୁରୀ—ଅତି ଚତୁରୀ ସ୍ତ୍ରୀ । ଚତୁରୀଗିର—ଭଙ୍ଗୀ କଥା କହୁଛି । ଅଗାରେ—ଘରେ (ଏ ଶୀତ କାଳରେ) ନ ରହି କୁଆଡ଼େ ଯାଉଛ ? (ମହିଳା) ସ୍ତ୍ରୀ ଘରେ ନାହିଁ କି ? ଅଥବା ତୁମ୍ଭ ମନରେ (ମନୋଭବ) କାମ, ଲାଗି ନାହିଁ କି, ଜାତ ହୋଇ ନାହିଁ କି ? ଅନୁମାନ କରେ, ତୁମ୍ଭେ ତ ଅତି ସୁନ୍ଦର ଯୁବକ । (ଅମୂଲ୍ୟ ପଦଟି ଏଠାରେ ହୀନ ଅର୍ଥକୁ ବିପରୀତ ଲକ୍ଷଣାରେ ବୁଝାଉଅଛି ) ! ତୁମ୍ଭ ପ୍ରିୟା (ଅନୁରୂପ) ମନ ମାନିବା ମାପ ନୁହେଁ କି ?
୯ । ଅମ୍ବୁଜାକ୍ଷୀ ଗିରେ—ପଦ୍ମନେତ୍ରା ସ୍ତ୍ରୀର ବଚନ ଶୁଣି । ଯୁବା କହିଲା, ହେ ମନୋମୋହିନୀ ! (ଜୀବନ) ପ୍ରାଣ । ଅମ୍ବୁଦଜୀବନ—ମେଘପାଣି । ବହିନେ—ବ୍ୟତୀତ । ସ୍ତୋକ—ସ୍ତବକ । ଆନ ଜଳ—ନଦୀ ପୁଷ୍କରିଣୀ ପ୍ରଭୃତିର ଜଳ ପାନ କରେ କି ?(ସର୍ବଂସହାପଶିତମମ୍ବୁ ନ ସ୍ତୋକାନାଂ) ଅଳି—ଭ୍ରମର । ଅରବିନ୍ଦେ—

ଅରବିନ୍ଦେ ସିନା କରେ କେଳି ରେ ଅଳି
ଅନ୍ୟ ସୁମନେ କି ମନ ମିଳି ରେ ,,
ଅକୃତ୍ୟକୁ ଯାଏ ସିନା ଖେଳି ରେ ଅଳି ।୯।
ଅଧରୁ ଅମୃତ ପିଆଇ ରେ ମିତ ଖଣ୍ଡି ଫୁଲ-କାଣ୍ଡ ଜ୍ୱର
ଅପାଙ୍ଗ-ଭଙ୍ଗୀରେ କୋମଳ-ଅଙ୍ଗି ତୋ' କରୁଣି ତ ଜର ଜର ରେ ଅଳ୍ପ
ଅଙ୍ଗୀକାର ସ୍ନେହ-ଗିର କଳ୍ପ ରେ ,,
ଅଙ୍ଗ ତୋହର କରଇଁ ତଳ୍ପ ରେ ,,
ଅଛି ପୁଣ୍ୟ କରି କଳ୍ପ କଳ୍ପ ରେ ଅଳ୍ପ ।୧୦।
ଅଜନ-ସ୍ଥାନରେ ମିଳି ବେନି ଜନେ ସଫଳ କଲେ କାମନା
ଅୟନରେ କେଉଁ ପାନ୍ଥକୁ ଅନାଇଁ କହେ ରସିକା ସୁମନା ହେ ଅହେ
ଅନ୍ଧକାର ଘୋଟେ ନିଶି ପ୍ରାୟେ ହେ ,,
ଅଛି କାନ୍ତ କାହିଁ ଜାଣି ନୋହେ ହେ ,,
ଅଛି ଏ କାଳେ ଏକା ମୁଁ ଗୃହେ ହେ ଅହେ ।୧୧।
ଅପର୍ଣ୍ଣା-ରତନ ଅଙ୍ଗ ସୁଯତନ ପ୍ରଫୁଲ୍ଲ ଶିରୀଷଫୁଲ
ଅନ୍ଧକାର-ଛବି ହିମବୃଷ୍ଟି ଭବ ପ୍ରକଟ ନେତ୍ରୁଁ ଅନଳ ସେ ଅଥ

---

ପଦ୍ମରେ; ସିନା, (କେଳି) କ୍ରୀଡ଼ା (ମଧୁପାନାଦିରୂପ) କରେ; ଅନ୍ୟ (ସୁମନରେ) ଅନ୍ୟ ପୁଷ୍ପରେ ତାର ମନ ମିଳେ କି ? (ଅକୃତ୍ୟକୁ) ଅଖରଣ ବେଳକୁ ସିନା ଟିକିଏ ଖେଳିଯାଏ । ୯ । ଅଧରୁ—ଓଷ୍ଠରୁ । ଖଣ୍ଡି—ନାଶକରି । ଫୁଲକାଣ୍ଡଜ୍ୱର—କାମ ସନ୍ତାପ । ଅପାଙ୍ଗ ଭଙ୍ଗୀରେ—କଟାକ୍ଷ ଛଟାରେ । ଜରଜର—ଅସ୍ତବ୍ୟସ୍ତ । ଅଳ୍ପ-ଅଙ୍ଗୀକାର—ଅଳ୍ପକେ ରାଜି ହେବା । ସ୍ନେହଗିର ପ୍ରାୟ—ସ୍ନେହ ବଚନ ସଙ୍ଗେ ସମାନ । ( ତୁ ଯାହା କଥାରେ ସ୍ନେହ ପ୍ରକାଶ କରୁଛୁ ତାହା ତୋହର ସ୍ୱୀକାରକୁ ଜଣାଇଦେଉଛି ) । ତଳ୍ପ—ଶଯ୍ୟା । କଳ୍ପ କଳ୍ପ—ବହୁ ଯୁଗ । ୧୧ । ଅଜନ-ସ୍ଥାନରେ—ନିର୍ଜନ ଜାଗାରେ । କାମନା—ଅଭିଳାଷ । ସଫଳ କଲେ—ପୂର୍ଣ୍ଣ କଲେ । ଅୟନରେ—ବାଟରେ । ପାନ୍ଥ—ବାଟୋଇ, ବିଦେଶୀ ; ସୁମନା—ବିଦୁଷୀ ସ୍ତ୍ରୀ । ଅହେ—ଅବସରେ । ଏ ସ୍ୱୟଂଦୂତୀ ନାୟିକା । ୧୨ । ଅପର୍ଣ୍ଣା—ପାର୍ବତୀଙ୍କର । ରତନ ଅଙ୍ଗ—ଉତ୍କୃଷ୍ଟ ଦେହ । (ସୁଯତନ ପ୍ରଫୁଲ୍ଲ) ଅତି ଭଲଭାବେ ଫୁଟିଥିବା ଶିରୀଷ ଫୁଲପରି କୋମଳ । ଅନ୍ଧକାର—ମହାଦେବ (ଙ୍କର) ଛବି—କାନ୍ତି । ହିମବୃଷ୍ଟି—କାକର ବର୍ଷା ପରି । ଏହା ଭବ ( ଶିବଙ୍କର ଲଲାଟସ୍ଥ ) ନେତ୍ରରୁ, (ଅନଳ) ଅଗ୍ନି (ପ୍ରକଟ ହେଲେ କି ?) ପ୍ରକାଶ

ଅଙ୍ଗହୀନ-ମୁଖ-ପଦ୍ମ ଅସ୍ତ ସେ ଅଥ
ଅନ୍ତଃକରଣ କୃଷିକ ସୁସ୍ଥ ସେ ,,
ଅନୁଭୂତ ଏ ଋତୁ ସମସ୍ତ ସେ ଅଥ । ୧୨ ।

ଅପୂର୍ବ ପଣା ନ୍ୟାୟବଳ ଗଞ୍ଜପା ଆଦି ଖେଳ ଋତୁରୁକ
ଅମୃତି ବୀଣା ମର୍ଦ୍ଦଳ ତାଳ ବଂଶୀ ନାଟ ବହୁରୂପ ଯାକ ସେ ଅହେ
ଅସାଧାରଣେ ମଣନ୍ତି ଦୁହେଁ ସେ ,,
ଅବା ବେଶ କରୁଥାନ୍ତି ସ୍ନେହେ ସେ ,,
ଅଣୁମାନ ଭିନ୍ନ ହେବା ନୋହେ ସେ ଅହେ ।୧୩।

ଅହଶେଷେ ପୁଣି ରତନ କଙ୍କିଣୀ ବେଣୀ ସଜ ହୋଏ ଲୋଭା
ଅଙ୍ଘ୍ରିକ ନୂପୁର ପଦାବଳୀସାର କସ୍ତୁରୀ କାଲି ସଜଡ଼ା ସେ ଅବା
ଅତରରେ ବାସ ଉଛୁଳାଇବା ସେ ,,
ଅସମରେ କୁସୁମ ଗୁନ୍ଥିବା ସେ ,,
ଅଲଭାଙ୍କୁ ଗୋଲ ରଖିଥିବା ସେ ଅବା । ୧୪ ।

ଅସ୍ତଗତେ ଭାନୁ କେଳିପୁର-ତନୁ କମ୍ପମାନ ହୋଏ ଡରେ
ଅନଙ୍ଗ ନିଶାଣ ଠାଣେ ଦେଇ ଗୁଣ ଦିଏ ଫୁଲକୋଦଣ୍ଡରେ ସେ ଅଂସେ

---

ପାଇଲେ କି ? ଏହି କାକର-ବୃଷ୍ଟିରେ (ଅଙ୍ଗହୀନ) କାମର ମୁଖରୂପ ପଦ୍ମ, (ଅସ୍ତ) ବକ୍ଷିପ୍ତ ହୋଇଗଲା । ଅନ୍ତଃକରଣ ରୂପ (କୃଷିକ) କୃଷକ ସୁସ୍ଥ ହେଲା । ଏହିରୂପେ ଋତୁର ସମସ୍ତ କଥା ଶିବ ପାର୍ବତୀ ଅନୁଭବ କଲେ । ଶିଶିର ଫୁଟିବା, କାକର ପଡିବା, ଅଗ୍ନି ସେବା କରିବା, ପଦ୍ମ ନାଶ ହେବା, କୃଷକମାନେ ଶସ୍ୟ ଅମଳରେ ସୁସ୍ଥ ହେବା, ଶିଶିର ଋତୁର ସ୍ୱଭାବ । ୧୩। ଅମୃତି—ବୀଣା ସଦୃଶ ବାଦ୍ୟ ଯନ୍ତ୍ରବିଶେଷ । ଅହେ—ଦିନରେ । ଅସାଧାରଣ—ଅଲୌକିକ (ଅଣୁମାନ) ତିଳେ ହେଲେ ଅଲଗା ହୁଅନ୍ତି ନାହିଁ ।(ଦୁହେଁ—ଶିବ ଓ ପାର୍ବତୀ) ।୧୪। ଅହଶେଷେ—ସନ୍ଧ୍ୟାବେଳେ । ରତ୍ନକିଙ୍କିଣୀ—ରତ୍ନରେ ନିର୍ମିତ ଅଣ୍ଟାର ଅଳଙ୍କାର (ଘାଗୁଡି) । ବେଣୀ—ଜୁଡ଼ା । ଅଙ୍ଘ୍ରି—ପାଦ । ପଦାବଳୀ········ସଜଡ଼ା—···ମକରୀ ଇତ୍ୟାଦି ରଚନା କରିବା ପାଇଁ କସ୍ତୁରୀର କାଳି ସଜାଡିବା । ବାସ—ଘର । ଉଛୁଳାଇବା—ସୁବାସ ଦ୍ରବ୍ୟ ଛାଟି ସୁଗନ୍ଧିତ କରିବା । ୧୫ । ଅସ୍ତଗତେ ଭାନୁ—ସୂର୍ଯ୍ୟ ଅସ୍ତ ହୋଇଗଲେ । କେଳିଗୃହ ତନୁ—ଶୟନ ଗୃହର ଭିତର । (ଅନଙ୍ଗ) କାମ (ନିଶାଣ) ବାଦ୍ୟଯନ୍ତ୍ର ବିଶେଷ (ତେଙ୍ଗୁରି) । ( ଠାଣେ ଦେଇ ) ଅତି ଜୋରରେ ବଜାଇ (ଫୁଲକୋଦଣ୍ଡରେ ) ଫୁଲନିର୍ମିତ ଧନୁରେ ଗୁଣ ଦିଏ (ଅଂସେ) କାନ୍ଧରେ (ତୂଣୀର) ଶର ରହିବାର ଯାଗା କକ୍ଷେ—

ଅତି ବଚନ ତୂଣୀର କଷେ ସେ ଅଁସେ
ଅଶୋକାଦି ଶର ଯହିଁ ବସେ ସେ ,,
ଅଲ୍ପ ଟଙ୍କାର ଧନୁ ଆକର୍ଷେ ସେ ଅଁସେ ।୧୬।

ଅହର୍ମୁଖ ଯାଏ ପୁଣି ରହୁଥାଏ ଆନ କେହି ବୁଝି ସିନା
ଅଦେହ କରିବା ଆଖି ଦେଖି ସେହି ବୋଲି ପଳାଏ ସୁମନା ସେ ଅଡି
ଅଲଜ୍ଜ ତା ଆର ଦିନ ବେଢ଼ି ସେ ,,
ଅହ ନୋହୁଁ ପୁଣି ଯାଏ ଭୁଡି ସେ ,,
ଅବା ଧନୁ କଦା ଯାଏ ଛାଡି ସେ ଅଡି ।୧୭।

ଅଣ୍ଟାକଙ୍କିଣୀ ପ୍ରମତ୍ତବାଣୀ କମ୍ବୁଶବଦ ନୂପୁର-ନାଦ
ଅନବରତ ରତି ବେଳୁଁ ବେଳ ଅତି ପ୍ରବଳ ମିଥେ ବିବାଦ ସେ ଅର୍ତ୍ତି
ଅବନୀର ହୋଏ ପ୍ରତି ରତି ସେ ,,
ଅନ୍ତର୍ଯ୍ୟାମୀ ଜାଣି ତା ନବର୍ତ୍ତି ସେ ,,
ଅଟନ୍ତି ଯେ କୃପାମୟ-ମୂର୍ତ୍ତି ସେ ଅର୍ତ୍ତି ।୧୮।

ଅଜନ ସ୍ଥାନ ଏ ଘେନି କଇଳାସ କଲେ କେଲି ଭୋଗପାଇଁ
ଅସୁତ କୋଟି କଳ୍ପରେ ଯେଉଁ କ୍ଷେତ୍ର ଅନ୍ୟଥା ହେବାର ନାହିଁ ସେ ଅର୍ଥ
ଅମୃତାଦି ଦେବାକୁ ସମର୍ଥ ସେ ,,
ଅବଲୋକନେ ଭବେ କୃତାର୍ଥ ସେ ,,
ଅଲଗାରେ ରଖଇ ଅନର୍ଥ ସେ ଅର୍ଥ ।୧୮।

---

ବାନ୍ଧେ । ଅଶୋକାଦ—ଅଶୋକ ପ୍ରଭୃତି ( ଅଶୋକ, ଅରବିନ୍ଦ, ଚୂତ, ନବ-ମାଲିକା, ନୀଳୋତ୍ପଳ ) । ଟଙ୍କାର—ପରୀକ୍ଷା ପାଇଁ ଗୁଣକୁ ଅଳ୍ପ ଟାଣି ଛାଡିଦେଇ । ୧୭ । ଅହର୍ମୁଖ ଯାଏ—ସକାଳ ଯାଏ । ଆନ କେହି—ମହାଦେବଙ୍କ ବ୍ୟତୀତ ଅପର କେହି । ଅଦେହ କରିବା ଆଖି—ଦେହଶୂନ୍ୟ ଅର୍ଥାତ୍ ଭସ୍ମ କରି ଦେଇଥିବା ଆଖି । 'ସେହି ବୋଲି'—"ଏ ତ ସେହି ପୂର୍ବାନୁଭୂତ ଆଖି" ଏହା କହି । ସୁମନା—ବୁଦ୍ଧିମାନ୍ । ଅଡି—ଜିଦ୍ କରି । ଅଲଜ୍ଜ—ଲଜ୍ଜାଶୂନ୍ୟ । ବେଢ଼ି—ଆକ୍ରମଣ କରି । ଅହ ନୋହୁଁ—ଦିନ ( ସକାଳ ) ନୋହୁଣୁ । ଭୁଡିଯାଏ—ଦ୍ରୁତଗତିରେ ପଳାଏ । ୧୭ । ପ୍ରମତ୍ତ ବାଣୀ—ରତିକାଳୀନ ହୁଙ୍କାରାଦି ଶବ୍ଦ । କମ୍ବୁଶବଦ—କମ୍ବୁତୁଲ୍ୟ କଣ୍ଠର କୂଜନ । ନୂପୁରର—ପାଦଭୂଷଣର । ନାଦ—ଶବ୍ଦ । ଅନବରତ—ଅବିରାମ । ମିଥେ—ପରସ୍ପର । ଅର୍ତ୍ତି—ପୀଡ଼ା, ଦୁଃଖ । ୧୮ । ଅଜନ—ଜନଶୂନ୍ୟ । କଳ୍ପରେ—ଯୁଗରେ । ଅମୃତାଦ—ମୋକ୍ଷ ପ୍ରଭୃତି । ଅବଲୋକନେ—ଦେଖିଲେ...।

ଅଟେ ସୀତାଗ୍ରେର ଢେଙ୍କୁ ବେଦବର ଆସନର ନାମ କସ
ଅନ୍ଧକାର-ଧ୍ୱଜ ନାମ କସ ଗୃର କାଣ୍ଡ କନିଷ୍ଠ ଢେ ଭାଷ ସେ ଅର୍ଥ
ଅଗ୍ର ଦ୍ୱି ବର୍ଣ୍ଣ ମଧ୍ୟରେ ନ୍ୟସ୍ତ ସେ „
ଅନ୍ତ ବେନି ବର୍ଣ୍ଣ ପଦ ଅନ୍ତ ସେ „
ଅବନୀଶ ଭଞ୍ଜନାମ ଶସ୍ତ ସେ ଅର୍ଥ ।୧୯।

# ଚତୁସ୍ତ୍ରିଂଶ ଛାନ୍ଦ

## ବସନ୍ତ-ବନବିହାର
## ଓ
## ଉକ୍ତି-ପ୍ରତ୍ୟୁକ୍ତି

ଅନ୍ତ ହେଲା ଶୀତ— ଶିଶିର ବସନ୍ତ
ଋତୁ ଉପଗତ ହୋଇଲା
ଅନ୍ତକ-ଅଯ୍ୟନୁ ଅଳପ ଅଳପ
ଗନ୍ଧ ଶୀତବାତ ବହିଲା
ଅଙ୍କୁର—ଭରେ ତରୁ ଶୋଭା ପାଇଲା
ଅଶୋକ ନଆଳୀ କଞ୍ଚନ ପାଟଳୀ—
ଅଳି-କୁଳ-ଆଳ ଧଇଲା ।୧।

୧୯। ଢେଙ୍କୁ ସୀତାଗ୍ରେର —ସ୍ୱବଣ ଅଟେ। ବେଦବର –( ବ୍ରହ୍ମା ) ଆସନର ନାମ କଣ ?—କଳଜ (ପଦ୍ମ)। ଅନ୍ଧକାର (ଶିବ) ଙ୍କର ଧ୍ୱଜ — ସଙ୍କେତ କଅ ?—ବୃଷଭ। ଢେ (କଏ) ଗୃତ୍କାଣ୍ଡ (ବ୍ରାହ୍ମଣାଦ) ମଧ୍ୟରେ କନିଷ୍ଠ (ସାନ)—ଶୁଦ୍ର। ପ୍ରଥମର ଦୁଇ ଅକ୍ଷର 'ବ' 'ଳ' ମଧ୍ୟରେ ଓ ଶେଷ ଦୁଇବର୍ଣ୍ଣ 'ଭ' 'ଦ୍ର' ଉତ୍ତର ପଦର (ଅନ୍ତରେ) ଶେଷରେ—(ବଳଭଦ୍ର)। ଅବନୀଶ—ସ୍ୱଜା।

ଚତୁସ୍ତ୍ରିଂଶ ଛାନ୍ଦ

୧। ଅନ୍ତ ହେଲା—ଶେଷ ହେଲା । ଶୀତ-ଶିଶିର—ଶୀତଗୁଣବଶିଷ୍ଟ ଶିଶିର। ଅନ୍ତ ହେଲା—ଶେଷ ହେଲା। ବସନ୍ତ (ଉପଗତ ହେଲା) ପହଞ୍ଚିଲା। ଅନ୍ତକ ଅଯ୍ୟନୁ —ଯମଙ୍କ ଦଗରୁ ଅର୍ଥାତ୍ ଦକ୍ଷିଣରୁ। ଗନ୍ଧଶୀତବାତ—ସୁଗନ୍ଧ ଶୀତଳ ପବନ। ଅଙ୍କୁର ଭରେ—ପ୍ରଚୁର ନୂତନ ପତ୍ରଦ୍ୱାରା (ପ୍ରବାଳଃ ପଲ୍ଲବାଙ୍କୁରଃ ଇତ ହଳାୟୁଧଃ) ପଲ୍ଲବାଙ୍କୁର ପତ୍ରବର୍ତ୍ତେ କେବଳ ଅଙ୍କୁର ପଦ ଅନୁପ୍ରାସ ଅନୁରୋଧରେ ଲିଖିତ। ତରୁ—ଗଛ। କଳଆଳ—କୃତସମୂହ ।

ଅଟେ ସୀତାଗ୍ଗେର୍ ଲେଖୁ ବେଦବର୍ ଆସନର୍ ନାମ କସ
ଅନ୍ଧକାର୍-ଧ୍ୱଜ ନାମ କସ ଗୃର୍ ଜାଢ ଜନନ୍ତ୍ୱ କେ ଖ୍ରସ ସେ ଅର୍ଥ
ଅଗ ଦ୍ୱି ବର୍ଣ୍ଣ ମଧ୍ୟରେ ନ୍ୟସ୍ତ ସେ ,,
ଅନ୍ତ ବେଳ ବର୍ଣ୍ଣ ପଦ ଅନ୍ତ ସେ ,,
ଅବନୀଶ ଭୃଙ୍ଗନାମ ଶସ୍ତ ସେ ଅର୍ଥ ।୧୯।

---

# ଚତୁସ୍ତ୍ରିଂଶ ଛାନ୍ଦ

## ବସନ୍ତ-ବନବିହାର
## ଓ
## ଉକ୍ତି-ପ୍ରତ୍ୟୁକ୍ତି

ଅନ୍ତ ହେଲ୍ ଶୀତ— ଶିଶିର୍ ବସନ୍ତ
ଋତୁ ଉପଗତ ହୋଇଲ୍
ଅନ୍ତକ-ଅସ୍ତ୍ୱନୁ ଅଲପ ଅଲପ
ଗନ୍ଧ ଶୀତବାତ ବହିଲ୍
ଅଙ୍କୁର୍—ଭରେ ତରୁ ଶୋଭା ପାଇଲ୍
ଅଶୋକ ନଆଲୀ କଞ୍ଚନ ପାଟଳୀ—
ଆଦି-କଳ-ଆଳ ଧଇଲ୍ ।୧।

---

୧୯। କେହୁ ସୀତାଗ୍ଗେର —ସ୍ରବଣ ଅଟେ। ବେଦବର –( ବ୍ରହ୍ମା ) ଆସନର ନାମ କଣ ?—ଜଳଜ (ପଦ୍ମ)। ଅନ୍ଧକାର୍ ( ଶିବ ) ଙ୍କର ଧ୍ୱଜ —ସଙ୍କେତ କଣ ?—ବୃଷଭ୍। କେ ( କଏ ) ଗୃର୍‌ଜାତି ( ବ୍ରାହ୍ମଣାଦ ) ମଧ୍ୟରେ କନଷ୍ଠ ( ସାନ )—ଶୁଦ୍ର। ପ୍ରଥମର ଦୁଇ ଅକ୍ଷର 'ବ' 'ଲ' ମଧ୍ୟରେ ଓ ଶେଷ ଦୁଇବର୍ଣ୍ଣ 'ଭ' 'ଦ୍ର' ଉତ୍ତର ପଦର (ଅନ୍ତରେ) ଶେଷରେ—(ବଳଭଦ୍ର)। ଅବନୀଶ—ରାଜା।

---

ଚତୁସ୍ତ୍ରିଂଶ ଛାନ୍ଦ

୧। ଅନ୍ତ ହେଲ୍—ଶେଷ ହେଲ୍। ଶୀତ-ଶିଶିର—ଶୀତଗୁଣବଶିଷ୍ଟ ଶିଶିର। ଅନ୍ତ ହେଲ୍—ଶେଷ ହେଲ୍। ବସନ୍ତ (ଉପଗତ ହେଲା) ପହଞ୍ଚିଲ୍। ଅନ୍ତକ ଅସ୍ତ୍ୱନୁ —ଯମଙ୍କ ଦଗରୁ ଅର୍ଥାତ୍ ଦକ୍ଷିଣରୁ। ଗନ୍ଧଶୀତବାତ—ସୁଗନ୍ଧ ଶୀତଳ ପବନ। ଅଙ୍କୁର ଭରେ—ପ୍ରଚୁର୍ ନୂତନ ପତ୍ରଦ୍ୱାରା (ପ୍ରବାଳଃ ପଲ୍ଲବାଙ୍କୁରଃ ଇତି ହଳାୟୁଧଃ) ପଲ୍ଲବାଙ୍କୁର ପରିବର୍ତ୍ତେ କେବଳ ଅଙ୍କୁର ପଦ ଅନୁପ୍ରାସ ଅନୁରୋଧରେ ଲକ୍ଷିତ। ତରୁ – ଗଛ। କଳଆଳ – କଳସମୂହ।

ଅବାକ କୋକିଳ ମୁକୁଳ କବଳ
କରି କଳବାଣୀ କହିଲା
ଅଶନି କରୁଣ ପଡ଼ିଲା କି ମାଡ଼
ବିରହୀଙ୍କି ପ୍ରତେ ହୋଇଲା
ଅଙ୍କରେ, ଧୀରକୁ ଧରି କେ ବସିଲା
ଅଗଣାକୁ କେହି ବାହାରିଲା ନାହିଁ
ଦର୍ପକ ଦର୍ପ ପା ବହିଲା । ୨ ।

ଅମୃତୁଁ ମଧୁର ମଧୁ ପିଉଁ ପିଉଁ
ଅଳିଙ୍କ ଅସର ନୋହିଲା
ଅହ୍ନରେ ନାନା ସୁ— ମନାରେ ସେ ରସି
କଞ୍ଜ-କୋଳେ ନିଶି ଶୋଇଲା
ଅସିତ, କାନ୍ତି କି ଚିକ୍କଣ ପାଇଲା
ଅନାଉଁ ଅନାଉଁ ତା ଶିଥିଳ ପେଟ
ଅନ୍ତଲ-ଆଶକୁ ଧଇଲା । ୩ ।

---

୨ । ଅବାକ—ମୂକ (ଶବ୍ଦ କରୁ ନ ଥିବା) । ମୁକୁଳ—ବଉଳ । କବଳ—ଭକ୍ଷଣ । କଳବାଣୀ—ଅବ୍ୟକ୍ତ ମଧୁର ଧ୍ୱନି (କୁହୁ ଶବ୍ଦ) । ଅଶନି—ବଜ୍ର । ଅଙ୍କରେ—କୋଳରେ । ଧୀରକୁ—ଧୀରସ୍ୱଭାବା ସ୍ତ୍ରୀକୁ । ଅଗଣାକୁ—ଦୁଆରକୁ (ବାହାରକୁ) । ଦର୍ପକ ଦର୍ପ—କାମର ଦର୍ପ । ବହିଲ ପା—ପଗ (?)

୩ । ଅମୃତୁଁ—ଅମୃତଠାରୁ । ମଧୁ—ଫୁଲର ରସ । ଅଳିଙ୍କ—ଭଅଁରଙ୍କୁ । ଅସର—ଅବସର, ବେଳ । ଅହ୍ନରେ—ଦିନରେ । ନାନା ସୁମନାରେ—ନାନାବିଧ ଫୁଲରେ । ରସି—ଆସକ୍ତ ହୋଇ । ନିଶି ରାତିରେ । କଞ୍ଜକୋଳେ—ପଦ୍ମକୋଳରେ ଶୋଇଲା । ବିଟ ପୁରୁଷ ଯେପରି ନାନା (ସୁମନା) ସ୍ତ୍ରୀମାନଙ୍କ ସଙ୍ଗେ ଦିନଯାକ କ୍ରୀଡ଼ା କରି ରାତିକୁ ନିଜ ସ୍ତ୍ରୀ ନିକଟରେ କଟାଏ, ସେହିପରି । (ଚିକ୍କଣ) ସ୍ନିଗ୍ଧ ଅସିତ କାନ୍ତି—କଳା ବର୍ଣ୍ଣକୁ ପାଇଲା (ଅତି ଚିକ୍କଣ କଳାବର୍ଣ୍ଣ ଦିଶିଲା) । ଅନାଉଁ ଅନାଉଁ—ଦେଖୁଁ ଦେଖୁଁ (ଅଳ୍ପଦିନ ମଧ୍ୟରେ) ତା'—ଭଅଁରର । (ଶିଥିଳ) ଖାଙ୍କା ପଡ଼ିଥିବା ପେଟ (ଅନ୍ତଲ ଅଂଶକୁ ପାଇଲା) କ୍ରମେ କ୍ରମେ ମୋଟା ହେବାକୁ ଲାଗିଲା । 'ଅଶ' ଶବ୍ଦକୁ କବି ବହୁସ୍ଥଳରେ ସାଦୃଶ୍ୟ ଅର୍ଥରେ ବ୍ୟବହାର କରିଅଛନ୍ତି ।

ଅନଙ୍ଗ-ସତଙ୍ଗ— ପଶିଏ ସୁରଙ୍ଗ
ପନ୍ଦେ ବନ ଶୋଭା ଦିଶିଲା
ଅବଧ ବଇରୀ ବଧ ସଧ କରି
କାମସ୍ୱଭା ତହିଁ ବସିଲା
ଅନାଇ, ତପୀ ଯେ ଆସନୁଁ ଆସିଲା
ଅବଳା-ଚରଣ ସ୍ୱନସ୍ତେ ଧରଣ
ଶରଣ ରଖ ଗୋ ଭାଷିଲା । ୪ ।
ଅଧରୁ ପୀୟୂଷ ପିଇ ଯେ ପୁରୁଷ
ପ୍ରାଣପ୍ରିୟା ବୋଲେ ପଶିଲା
ଅଚ୍ଛ ତାରତର ମୁକୁର-ମୁଖରେ
ସୁଖରେ ଚୁମ୍ବ ନିବେଶିଲା
ଅଙ୍କରେ, ଝଳିଲା ପରି ଯେ ମିଶିଲା
ଅମାନ ଗୁମାନ ଛାଡ଼ି ଯେଉଁ ମାନ—
ବତୀ ପତିରସେ ରସିଲା । ୫ ।
ଅମୃତକର କି— ରଣ ଚହଟରେ
ଚନ୍ଦନୀ ନିଶି ବିକାଶିଲା
ଅବନୀ-ଅଙ୍ଗନା ଅଙ୍ଗରେ ରଙ୍ଗରେ

---

୪ । ଅନଙ୍ଗ—କାମ । ସତଙ୍ଗ—ଅସ୍ତ୍ର ବିଶେଷ । ସୁରଙ୍ଗ ପନ୍ଦେ—ଲାଲବର୍ଣ୍ଣ ପନ୍ଦରେ । ଅବଧ—ଯାହାକୁ ମାରି ପାରି ନାହିଁ । ବଇରୀ—ଶତ୍ରୁ । ବଧ—ବିନାଶ । ସଧକରି—ଅଭିଳାଷ କରି । ତପୀ—ଯୋଗୀ । ଆସନୁଁ ଆସିଲା—ପଦ୍ମ, ସ୍ୱସ୍ତିକାଦି ଯୋଗାସନକୁ ଛାଡ଼ି ଆସିଲା । ଅବଳାଚରଣ — ସ୍ତ୍ରୀପାଦକୁ ।
୫ । ଅଧରୁଁ—ଓଷ୍ଠରୁ । ପୀୟୂଷ—ଅମୃତ । ଅଚ୍ଛ—ନିର୍ମଳ । ତାରତର—ଅତି ଉଜ୍ଜ୍ୱଳ । ମୁକୁର ମୁଖରେ—ଦର୍ପଣ ପରି ଚକ୍ ଚକ୍ ହେଉଥିବା ନାୟିକାର ମୁଖରେ । ନିବେଶିଲା—ଦାନ କଲା । ଅଙ୍ଗରେ—ଦେହରେ । ଝଳିଲା ପରି—ଧାତୁ ଦ୍ରବ୍ୟ ଯୋଡ଼ିହେଲା ପରି ।.ଅମାନ—ଅସୀମ (ଯାହାର ପରିମାଣ ନାହିଁ)। ମାନବତୀ—ମାନିନୀ । ପତିରସେ—ସ୍ୱାମୀ ସହ ଅନୁରାଗରେ । ରସିଲା—ଆସକ୍ତ ହେଲା ।
୬ । ଅମୃତକର—ଚନ୍ଦ୍ର । କିରଣଚହଟ—କିରଣର ଉଜ୍ଜ୍ୱଳତାରେ (ଶୋଭାରେ) । ଚନ୍ଦନୀନିଶି—ଶୁକ୍ଳପକ୍ଷ ରାତ୍ର । ବିକାଶିଲା— ଶୋଭା ପାଇଲା । ଅବନୀ-ଅଙ୍ଗନା—ପୃଥିବୀରୂପ ନାୟିକା । ରଙ୍ଗରେ—କ୍ରୀଡ଼ାଚ୍ଛଳରେ । ଅଙ୍ଗରେ—

କର୍ପୂର-ରଜ କି ଘଷିଲ
ଅରୁଣ, ଉଦୟ ଶୋଭା ତ ନାଶିଲ
ଅବଜ ପ୍ରଫୁଲ୍ଲ          ମୁଖ ଶୁଖିଯିବା
ଦେଖି କି ରଜନୀ ହସିଲ । ୬ ।
ଅନଙ୍ଗ ଦମ୍ପତି-          ପ୍ରୀତି-ରଜତ କି
ରସା-ନିକଷରେ କଷିଲ
ଅନୁରାଗି-ପ୍ରିୟ          ପ୍ରିୟା-ପ୍ରେମ-ପୟ—
ପୟୋଧି କି ପୂର ପଶିଲ
ଅବା ସେ, ଚକୋର ସୁଖ ଉଲ୍ଲସିଲ
ଅର୍କୁନାଭିଆସୀ—          ବାଳାମାଳାର କି
ପୂରୁବ ପୁଣ୍ୟ ପ୍ରକାଶିଲ । ୭ ।
ଅନାୟତ୍ତ ବଶେ          ପ୍ରିୟ ଦେ ପ୍ରବାସେ
ପଡି ପ୍ରିୟା ପ୍ରୀତି ଭୁଲିଲ

---

ଦେହରେ । କର୍ପୂରରଜ—କର୍ପୂର ଚୂନା ଘଷିଲ କି ? ( ଉତ୍‌ପ୍ରେକ୍ଷା )। ଅରୁଣ ଉଦୟ ଶୋଭା ତ ନାଶିଲ—ଉଦୟ କାଳର ( ଅରୁଣ ) ରକ୍ତବର୍ଣ୍ଣ ଶୋଭାକୁ ନାଶିଲା, ରକ୍ତିମାକୁ ଛାଡି ଧବଳ ହେଲା । (ଅବଜର) ପଦ୍ମର ପ୍ରଫୁଲ୍ଲ ମୁଖକୁ ଶୁଖିଯିବାର ଦେଖି (ରଜନୀ) ରାତ୍ରି ହସିଲା କି ? ( ଉତ୍‌ପ୍ରେକ୍ଷା ) । ୭ । ଅନଙ୍ଗ—କାମ, ( ଦମ୍ପତି ) ସ୍ତ୍ରୀ ପୁରୁଷର, ( ପ୍ରୀତି ) ସ୍ନେହରୂପ—( ରଜତକୁ ) ରୁପାକୁ , (ରସା-ନିକଷରେ) ପୃଥିବୀ ରୂପକ କଷଟି ପଥରରେ କଷିଲା । ( ରଜତକୁ କଷିବା ଅସମ୍ଭବ ହେଲେ ମଧ୍ୟ ଉତ୍‌ପ୍ରେକ୍ଷା ବିଷୟ ହୋଇଥିବାରୁ ସମ୍ଭାବନା ମାତ୍ର ) । ଅନୁରାଗୀ ପ୍ରିୟ ପ୍ରିୟା—ପ୍ରଣୟୀ ନାୟକ ନାୟିକା । ପ୍ରେମ-ପୟଃ-ପୟୋଧି—ପ୍ରୀତିରୂପ ଜଳର ସମୁଦ୍ର । ପୂର ପଶିଲା—ଉଚ୍ଛୁଳି ପଡିଲା କି ? ଚକୋର ପକ୍ଷୀର ସୁଖ (ଉଲ୍ଲସିଲା) ଉଦ୍‌ଗତ ହେଲା କି ? (ଅର୍କୁନାଭିଆସୀ) ଶୁକ୍ଳ ଅଭିସାରିକା (ବାଳାମାଳା) ସ୍ତ୍ରୀମାନଙ୍କର ( ପୂରୁବ ପୁଣ୍ୟ ) ପୂର୍ବଜନ୍ମାର୍ଜିତ ସୁକୃତ ଅବା ପ୍ରକାଶ ପାଇଲା କି ? ୮ । (ଅନାୟତ୍ତବଶେ) ଅଣଆୟତ୍ତ ହୋଇ,[1] କେହୁ (ପ୍ରିୟ) ନାୟକ , (ପ୍ରବାସେ) ବିଦେଶରେ ପଡି (ପ୍ରିୟା ପ୍ରୀତି) ନାୟିକାର ପ୍ରୀତିକୁ , ଭୁଲିଲା—ଚନ୍ଦ୍ରା

* ଜନ୍ମ

ଅପାର ସ୍ନେହରେ ଲେଖକୁ ରହରେ
ଲେଖି ସ୍ୱମାଠାକୁ ସ୍ୱଲଲ
ଅତରେ, ପୁର ଯେ କାନ୍ତାର ମିଳଲ
ଅଠାକାଠି ପର କାନ୍ତା-କଣ୍ଠ କର
ପଡ଼ ତହୁଁକୁ ନ ଚଳଲ । ୮ ।
ଅଳିର ଝଙ୍କାର ଶୁଣି କେଉଁ ପର—
ବାସୀ ମୃତଠାରୁ ବଲଲ
ଅନଙ୍ଗର ଦକେ କଣ୍ଠ-କବାଟ ଯେ
କର-କଳଣୀରେ କଲଲ
ଅଙ୍ଗ ତା, ମଳୟଜ-ଜଳେ ଜଳଲ
ଅନଳ ସ୍ପରଶ ଅନଳ ସଦ୍ରଶ
ପର-କଷ୍ଟେ ଅବକଳଲ । ୯ ।

---

କଲ । (ଅପାର ସ୍ନେହରେ) ଅତି ସ୍ନେହରେ (ରହରେ) ନିର୍ଜନ ସ୍ଥାନରେ (ଲେଖକୁ) ଚିଠାଉକୁ ଲେଖି (ସ୍ୱମାଠାକୁ) ସ୍ତ୍ରୀ ନିକଟକୁ (ସ୍ୱଲଲ) ପଠାଇଲ । (ଅତରେ) ଅବଲମ୍ବେ (କେ) କୌଣସି ବିଦେଶୀ (କାନ୍ତାର)ନାୟିକାର (ପୁର) ସମୀପରେ ମିଳଲ । କାନ୍ତା କଣ୍ଠ କର ଅର୍ଥାତ୍ ସ୍ତ୍ରୀ ନିକଟକୁ ଗମନ କର ଅଠାକାଠି ପର ( ତହୁଁରେ ) ପଡ଼ ତହୁଁରୁ ଚଳଲ ନାହିଁ । ( ପକ୍ଷୀ ଅଠାକାଠିରେ ପଡ଼ିଲେ ନିଷ୍ଟଳ ରହଲ ପର କାନ୍ତା-ସମୀପ-ରୂପ ଅଠାକାଠିରେ ପଡ଼ ତହୁଁରୁ ଚଳପାରଲ ନାହିଁ )। ୯। (କେଉଁ ପ୍ରବାସୀ) ବିଦେଶୀ (ଅଳିର) ଭ୍ରମରର (ଝଙ୍କାର) ନାଦ ଶୁଣି ମୃତ ବ୍ୟକ୍ତିଠାରୁ ବଳ ପଡ଼ଲ । (ଅନଙ୍ଗର) କାମର (ଦକେ) ଭୟରେ (କଣ୍ଠକବାଟ) କଣ୍ଠରୂପ କବାଟକୁ କରରୂପ କଳଣୀରେ କଲଲ ଅର୍ଥାତ୍ ହାତରେ କାନକୁ ବନ୍ଦ କଲ । ତାହାର ଅଙ୍ଗ (ମଳୟଜ-ଜଳେ) ଚନ୍ଦନ ପାଣିରେ ଜଳଲ । ( ବିରହ କାଳରେ ଶୀତଳ ଉପଚାର ମଧ୍ୟ ସନ୍ତାପଦାୟକ ) । (ଅନଳ ପରଶ) ଦେହରେ ପବନ ବାଜିବା (ଅନଳ ସଦୃଶ) ଅଗ୍ନିପର ଅତି କଷ୍ଟେ (ଅବକଳଲ) ସହଲ ବା ମନେ କଲ ।

ଅଟବୀ-ବିହାର ଆଶେ ନାରୀବର
କେହୁ ବର ସଙ୍ଗେ ଚଳିଲା
ଅକଥନ ସ୍ନେହ— କଥା କଥନରେ
କର୍ଣ୍ଣ-କଳୁଷ ପଖାଳିଲା
ଅମୂଲ୍ୟ—ଛଳରେ ପଣ୍ଡ ବେ ଛଳିଲା
ଅନାଅ ※ ହେ ବନ୍ଧୁ ତୁମ୍ଭର ଏ ବଧୁ—
କରେ ପରା ମନ ରହିଲା । ୧୦ ।

(ଶ୍ଳେଷୋକ୍ତି)
ଅଙ୍ଗୁଳି ଦେଖାଇ ସଖୀକୁ ଲଗାଇ
ପାନ୍ଥକୁ କେ କହେ ଶ୍ଳେଷରେ
ଅନା ଏ ମୋହନା ସୁନାରୀ ସୁମନା—
ବର ନାହିଁ ଏହା ବାସରେ
ଅଟେ ଏ, ଗୁରୁ ସୁନ୍ଦରୀ ପରବାସୀ
ଅଛି କି ଶରଧା ଏହାର ପୁରକୁ
ଯିବା ଆସ ରସି କହସି । ୧୧ ।

---

୧୦ । (କେହୁ) କୌଣସି । (ନାରୀବର) ଉତ୍ତମା ନାରୀ । (ଅଟବୀ ବିହାର ଆଶେ) ବନ ବିହାର କରିବା ଆଶାରେ । (ବରସଙ୍ଗେ) ସ୍ୱାମୀ ସହିତରେ । (ଚଳିଲା) ବାହାରିଲା । (ଅକଥନ) ଅକଥନୀୟ, ଯାହା କହି ହେବ ନାହିଁ । (ସ୍ନେହ କଥା କଥନରେ) ପ୍ରେମପୂର୍ଣ୍ଣ କଥାର ଉଚ୍ଚାରଣରେ । (କର୍ଣ୍ଣ-କଳୁଷ) କାନର ପାପକୁ । (ପଖାଳିଲା) ଧୋଇଲା । (ଅମୂଲ୍ୟ ଛଳରେ) ଅଦ୍ଭୁତ ଛଳ କଥାରେ କେହି ସ୍ତ୍ରୀ ପଣ୍ଡିକ (ଛଳିଲା) ଭଙ୍ଗୀରେ କହିଲା । ହେ ବନ୍ଧୁ ! ଅନାଅ, ତୁମ୍ଭର ମନ ଏ (ବଧୂକରେ) ବନ୍ଧୁକ ପୁଷ୍ପରେ ରହିଲା ପରା ! ଅନ୍ୟ ପକ୍ଷେ—ଏ (ବଧୂ)ସ୍ତ୍ରୀର, (କରେ) ହାତ ମୁଠାରେ ତୁମ୍ଭ ମନ ରହିଲା ପରା ! ୧୧ । କେହି ସ୍ତ୍ରୀ (ଅଙ୍ଗୁଳି ଦେଖାଇ) ଆଙ୍ଗୁଠି ଦେଖାଇ (ସଖୀକୁ ଲଗାଇ) ସଖୀକୁ କହିବାର ଛଳକରି (ପାନ୍ଥକୁ) କୌଣସି ପଥିକକୁ (ଶ୍ଳେଷରେ) ଦ୍ୱ୍ୟର୍ଥବଚନଦ୍ୱାରା (କହଇ) କହୁଛି । ସୁନାରୀ ପୁଷ୍ପ ପକ୍ଷେ—ରେ ସଖି ! ରେ (ମୋହନା) ରୂପରେ ମନୋହାରିଣୀ ସୁନାରୀ(ସୁମନାବର)ଉତ୍ତମ ସୁନାରୀ ପୁଷ୍ପକୁ (ଅନା) ଦେଖ । ଏହାର ବାସ ନାହିଁ । ଏ ( ଗୁରୁ ) ସୁନ୍ଦର ସୁନ୍ଦରୀନାମକ ବୃକ୍ଷର (ପରବାସୀ) ପରରେ ବାସ କରୁଛି ପରବର୍ତ୍ତୀ (କହସି) କହୁଚ, ତୁମ୍ଭର ଶରଧା ଅଛି କି ? ଏହାର (ପୁରକୁ) ନିକଟକୁ (ରସି) ଅନୁରକ୍ତା ହୋଇ ଯିବା ଆସ ।

(ଛଳଶ୍ଳେଷ)

ଅବଳାକୁ ଲକ୍ଷି ଛଳରେ ତା' ସଖୀ
ପଥିକକୁ ଦେଖି କହୁଛି
ଅତି ସୁକୁମାରୀ ମୋ ଏ ସହଚରୀ
ନସିକାମ ପୀଡ଼ା ପାଉଛି
ଅପାର—ଉପାୟେ ଏ ଊଣା ନୋହିଲା
ଅଳ୍ପ ଅଛି ବର୍ତ୍ତ— ତଥି କ କରିବା
ଏକାନ୍ତରେ ବାଇ ହୋଇଲା । ୧୨ ।
ଅନାଇ ଚତୁର ବୋଇଲା ଏହାର
ମଣିବନ୍ଧ ଗତ ପାଇଲେ ।
ଅନୁସର କରି ପୁଷ୍ପାଶୁଗ ରସ
କରିବା ସମସ୍ତ ହୋଇଲେ ।

---

ପଥିକପକ୍ଷେ—ଏ (ମୋହନା) ମନୋହାରିଣୀ (ସୁନାରୀ) ଉତ୍ତମ ସ୍ତ୍ରୀ । (ସୁମନାବର) ବହୁଶ୍ରୀ, କାମକଳାବଣ୍ଟା (ବର) ସ୍ୱାମୀ ଏହାର (ବାସରେ) ଗୃହରେ ନାହିଁ । ଏ (ସୁରୁ ସୁନ୍ଦରୀ) ଅତି ସୁନ୍ଦରୀ ଓ (ପରବାସୀ) ଉତ୍କୃଷ୍ଟ ବସନଧାରିଣୀ ବା ଉତ୍କୃଷ୍ଟ ଗୃହବତୀ କମ୍ବା ପରର—ଅନ୍ୟର ବାସୀ (ବାସିତା) ସ୍ତ୍ରୀ ଅଟେ । ହେ ରସିକ ! ତୁମ୍ଭର ଶରଧା ଅଛି କି ? ଆସ, ଏହାର (ପୁରକୁ) ଗୃହକୁ ପ୍ରସି ଯିବା । ୧୨ । କୌଣସି ପଥିକକୁ ଦେଖି ଅବଳାକୁ (ଲକ୍ଷି) ଉପଲକ୍ଷ୍ୟ କରି ତାହାର ସଖୀ ତାହାକୁ ଛଳରେ କହୁଛି—ମୋର ଅତି ସୁକୁମାରୀ ଏ (ସହଚରୀ) ସଖୀ(ବ୍ୟେଗା-ଦରେ (ନସିକାମ) ନିଷ୍କାମ, ଯାହା କାମରୁ ଅର୍ଥାତ୍ କାମନାରୁ ବହିର୍ଭୂତ, ଅଭ୍ରବନୀୟ (ପୀଡା) ବ୍ୟଥା ପାଉଛି । (ଅପାର) ଅନେକ ଉପାୟରେ ଭଲ ହୋଇଲା ନାହିଁ । ତାହାର (ବର୍ତ୍ତ) ଶରୀରର ତେଜ (ଅଳ୍ପ ଅଛି) କମି ଗଲାଣି (ତଥି) ତହିଁକି, ସେଥିକୁ (କ କରିବା) କଅଣ କରିବା । ସେ (ଏକାନ୍ତରେ) ଅତ୍ୟନ୍ତ ଭାବେ (ବାଇ) ବାତୁଲୀ ହୋଇଲା ।ଅନ୍ୟ ପକ୍ଷେ—ମୋର ଏ ସହଚରୀ ଅତି (ସୁକୁମାରୀ) କୋମଳାଙ୍ଗୀ, ଏ (ନଶି) ରାତିରେ କାମପୀଡା ପାଉଛି । (ଅପାର ଉପାୟେ) ଅନେକ ଉପାୟରେ (ଚନ୍ଦନ ବୋଳିବା, ପଦ୍ମଦଳରେ ଶୁଆଇବା ଇତ୍ୟାଦି) ଏ ପୀଡ଼ା ଊଣା ହେଉ ନାହିଁ । ଏହାର (ବର୍ତ୍ତ) ବିବାହ ଅଳ୍ପ ଦିନ ଅଛି । ସେଥିକି କଅଣ କରିବା ? ଏ (କାନ୍ତରେ) ସ୍ୱାମୀପାଇଁ, (ବାଇ ହେଲାଣି) ପାଗଳୀ ହୋଇଗଲାଣି । ୧୩ । ସେହି ଚତୁର ପଥିକ (ଅନାଇ) ସ୍ୱହିଁ କହିଲା, "ଏହାର (ମଣିବନ୍ଧ ଗତ), ବୁଢା ଆଙ୍ଗୁଠିର ମୂଳର ଗତ ଅର୍ଥାତ୍ ନାଡ଼ୀର ଗତ (ପାଇଲେ) ଜାଣି

ଅଧରୁ ସରସ ମଧୁ ପିଆଇବ
ଅବଶ୍ୟ ଏ ପଥି— କର ଯତନରେ
ରତି ବେଦନା ନ ରହିବ । ୧୩ ।
ଅନାଇଁ ଏମନ୍ତ ସୁଖଦ ବସନ୍ତ
ଋତୁ ଉମାକାନ୍ତ ଉନ୍ମତ୍ତେ
ଅନ୍ତିକ କାନନ ଅନ୍ତକୁ ଗମନ
କରିବାକୁ କାନ୍ତା-ସଙ୍ଗତେ
ଅନୁଜ୍ଞା—କଲେ ସଖୀଗଣମାନଙ୍କୁ
ଅନୁରୂପ ବେଶ ହୁଅ ଯିବା ଆସ
ଗଉରୀଙ୍କୁ ଘେନି ବନକୁ । ୧୪ ।
ଅତରେ ସେ ନାରୀ ରୁଚିର କବରୀ
ବାନ୍ଧି ସୁରୁ ଚୀର ପିନ୍ଧିଲେ
ଅଷ୍ଟରତ୍ନ-ପୁଷ୍ଟ— ଅଲଙ୍କାର ହୃଷ୍ଟ
ହୋଇ ସେ ଅଙ୍ଗରେ ଖଞ୍ଜିଲେ
ଅଞ୍ଜନ—କଞ୍ଜନୟନରେ ରଞ୍ଜିଲେ

---

ପାରିଲେ (ଅନୁସରି କରି) ବସ୍ତୁର କରି (ସମସ୍ତ ହୋଇଲେ) ବେଳ ହୋଇଲେ "ପୁଷ୍ପାଶୁଗନାମକ" ଔଷଧ ପ୍ରୟୋଗ କରିବା । (ଅଧରୁ) ଔଷଧ ଅଧେ ପାନ କଲା ଉତ୍ତାରୁ ସରସ ମଧୁ—ବିଶୁଦ୍ଧ ମହୁ ପିଆଇବ । ଯତ୍ନରେ—ଅତିସାବଧାନରେ ଏହି (ପଥି) ପଥ୍ୟ କର । ଅବଶ୍ୟ (ରତିବେଦନା) ଅଳ୍ପ ଟିକିଏ ହେଲେ ବେଦନା ରହିବ ନାହିଁ । ଅନ୍ୟପକ୍ଷେ:—ଚତୁର ଏହା ବୋଇଲା, ରମଣୀ ବନ୍ଧଗତି ପାଇଲେ—ମନୋ-ଦୁଃଖ ଅବସ୍ଥାକୁ ପାଇଲେ ( ବନ୍ଧସ୍ତ୍ୱାଧୌତ ବନ୍ଧନେ ଇତି ମେଦିନୀ, ପୁଂସ୍ୟାଧିର୍ମାନସୀ ବ୍ୟଥା' ଇତ୍ୟମର ) (ସମସ୍ତ ହୋଇଲେ) ଶପଥ କଲେ ଏହାକୁ (ଅନୁସରି) ମତାନୁ-ବର୍ତ୍ତୀ ହୋଇ, ('ପୁଷ୍ପାଶୁଗରସ') କାମରସ ( କ୍ରୀଡ଼ା ) କରିବା । ଏ ଅଧରୁ—ଓଷ୍ଠରୁ ସରସ ମଧୁ ପିଆଇବ । ଅବଶ୍ୟ ଏ ପଥିକର—ବାଟୋଇର ( ମୋର ) ଯତନରେ (ରତିବେଦନା) ରତିପାଇଁ ହେଉଥିବା ଦୁଃଖ ରହିବ ନାହିଁ । ୧୪ । ଏମନ୍ତ—ଏ ପ୍ରକାର । ସୁଖଦ—ସୁଖକର । ଉମାକାନ୍ତ—ମହାଦେବ । ଅନ୍ତିକ କାନନ ଅନ୍ତକୁ—ନିକଟରେ ଥିବା ବନ ମଧ୍ୟକୁ । କାନ୍ତା ସଙ୍ଗତେ—ପ୍ରିୟା ସଙ୍ଗରେ । ଅନୁଜ୍ଞା—ଆଦେଶ । ତାଙ୍କର ନାନା ଶ୍ରେଣୀର ସଖୀ ଥିବାରୁ ବହୁତ୍ୱ ବାଚକ 'ଗଣ' ପଦରେ 'ମାନଙ୍କୁ' ବ୍ୟବହାର କରାଯାଇଛି । ୧୫ । ରୁଚିର କବରୀ—ସୁନ୍ଦର ଜୁଡ଼ା । ସୁରୁ ଚୀର—ସୁନ୍ଦର ଲୁଗା । ଅଷ୍ଟରତ୍ନ ପୁଷ୍ଟ—ଅଷ୍ଟ ରତ୍ନରେ ବହୁଳଭାବେ ଖଚିତ । କଞ୍ଜନୟନରେ—ପଦ୍ମତୁଲ୍ୟ ଆଖିରେ ।

ଅରୁଣ-କିରଣ ତରୁଣ ଅରୁଣ
ଓଷ୍ଠେ ନାଗବଲ୍ଲୀ ଭୁକ୍ତିଲେ । ୧୫ ।
ଅଇଲା ମର୍ଦ୍ଦଳ ଧରି ପଦଦଳ—
ନର୍ତ୍ତକୀ ଯେ ତାଳଗତରେ
ଅମୃତାଙ୍କ ଯେତ ଯେଉଁ ମତିମତୀ
ମିଳିଲେ ପାର୍ବତୀ-ଛତରେ
ଅଂସରେ—ବୀଣା ବହି ଯେଉଁ ପ୍ରବୀଣା
ଅଳପ ଆଳାପ କରିଣ କଳାପ—
କେଶୀ ମିଳାଉଅଛି ଗୁଣା । ୧୬ ।
ଅଧ ମଧ୍ୟ ଊର୍ଦ୍ଧ୍ୱ ତିନି ଗ୍ରାମ ଶୁଦ୍ଧ
କରି ଯେ ସ୍ୱର ମିଳାଉଛି
ଅତି ଉଚ ଗାନ— ରେ ଯେ କମ୍ପମାନ
ପଣ୍ଡମାନ ମୂର୍ଦ୍ଧେ ଦେଉଛି
ଅଧରେ—ବଂଶୀ ବସାଇ ଯେ ବାଉଛି
ଅତୁଲ ବର୍ତ୍ତୁଳ ତାଳ କରିତାଳ
ଧରି ଯେ * ଝଙ୍ଗୀ ଝମକାଉଛି । ୧୬ ।

---

(ଅରୁଣ କିରଣ ତରୁଣ ଅରୁଣ) ରକ୍ତବର୍ଣ୍ଣ କିରଣକୁ ଧାରଣ କରିଥିବା ଅତି ପ୍ରଭାତର ସୂର୍ଯ୍ୟପରି ରକ୍ତବର୍ଣ୍ଣ ଓଷ୍ଠରେ (ନାଗବଲ୍ଲୀ) ପାନ । ୧୬ । ତାଳଗତରେ—ତାଳ ଅନୁଯାରେ ଗୋଡ଼ ପକାଇ । ମତିମତୀ—ବୁଦ୍ଧିମତୀ । ଅଂସରେ—କାନ୍ଧରେ । ପ୍ରବୀଣା—ପ୍ରଗଲ୍‌ଭ ନାୟିକା । ଆଳାପ କରି—ତାନମାନସହିତ ସ୍ୱର ସାଧନା କରି । କଳାପକେଶୀ—ମୟୂରପୁଚ୍ଛ ପରି କେଶଯୁକ୍ତା । ଗୁଣା ମିଳାଉଅଛି—ମୁଖ ହଲାଇ ଆଳାପ କଲା ପରେ ଇତସ୍ତତଃ ହୋଇଥିବା ଗୁଣା (ନାସାଳଙ୍କାରକୁ) କୁ ସଜାଡି ଦେଉଛି । ୧୬ । ଅଧ, ମଧ, ଊର୍ଦ୍ଧ୍ୱ ତିନି ଗ୍ରାମକୁ—ଉଦାତ୍ତ, ମୃଦାତ୍ତ ଓ ତାର ଏହି ତିନି ସ୍ୱରକୁ ଶୁଦ୍ଧ କରି କୌଣସି ସ୍ତ୍ରୀ ସ୍ୱର ମିଳାଉଅଛି । ଅତି ଉଚ୍ଚରେ ଗାନ କରିବା ଦ୍ୱାରା କେହି କମ୍ପମାନ ହୋଇ ମୂର୍ଦ୍ଧରେ ପଡ ମାନ ଦେଉଛି । ଝଙ୍ଗୀ—ଝର୍ଝରୀ ନାମକ ବାଦ୍ୟ ।

* ଝାରି

ଅମୃତ-କରଣ— କଳା-ଆଭରଣ
ଚାନ୍ଦ୍ରାତପ ଧରି ଉଠିଲେ
ଅନୁଚରୀବାର ଆଳ୍ପଟ ଭ୍ରମର
ଛବ ବାସ ଧରି ଖଟିଲେ
ଅଙ୍ଗନା— ଦେଖି ହୁଲହୁଲୀ ଦିଅନ୍ତି
ଅଗ୍ରେ ଦେଉଁ ନାରୀ ଡର ପରିସାରି
ପଦ୍ମନ୍ତ ମଣାଇ ନଅନ୍ତି । ୧୮ ।
ଅଟବୀ ଦେଶରେ କୁତୁକ ରସରେ
ପରବେଶ ଯାଇଁ ହୋଇଲେ
ଅନ୍ୟୋଽନ୍ୟରେ ଛଳ ଇଙ୍ଗିତ ମଞ୍ଜୁଳ
ବଚନ ରଚନ କହିଲେ
ଅବଳା— ଯାଇଁ ସେ କୁସୁମ ତୋଳନ୍ତି
ଅତ୍ୟନ୍ତ ଚତୁରୀ ସେ ବାଣୀ-ଚତୁରୀ
ଆରି ସଜନୀ କି ଛଳନ୍ତି । ୧୯ ।
(ଶ୍ଳେଷ)
ଅନାରେ ଏ ଚୂତ- ବିଟପୀ କି ମିତ
କି ଶୋଭା ବକୁଳବଣରେ
ଅଜ୍ଞାତ ହେଲେ ପ— ଗ୍ଭର ଏହା ମୋତେ
ଲେଖନ୍ତି ସୁମନସ ଗଣରେ

---

। ୧୮ । ଅମୃତକରଣ-କଳା-ଆଭରଣ – ଚନ୍ଦ୍ରକଳା ଯାହାଙ୍କର ଅଳଙ୍କାର ଅର୍ଥାତ୍ ଶିବ । ଅନୁଚରୀବାର—ସେବିକାସମୂହ । ୧୯ । ଅଟବୀ ଦେଶରେ – ବନ ମଧ୍ୟରେ । ମଞ୍ଜୁଳ – ମନୋହର । ବାଣୀଚତୁରୀ – କଥା କହିବାରେ ପଟୁ । ୨୦—ରେ ମିତ ! ଅନା ଏ ( ଚୂତ ବିଟପୀ ) ଅମ୍ବଗଛ ( ବକୁଳବଣରେ ) ବଢ଼ିଥିବା ଗଛମାନଙ୍କ ମଧ୍ୟରେ କି (ଶୋଭା) ସୁନ୍ଦର ଦିଶୁଛି । ତୋତେ ( ଅଜ୍ଞାତ ହେଲେ) ଜଣା ନ ଥିଲେ ମତେ ପଚ୍ଚର । ଏହାକୁ (ସୁମନସ ଗଣରେ)ଫୁଲବାଣ ମଧ୍ୟରେ (ଲେଖନ୍ତି) ଗଣନା କରନ୍ତି । ତହୁଁ (ଅପରା) ଅନ୍ୟ ସ୍ତ୍ରୀ, (ବାଛି) ଖୋଜ ଖୋଜି ପ୍ରତି-ଉତ୍ତର କହୁଛି । (ଅସଂଖ୍ୟ-ସଂଖ୍ୟ) ଅଗଣିତ (ମଧୁପଠାରେ) ଭ୍ରମରମାନଙ୍କ ନିକଟରେ (ସୁରତଦାୟୀ) ସ୍ୱାଦ (ମଧୁରୂପ) ଦାନ କରୁଛି ପରା (ସୁରତ୍ ଶବ୍ଦ ଯାବନିକ

ଅପସ୍ୱ—ପ୍ରଶ୍ନଉତ୍ତର ଛନ୍ଦେ ବାନ୍ଧୁ ।
ଅସଂଖ୍ୟ-ସଂଖ୍ୟ ମ— ଧୁପଠାରେ ପସ୍ୱ
ସୁରତ-ଦାୟିନୀ ହୋଇଛୁ । ୨୦ ।
(ଶ୍ଳେଷ)
ଅବଳା ନାଯ଼୍ସି * ତ— ଲଣା ତୁ ତତ୍ପୁ
ଶ୍ରମରେ ନ ଉଣ୍ଠୁ କପାଇଁ
ଅତ ସୁଖୀ ହେବୁ ସେବନେ ସେ ବନେ
ଥିବ ଏକାନ୍ତେ ଖୋଜ ଯାଇଁ
ଅନୁବ—ଦେ ତୁ ସାର୍-ରୁପା ଯିବାରେ
ଅକ୍ଷି-ଅଲକ୍ଷିତ ଭଥା ଯେ ଘଟାଉ
ଅଟୁ ତୁ ହୃଷ୍ଟ ଭାବ୍ ମୋରେ । ୨୧ ।
(ଶ୍ଳେଷାଶୟ୍ଭ ପ୍ରଶ୍ନୋତ୍ତର)
ଅନଙ୍ଗର୍ ଶର୍ କ ପ୍ରମାଣ ତାର୍
ଅଶୋକ * ସମ କେ ସୁନ୍ଦର୍
ଅବଳା କାନ୍ତ କ * ଗ୍ରହଣେ ଲଭନ୍ତ *
ଦୁଇ ମୁଦିରେ କ ସୁନ୍ଦର୍

---

ଓଡ଼ିଆରେ ମିଠାସ୍ୱଣ ଅର୍ଥରେ ବ୍ୟବହୃତ ହୁଏ) । ଅନ୍ୟ ପକ୍ଷେ—ମିତ ଏ (ଚୃତବଝପୀ) କୁଳଚ୍ୟୁତ (ବଝପୀ) କୁଳଟା, ତୁ କ ଶୋଭ୍ସବ—ସ୍ୱଭ୍ସବ ସ୍ୱଭ୍ସବତଃ (କୁଳବଞୀ) ସାଧ୍ୱୀ । ମୋ ବିଷୟରେ (ଅଜ୍ଞା) ଜ୍ଞାନଶୂନ୍ୟା ହେଲେ ଅର୍ଥାତ୍ ମୋ ବିଷୟ ଜାଣି ନ ଥିଲେ ପସ୍ୱର । ମୋତେ (ସୁମନ) ସଜ୍ଜନମାନେ (ସଙ୍ଗରେ) ସଙ୍ଗୀମମାନଙ୍କ ମଧ୍ୟରେ ଗଣନ୍ତି । ତନ୍ତୁ ଅନ୍ୟ ସ୍ତ୍ରୀ କହିଲ, ଯେ ଅସଂଖ୍ୟ-ସଂଖ୍ୟ (ମଧୁପ) ମଦ୍ୟପାୟୀ ଲୋକ ନିକଟରେ (ସୁରତଦାୟିନୀ) କାମ କ୍ରୀଡ଼ାପ୍ରଦାନକାରିଣୀ ହୋଇଛ, ସେ ବଝପୀ ନୁହେଁ ଅଭ କଅଣ ? ୨୧ । ଶ୍ରମରେ—( ଶରମ ) ଲଜ୍ଜାରେ ଓ କ୍ଳାନ୍ତ ହେତୁ । ସେବନେ ସେବନେ—ଏକ ବନ ପରେ ଅପର ବନରେ ଓ ସେ ବନ ଦେଶରେ ସେବା କରିବା ଦ୍ୱାରା । ଅନୁବଦେ—ଉତ୍ତର କଲ । ତୁ ସାରରୁପା ଯିବା—ତୁ ଉତ୍କୃଷ୍ଟ ରୁପବତୀ,ଅସ ଯିବା; ଅନ୍ୟପକ୍ଷେ—ତୁ ସାର-ରୁପାଜୀବା—ଉତ୍କୃଷ୍ଟ ବେଶ୍ୟା ।

୨୨ । ପ୍ରଶ୍ନପକ୍ଷେ—ଅନଙ୍ଗର ଶରର କ ପ୍ରମାଣ ?—( କେତେ ପରିମାଣ ଅର୍ଥାତ୍ ସଂଖ୍ୟା ) ଉତ୍ତର—( ହାତ ଠେକିବା ଛଳରେ ) ପାଞ୍ଚ ଅଙ୍ଗୁଠି ଦେଖାଇ ପାଞ୍ଚ ବୋଲି କହିଲ ।

* କେଳାଣା, 'ବା', କ ଅଣା * କାନ୍ତ ନିଗ୍ରହଣେ, କାନ୍ତ ବଗହଣେ (ଖ)

ଅଙ୍ଗନା—ଶୁଣି ଡାକନ୍ତେ ତୋଳ ପାଣି
ଅଚରେ ସଂଖ୍ୟ ଉପମା ନାମ ଭୂଷା
ଶ୍ଳେଷ ଏ ପ୍ରଶ୍ନ ସଖୀ ଜାଣି । ୨୨ ।
ଅଣୁଭବ ସହି ନ ପାରଇ ସହି
ଗିରି ତୋଳିବାକୁ ଯେ କ୍ଷମ
(ଅଶସ୍ତ୍ର) ଅମ୍ବୁଜ ଶୋଭା ସେ ଫୁଟିଲେ ନ ଦିଶେ
କୁଟିଳ ହୋଇ ମନୋରମ
ଅର୍ଜୁନ—କୃଷ୍ଣ ଅରୁଣ ଶୋଭା ଧରେ
ଅଟଇ ସେ ବିଷ ତାହାକୁ ପୀୟୂଷ
ଗୁଣ କରଇ ତାହାଠାରେ । ୨୩ ।

---

ପ୍ର—ଅଶୋକ ସମ (ପର) କେ (କିଏ) ସୁନ୍ଦର ?
ଉ—ହାତ ।
"ଯସ୍ୟାମଶୋକାଙ୍କୁର ପାଣିପଲ୍ଲବେ ଇତି କାଳିଦାସ
ହସ୍ତ ଅଶୋକ ପଲ୍ଲବ ସହିତ ତୁଳିତ ହୁଏ ।
ପ୍ର—(ଅବଳା) ସ୍ତ୍ରୀମାନେ କ (ଗ୍ରହଣେ) କଅଣ ଗ୍ରହଣ କରିବାଦ୍ୱାରା (କାନ୍ତ) ସ୍ୱାମୀକୁ ଲାଭ କରନ୍ତି ?
ଉ—ପାଣି (ହାତ) ।
ପ୍ର—ଦୁଇ (କାହାର ସଂଖ୍ୟା ଦୁଇ) ?
ଉ—ହାତ ।
ପ୍ର—(ମୁଦରେ) ମୁଦଦ୍ୱାରା (କ) କଅଣ (ରୁଚିର) ସୁନ୍ଦର ?
ଉ—ହାତ ।

କୌଣସି ଅଙ୍ଗନା (ସ୍ତ୍ରୀ) ଏହି ପ୍ରଶ୍ନ ଶୁଣି (ଉତ୍ତର ଦେବା ଛଳରେ) ପାଣି (ତୋଳି) ହାତ ଟେକି ଡ଼ାକନ୍ତେ ତାହାର ସଖୀ (ଅଚରେ)ତତ୍‌କ୍ଷଣାତ୍ ଜାଣିପାରିଲା "ଏ ପ୍ରଶ୍ନ ସଂଖ୍ୟ (?) ଉପମା ନାମକ (ଭୂଷା) ଅଳଙ୍କାର ଶ୍ଳେଷ ଅଟେ ।"
୨୩ । ଯେ (ଗିରି ତୋଳିବାକୁ) ପର୍ବତ ଟେକିବାକୁ (କ୍ଷମ) ସମର୍ଥ, ସେ (ଅଣୁଭବ) ଫୁଲପରାଗର ଭରକୁ ସହିପାରୁ ନାହିଁ । (ଅମ୍ବୁଜଶୋଭା)—ପଦ୍ମପର ଶୋଭା ଦିଶେ,ଅମ୍ବୁଜ ଫୁଟିଲେ ସମସ୍ତଙ୍କୁ ଦେଖାଯାଏ;କିନ୍ତୁ ଏ ଫୁଟିଲେ ଦିଶେ ନାହିଁ। ପୁଣି (ଅର୍ଜୁନ) ମଧ୍ୟମ ପାଣ୍ଡବ, (କୃଷ୍ଣ) ବାସୁଦେବ, (ଅରୁଣ) ସୂର୍ଯ୍ୟ, ଏମାନଙ୍କ ଶୋଭାକୁ ଧରେ । ସେ ପୁଣି କେଉଁଠି ବିଷ କେଉଁଠି (ପୀୟୁଷ) ଅମୃତ ପରି କାର୍ଯ୍ୟ କରେ । ସ୍ପଷ୍ଟାର୍ଥ—ଯେଉଁ ସ୍ତ୍ରୀ ସାମାନ୍ୟ ଭର ସହିପାରୁ ନାହିଁ, ସେ କୁଚରୂପ ପର୍ବତକୁ ବହିଛି । ଆଖି ପଦ୍ମପରି ସୁନ୍ଦର; ସେ ଯେବେ (ଫୁଟିଯାଏ) ନଷ୍ଟହୁଏ,ତେବେ ଦିଶେ ନାହିଁ । ସେ (ଅର୍ଜୁନ)ଧଳା, (କୃଷ୍ଣ) କଳା ଓ (ଅରୁଣ) ରକ୍ତବର୍ଣ୍ଣ ଶୋଭାକୁ ଧାରଣ କରେ । ସଂଯୋଗୀ ପକ୍ଷରେ ତାହା ଅମୃତ ଓ ବିଯୋଗୀ ପକ୍ଷରେ ବିଷତୁଲ୍ୟ।

ଅହିଲତା ରସ ଯୋଗରେ ପୀୟୂଷ
ବୃଷ୍ଟି କି କରଇ ଅରୁଣ
ଅତି ଅଲପ ସେ ଅତନୁ ସୁରସେ *
* ତନ୍ତଯାଏ ଅନ୍ତଃକରଣ
ଅବଳା—ଏ କିସ କହି ପୁଚ୍ଛେ କେହି
ଅପାଙ୍ଗ-ତରଙ୍ଗେ ସ୍ମିତ-ରସ-ରଙ୍ଗେ
ଗୃହାଁନ୍ତେ ପ୍ରଶଂସଇ ସହୀ ।୨୪।
ଅଳସ ଭ୍ରୁଙ୍ଗନ୍ତେ କଳସସ୍ତନା ଯେ
ସ୍ତନମୂଳକୁଁ ବାସ ଖସୁଛି
ଅଳ୍ପ ଇଷି ଇଷି ଘୁଷି ନେବ ଖୋଷି
କପାଳରେ, ମନ୍ଦେ ହସୁଛି
ଅତୁଳ—ତିଳନାସା ଫୁଲ ଆସୁଛି
ଅଧରକୁ ଥରେ ଥରେ ଦଶନରେ
ଛୁଉଁ କି ଶୋଭନ ଦିଶୁଛି ! ୨୫ ।

---

୨୪ । ଅରୁଣ - ସୂର୍ଯ୍ୟ । ଅହିଲତା ଯୋଗରେ—ସର୍ପଯୋଗରେ (ଲମ୍ବ ହୋଇଥିବାରୁ ସର୍ପକୁ ଲତା ସଙ୍ଗେ ରୂପଣ କରାଯାଇଛି) । (ପୀୟୂଷ) ଅମୃତ ବୃଷ୍ଟି କରୁଛି । ସେ ଅମୃତ ଅତି ଅଳ୍ପ ହେଲେହେଁ ତାହାର ଅତନୁ (ସୁରସେ) ଅଧିକ ଜଳରେ (ଅନ୍ତଃକରଣ) ହୃଦୟ ତନ୍ତଯାଏ । ଏହି ଅସମ୍ଭବ ପ୍ରଶ୍ନ ଶୁଣି କେହି ଅବଳା (ସ୍ତ୍ରୀ) ଏ କିସ ? ଏହା କଅଣ ବୋଲି ପଚାରିଲା । ତହୁଁ ଅପର ସ୍ତ୍ରୀ (ଅପାଙ୍ଗତରଙ୍ଗେ) ଚଞ୍ଚଳ କଟାକ୍ଷରେ ଓ (ସ୍ମିତରସରଙ୍ଗେ) ମନ୍ଦହାସରେ ବୁଝୁଁବାରୁ ସହୀ ତାହାକୁ ପ୍ରଶଂସା କଲା । ସ୍ପଷ୍ଟାର୍ଥ (ଅରୁଣ) ରକ୍ତବର୍ଣ୍ଣ ହୋଇଥିବା (ଅଧର) ଓଷ୍ଠ (ଅହିଲତା ଯୋଗେ) ପାନ ସହିତ ମିଶି (ପୀୟୂଷ) ମନ୍ଦହାସରୂପ ଅମୃତ ବୃଷ୍ଟି କରୁଛି । ସେ ମନ୍ଦହାସ ଅତି ଅଳ୍ପ ହେଲେ ସୁଦ୍ଧା ତାହା ଫଳରେ (ଅତନୁସୁରସେ) କାମରସରେ (ଅନ୍ତଃକରଣ) ହୃଦୟ ପର୍ଯ୍ୟନ୍ତ ତନ୍ତି ଯାଉଛି ( ଜଡ଼ିତ ହୋଇଯାଉଛି ) । ପୂତ ପ୍ରଶ୍ନର ଉତ୍ତର କାର୍ଯ୍ୟରେ ଦେଖାଇଦେବାରୁ ସେ ପ୍ରଶଂସା କଲା ।୨୫। ଦଶନରେ— ଦାନ୍ତରେ ।

* ସରସେ । * ତନ୍ତି ।

ଅନଙ୍ଗବଶରୁ ଦେହ ଭୁରୁ ଗୁରୁ
* ଗୁପ ନୃତ୍ୟ ଛଳେ କରୁଛି
ଅଲକ୍ଷ୍ୟ କଟାକ୍ଷ ତୀକ୍ଷ୍ଣ ଶର ସନ୍ଧି
ଶ୍ରବଣ ଲକ୍ଷକୁ ପେଶୁଛି
ଅଖିଳ—ସାର-ଶୋଭା-ସୃଷ୍ଟି ନାଶୁଛି
ଅଛି ଯେ ତା ଦେଖି ଜାଣିଛି ତା ଆଖି
କହିବାକୁ ତ ନ ଆସୁଛି । ୨୭ ।
ଅନୁରାଗ-ସଙ୍ଗ- ଅପାଙ୍ଗେ ଅନାଇ
ଉମାକୁ କହନ୍ତି ଈଶାନ
ଅନା ଏ ନଆଳୀ ଫୁଲ୍ ବନମାଳୀ
ପ୍ରାଏ ହେଉଛି ପ୍ରାଣଧନ
ଅର୍ଜୁନ—ଭାବରେ ପ୍ରଫୁଲ୍ଲିତ ହୋଇ
ଅନେକ କଳି ପ୍ରକାଶୁଅଛି କୁରୁ-
ପରଭାବରେ ତଢ଼େ ବହି । ୨୭ ।
ଅବକଳ କଳ- କଣ୍ଠି ! ଏ କୋକିଳ
ଜାୟା—ଜୀବ—ବ୍ରତ କରୁଛି

୨୭ । ଭୁରୁ ଗୁରୁ ଗୁପ ନୃତ୍ୟ—ଭ୍ରୂଲତା ରୂପକ ସୁନ୍ଦର ଗୁପର ନାଚ । ଅଖିଳ—ସମସ୍ତ ପ୍ରକାର । ସାର ଶୋଭାସୃଷ୍ଟି—ଉତ୍କୃଷ୍ଟ ସୌନ୍ଦର୍ଯ୍ୟସମୂହ । ୨୭ । ଅନୁରାଗସଙ୍ଗ—ଅନୁରାଗଯୁକ୍ତ ଅପାଙ୍ଗେ—ନେତ୍ର ପ୍ରାନ୍ତଭାଗରେ । ଈଶାନ—ଶିବ । ଏ ନଆଳୀ ଫୁଲ (ବନମାଳୀ) କୃଷ୍ଣଙ୍କ ପରି (ଶୋଭନ) ସୁନ୍ଦର ହୋଇଛି । ନଆଳୀପକ୍ଷେ—(ଅର୍ଜୁନଭାବରେ ) ଧବଳ ରୂପରେ ( ପ୍ରଫୁଲ୍ଲିତ ହୋଇ) ପ୍ରସ୍ଫୁଟିତ ହୋଇ (କୁରୁପରଭାବରେ) କୁରୁ-ପ୍ରଭୁ-ବରେ—କୁରୁବକ ବା କୁରୁବାନ୍ଧର ଉତ୍କୃଷ୍ଟ କାନ୍ତିକୁ (ଧବଳତାକୁ) (ତଢ଼ରେ) ଦେହରେ (ବହି) ଧାରଣ କରି ଅନେକ (କଳୀ) କଢ଼ି ପ୍ରକାଶ କରୁଅଛି । ( 'ତଢ଼' ପଦ ଶ୍ଳେଷାନୁରୋଧରେ ଦେହ ଅର୍ଥରେ ବ୍ୟବହୃତ ) । ବନମାଳୀ—କୁରୁବଂଶୀୟମାନଙ୍କର (ପରଭାବେ) ଶତ୍ରୁରୂପେ ଅନେକ (କଳି) ଯୁଦ୍ଧ ପ୍ରକାଶ କରିଥିଲେ ।

୨୮ । (କଳକଣ୍ଠି) ହେ ମଧୁରକଣ୍ଠିଣି ! ଅବକଳ—ଦେଖ, ଏ କୋକିଳ (ଜାୟାଜୀବବ୍ରତ) ଏକପତ୍ନୀ ବ୍ରତ କରୁଛି ( ସ୍ୱ ସ୍ତ୍ରୀ ବ୍ୟତୀତ ଅପର ନାୟିକା

* ଗୁପ ନୃତ୍ୟ ଛଳେ କଷୁଛି

ଅବଲମ୍ବନ ବ- ଟପୀଙ୍କି କରଣ
କୁହୁକ ଜାଲ ପ୍ରସ୍ତୁତଛ
ଅତନୁ—ରଜାଙ୍କୁ ଏ ଗୁଣ ଦେଖାଇ
ଅଛ ମୁକୁଳ କେ- ବଳ-କବଳକୁ
ଖଞ୍ଜା କରିନେଲ ଲେଖାଇ ।୨୮।
ଅଳକ ଗୁହାଁ ଏ କଳକ ଧାଇଁଛୁ
ସୁମନ ପରେ ପାଦ ମାତ୍ର
ଅହର୍ନିଶି ମଧୁ ପିଇବାରୁ ବନ୍ଧୁ !
ଜ୍ଞାନ ନାହିଁ ଦେହେ ଏହାର
ଅଲଗା—ହୋଇ ଆସ ରସସାଗର !
ଅବ୍‌ଜ ବୋଲି ଆସି ତୋର ମୁଖ-ଶଶୀ
ଦିଅଇଟି ବସି ବଦାର ।୨୯।

---

ଗ୍ରହଣ ନ କରିବାର ନିୟମ କରିଛ ) । କିନ୍ତୁ ଏଣେ (ବିଟପୀଙ୍କୁ) ବୃକ୍ଷଙ୍କୁ, ଅନ୍ୟପକ୍ଷେ—ବିଟପୀ ସ୍ତ୍ରୀଙ୍କୁ (ଅବଲମ୍ବନ କରି) ଆଶ୍ରୟ କରି ( କୁହୁକ-ଜାଳ ) —କୁହୁସ୍ୱର ରୂପ ଅବ୍ୟକ୍ତ ଧ୍ୱନି, ଅନ୍ୟ ପକ୍ଷେ :—ଅବ୍ୟକ୍ତ ଧ୍ୱନିରୂପ କୁହୁକ ପ୍ରସ୍ତୁତ କରୁଅଛ ( ଇନ୍ଦ୍ରଜାଲ ବିଦ୍ୟାରେ ଯେପରି ଚକ୍ଷୁବନ୍ଧନ କରି ମିଛକୁ ସତ କରିଦିଅନ୍ତି, ଏ ସେହିପରି କୁଳଟାଗଣଙ୍କ ସଙ୍ଗେ ଅଶିଷ୍ଟ ବ୍ୟବହାର କରି ମୁଗ୍ଧା ସ୍ତ୍ରୀ ପାଖେ ନିଜକୁ ସତ୍ ବୋଲି ପ୍ରମାଣିତ କରିଛ ) । (ଅତନୁ ରଜା) କାମରଜା ଏ ଗୁଣ ଦେଖାଇ (ଅଛ ମୁକୁଳ) ସୁନ୍ଦର ଆମ୍ବ ବଉଳର (କେବଳ କବଳକୁ) ଅର୍ଥାତ୍ ସେ ଏକମାତ୍ର ଆମ୍ବ ବଉଳ ଖାଇପାରିବ, ଏହି ପ୍ରକାର ଲେଖାଇ ଖଞ୍ଜା କରି-ନେଲ । ( ଆମ୍ବ ବଉଳ ଖାଇବାକୁ ଇଜାରା ନେଇଛ ) ।

୨୯ । ପ୍ରିୟେ । ଏ (ଅଳକ) ଭଅଁରକୁ ଦେଖ, ସେ (ସୁମନ ପରେ) ଫୁଲ ଉପରେ (ପାଦ ମାତ୍ର) ଗୋଇଠା ମାରି (କଳକ) କଟକଟକୁ ଧାଇଁଛି । ହେ ବନ୍ଧୁ ! ଏ (ଅହର୍ନିଶି) ଦିନରାତି (ମଧୁ) ଫୁଲମହୁ ପିଇବାରୁ ଏହି ଦେହରେ ଜ୍ଞାନ ନାହିଁ ଅତଏବ ହେ (ରସସାଗର) ରସନିଧି ! ତୁ (ଅଲଗା ହୋଇ ଆସ) ତା ପାଖରୁ ଦୂରକୁ ଚାଲିଆସ । (ଅବଜ)ପଦ୍ମ ବୋଲି ଆସି ତୋର (ମୁଖ-ଶଶିକୁ) ଚନ୍ଦ୍ରମୁଖକୁ (ବିଦାର ଦିଅଇଟି କି) କାଳେ ବିଦାରିଦେବ ।

(ମଧୁପ) ମହୁଆ ଲୋକ, (ସୁମନପରେ) ବିଦ୍ୱାନ୍ ଲୋକ ଉପରେ ଗୋଇଠା ମାରି କଳି କରିବା ପାଇଁ ଧାଏଁ । ତାର କାଣ୍ଡଜ୍ଞାନ ନ ଥାଏ । ଅହୁରି ମଧ୍ୟ ମଦ୍ୟପାୟୀ ଲୋକ ସୁଯୌବନା ସ୍ତ୍ରୀକୁ ପରିତ୍ୟାଗ କରି ଅଜାତରଜାର ଅନୁସରଣ କରିବା ଅଜ୍ଞାନତାର ଫଳ ।

ଅପାଙ୍ଗ ଭଙ୍ଗୀରେ ଜାନ୍ତକୁ ମଧୁରେ
କହନ୍ତି ଅଚଳ-ଦୁଲ୍ଲଳୀ
ଅନାଅ ବିଟପୀ ପୁଷ୍ପ ଛଳେ ହସି
ତୁମ୍ଭଙ୍କୁ କରୁଛନ୍ତି ଅଳି
ଅଳି-ନା—ଦେ କଳି କରନ୍ତି ମୋ ସଙ୍ଗ
ଅଛ ଯେ କପର୍ଦ୍ଦୀ ସୁମନସ-ଭ୍ରୋଗ
କରିବା ହେଉ କି ନା ରଙ୍ଗେ । ୩୦ ।
ଅଟବୀ ଯାକରେ ଲତା ମଧୁଭରେ
ପ୍ରଫୁଲ୍ଲିତ ହୋଇଅଛନ୍ତି
ଅଥ ଦ୍ୱିଜବୃନ୍ଦ ମଧୁରେ ଆନନ୍ଦ
ହୋଇ କୋଳାହଳ କରନ୍ତି
ଅଳିଏ—ମଧୁରସରେ ଛନ୍ତି ମାତି
ଅଟେ ମଧୁକାଳ ମଧୁପର-ବାଳ
ଏ ମଣ୍ଡଳେ ପୁଣି ନୃପତି । ୩୧ ।

---

୩୦ । (ଅଚଳଦୁଲ୍ଲଳୀ) ପାର୍ବତୀ (ମଧୁରେ) ମଧୁରସ୍ୱରରେ (ଅପାଙ୍ଗ-ଭଙ୍ଗୀରେ) କଟାକ୍ଷରେ କାନ୍ତଙ୍କୁ ସୁହଁ କହୁଛନ୍ତି—ପ୍ରିୟ ! ଅନାଅ—ଦେଖ (ବିଟପୀ) ବୃକ୍ଷ ଓ କୁଳଟା ସ୍ତ୍ରୀ ପୁଷ୍ପଛଳେ ହସି ତୁମ୍ଭଙ୍କୁ (ଅଳି) ନିବେଦନ କରୁଅଛନ୍ତି, ମୋ' ସଙ୍ଗରେ (ଅଳିନାଦରେ) ଭଅଁର ଶବ୍ଦ ଛଳରେ (କଳି) କଳିଅ କରୁଛନ୍ତି (ସପତ୍ନୀ ଦ୍ୱେଷ ରଖି)।ତୁମ୍ଭେ ତ (କପର୍ଦ୍ଦୀ) ମହାଦେବଙ୍କର ଅପରନାମ, ଅନ୍ୟପକ୍ଷେ—ଧନବାନ୍ ଅଛ, ଅତଏବ (ସୁମନସଭ୍ରୋଗ) ଫୁଲକୁ ଭ୍ରୋଗ ଅର୍ଥାତ୍ ଆଘ୍ରାଣ କରିବା ହେଉ କି ନା । ଅନ୍ୟପକ୍ଷେ—ତୁମ୍ଭେ ଧନଲୋକ ହୋଇଥିବାରୁ ବିଟପୀ ସ୍ତ୍ରୀଙ୍କୁ (ସୁମନ) ଉତ୍ତମ ମନରେ ସମ୍ଭୋଗ କର । ୩୧ । (ଅଟବୀଯାକରେ) ବନର ସର୍ବାଂଶରେ, ଲତାମାନେ (ମଧୁଭରେ) ପୁଷ୍ପମଧୁର ଆଧିକ୍ୟ ହେତୁ (ଅନ୍ୟପକ୍ଷେ—ଲତା ସଦୃଶୀ ସ୍ତ୍ରୀମାନେ ମଦ୍ୟରେ ) ପ୍ରଫୁଲ୍ଲିତ ହୋଇଅଛନ୍ତି । ଦ୍ୱିଜବୃନ୍ଦ—ପକ୍ଷୀମାନେ (ଅନ୍ୟପକ୍ଷେ—ବ୍ରାହ୍ମଣମାନେ), (ମଧୁରେ) ମନୋହରସ୍ୱରରେ (ଅନ୍ୟପକ୍ଷରେ—ମଦ୍ୟରେ) ଆନନ୍ଦରେ କୋଳାହଳ କରୁଅଛନ୍ତି । (ଅଳିଏ) ଭ୍ରମରମାନେ, (ମଧୁରସରେ) ଫୁଲରସରେ (ଅନ୍ୟତ—ମଧୁରେ—ମଦ୍ୟରେ) ମାତିଛନ୍ତି । (ମଧୁପର-ବାଳ) ମଧୁଦୈତ୍ୟର ଶତ୍ରୁ ଶ୍ରୀକୃଷ୍ଣଙ୍କର ପୁତ୍ର (କାମ), (ଅନ୍ୟପକ୍ଷେ ମଧୁପ—ମଦ୍ୟପର ପୁଅ) (ଏ ମଣ୍ଡଳେ) ରାଜ୍ୟରେ (ନୃପତି) ରାଜା ।

ଅନୁମାନ ହୋଏ   ଏ ଘେନ ସିନା ଏ
ବନରେ ଆଉ ଜାତି ନାହିଁ
ଅଙ୍ଗନାକୁ କୋଳେ   ଲୁଚ୍ଚଇ ଏ କାଳେ
ବନେ ଭ୍ରମାଇ ଶୁଣୁଥାଇ
ଅତନୁ—ଦବା ଲଗିଲଣି ମୋହର
ଅଳ୍ପ ପରିହାସେ   ଏମନ୍ତ ଭାଷଂ ସେ
ଗୁହାଁନ୍ତେ କୋଳ କଲେ ହରି । ୩୨ ।

ଅନ୍ତ ହେଲା ବନ-   ଶଧିର ବର୍ଣ୍ଣନ
ଏ ଛାନ୍ଦ ହୃଦାନନ୍ଦକର
ଅହି-ଅସି-ଅରି-   ଶୂଳ ଶକ୍ତିଧାରୀ
ଅର୍ଦ୍ଧ-ଶଶାଙ୍କ-ଶୋଭିଶିର
ଅଙ୍ଗନା—ଅଙ୍ଗ, ଅନ୍ଧକ ଦୈତ୍ୟ-ଯମ
ଅବନୀଶ ବଳ-   ଭଦ୍ର ଅଘକାଳୀ-
ଅନ୍ଧାରକୁ ସେ ପୂର୍ଣ୍ଣସୋମ । ୩୩ ।

---

୩୨ । ଏଣୁ ଅନୁମାନ ହେଉଛି, (ଏ ଘେନ) ଏହି ହେତୁରୁ (ଏ ବନେ) ଏହି ବନରେ ଆଉ (ଜାତି) ମାଳତୀଫୁଲ ( ଅନ୍ୟପକ୍ଷେ ବ୍ରାହ୍ମଣାଦି ଜାତି ) ନାହିଁ । (ଏ କାଳେ) ଏହି ବସନ୍ତ କାଳରେ ଅଙ୍ଗନାକୁ—ସ୍ତ୍ରୀକୁ କୋଳେ ଲୁଚ୍ଚଇ (ବନେ) ବନରେ (ଭ୍ରମାଇ) ବୁଲାଇବା ଉଚିତ, ଏହା ଶୁଣୁଥାଇଁ ( ଅନ୍ୟପକ୍ଷେ—ଏ'—ବସନ୍ତକାଳ, କାଳେ—କୃଷ୍ଣସର୍ପମାନଙ୍କୁ, ଅଙ୍ଗ—ସୁନ୍ଦର ନାକୁ-କୋଳେ—ଉଇହୁଙ୍କା ମଧରେ ଲୁଚ୍ଚଏ, ଭ୍ରମାଇ—ବୁଲାଏ,ଏହା ଶୁଣୁଥାଇଁ )। ମୋହୋର, (ଅତନୁଦବା) କାମଭୟ (ଅନ୍ୟପକ୍ଷେ—ଅଧିକ ଭୟ) ଲଗିଲଣି—ଜାତ ହେଲାଣି । ୩୩ । ହୃଦାନନ୍ଦ-କର—ମନର ଆନନ୍ଦଦାୟକ, ଅହି—ସର୍ପ, ଅସି—ଖଣ୍ଡା, ଅରି—ଚକ୍ର, ଅର୍ଦ୍ଧ-ଶଶାଙ୍କ—ଅର୍ଦ୍ଧଚନ୍ଦ୍ର । ଅଙ୍ଗନାଅଙ୍ଗ—ସ୍ତ୍ରୀ ଯାହାଙ୍କର ଅର୍ଦ୍ଧାଙ୍ଗ । ଅଘକାଳୀ-ଅନ୍ଧାରକୁ—ପାପରୂପ କାଳୀଅନ୍ଧାର'—ଗାଢ(କୃଷ୍ଣବର୍ଣ୍ଣ)ଅନ୍ଧାର ପକ୍ଷେ, ପୂର୍ଣ୍ଣସୋମ—ପୂର୍ଣ୍ଣଚନ୍ଦ୍ର ।

# ପଞ୍ଚତ୍ରିଂଶ ଛାନ୍ଦ

## ରାଗ—ଭୂପାଳ

ଅଥ ଶୁଣ ହେ ଗୁଣ-ନିପୁଣଗଣ
ଅଛି କୁଞ୍ଜେ ବସିଣ ବେନିଜଣ * । ୧ ।
ଅନୁରାଗ-ଅମ୍ବୁଧ-ସମୟ ପାଇ
ଅହର୍ନିଶି ରତି-ବଲ୍ଲୀ ପଲ୍ଲବଇ । ୨ ।
ଅନ୍ୟୋଽନ୍ୟରେ ଆଶ୍ରିତ ଦୁହିଁଙ୍କ ତନୁ
ଅନିବାରେ ବଢେ଼ ଏଣୁ ଦିନୁ ଦିନୁ । ୩ ।
ଅଙ୍କ-ଆଳବାଳ ଯହିଁ ଶୋଭାପାଏ
ଅଷ୍ଟ ସାତ୍ତ୍ୱିକ-ପିଣ୍ୟାକ ପାଉଥାଏ । ୪ ।
ଅମୃତରୁ ଶୀତ-ବାଣୀ-ପାଣି ପାଇ
ଅଙ୍ଗହୀନ ତାପ-ତପ୍ତି ନ ଲାଗଇ । ୫ ।
ଅନ୍ତରତା-ପଶୁ ଜୀବ ଖାଇ-ଭୟେ
ଅନୁକ୍ଷଣେ ଭୁଜଭିଡ଼ା-ବାଡ଼ ରହେ । ୬ ।
ଅଚ୍ଛଭାବ ପଲ୍ଲବନିକରେ ଶୋଭା
ଅବାମତା-କଢ଼, ରତି-ପୁଷ୍ପଗନ୍ଧ । ୭ ।

---

### ପଞ୍ଚତ୍ରିଂଶ ଛାନ୍ଦ

୧ । ଗୁଣନିପୁଣଗଣ—ଗୁଣିବ୍ୟକ୍ତିମାନେ । ବେନିଜନ—ଦୁହେଁ (ଶିବ, ଗୌରୀ) । ୨ । ଅନୁରାଗ-ଅମ୍ବୁଦ ସମୟ—ପ୍ରୀତିରୂପକ ବର୍ଷାକାଳ । ଅହର୍ନିଶି—ସର୍ବଦା । ରତିବଲ୍ଲୀ—ରତିରୂପକ ଲତା । ପଲ୍ଲବଇ—ନୂତନ ପତ୍ରରେ ଶୋଭିତ ହୁଏ । ୩ । ଅନ୍ୟୋଽନ୍ୟରେ—ପରସ୍ପର । ଅନିବାରେ—ଅବାଧରେ । ୪ । ଅଙ୍କ-ଆଳବାଳ—କୋଡ଼ରୂପ ମନ୍ଦା । ଅଷ୍ଟସାତ୍ତ୍ୱିକ—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ (ମୂର୍ଚ୍ଛା) । ପିଣ୍ୟାକ—ପିଡିଆ । ୫ । ଶୀତ—ଥଣ୍ଡା । ବାଣୀପାଣି—ବଚନରୂପ ଜଳ । ଅଙ୍ଗହୀନ ତାପତପ୍ତି— କାମସନ୍ତାପର ତେଜ । ନ ଲାଗଇ—ବାଧେ ନାହିଁ । ୬ । ଅନ୍ତରତା···ଭୟେ—ବିଚ୍ଛେଦରୂପ ପଶୁ ଖାଇଯିବା ଭୟରେ । ଅନୁକ୍ଷଣେ ସର୍ବଦା । ଭୁଜଭିଡ଼ା—ଆଲିଙ୍ଗନ ରୂପ ବାଡ଼ ରହୁଥାଏ । ୭ । (ଅଚ୍ଛଭାବ) ନିର୍ମଳ ଭାବ ରୂପ (ପଲ୍ଲବନିକରରେ) ପତ୍ରସମୂହରେ ଶୋଭାପାଏ । (ଅବାମତା) ପ୍ରସନ୍ନଭାବରୂପ (କଢି) ପୁଷ୍ପକଳିକା । ରତିରୂପ (ପୁଷ୍ପଗନ୍ଧ) ପେନ୍ଥା ।

ଅକ୍ଷି ଆଦି ଭକ୍ଷ ମାଳାକାରେ ଲଗି
ଅନ୍ତଃକରଣ ଦେବତା ପୁଷ୍ପଭୋଗୀ । ୮ ।
ଅତ ମତ୍ତେ ମନୋଭୃଙ୍ଗ ମଧୁ ଲଭେ
ଅଥ ଦ୍ୱିଜ-ଦ୍ୱିଜେ ଥାନ୍ତି ରସ ରଙ୍ଗେ । ୯ ।
ଅର୍କ-ଉଦୟୁଁ ଉଦୟ ହେବା ଯାଏ
ଅହୋସ୍ୱନ ନେତ୍ର କ୍ଷଣମାତ୍ର ନୋହେ । ୧୦ ।
ଅଶନହିଁ ନ ରୁଚଇ ଭାବେ ମାତ
ଅନ୍ୟ ବିଷୟେ ବିଷ ଏ ଘେନେ ମତ । ୧୧ ।
ଅପର୍ଣ୍ଣାର ମନୋରଥ ପୂର୍ଣ୍ଣ ହେବ
ଅମରାଳଙ୍କ ଉଦ୍‌ବେଗ ନାଶ ଯିବ ।୧୨ ।
ଅସୁରେଶ ତାରକା ହୋଇବ ହତ
ଅବଶ୍ୟ ଭ ଏତେ କଥା ଅପେକ୍ଷା ତ । ୧୩ ।
ଅଷ୍ଟ-ଆଖି ରଖିଛୁ ଏ କର୍ମ ଚନ୍ତ୍ର
ଅଦ୍ରି ନନ୍ଦିନୀ ସୁଯୋଗେ ଗର୍ଭବତୀ । ୧୪ ।
ଅର୍ଦ୍ଧହର ଅବନୀର ଊଣା ହେଲା
ଅପସର ଇନ୍ଦ୍ର ବସି ନଗ୍ନ ଇଲା । ୧୫ ।
ଅଗ୍ନି ତେଜୋବନ୍ତ ରୂପ ପ୍ରକାଶିଲେ
ଅରୁଣହିଁ କିରଣ ଧାରଣ କଲେ । ୧୬ ।

---

୮ । ଅକ୍ଷିଆଦ—ଚକ୍ଷୁଆଦ ଇନ୍ଦ୍ରିୟରୂପ ମାଳାକାରମାନେ—ମାଳିମାନେ ତାଙ୍କୁ ଲଗିଥାନ୍ତି । (ଅନ୍ତଃକରଣ ଦେବତା) ହୃଦୟରୂପଦେବତା ଯେ ପୁଷ୍ପକୁ ଭୋଗ କରେ । ୯ । (ଅତମତ୍ତେ) ଅତ ଉନ୍ମତ୍ତ ହୋଇ ମନରୂପକ (ଭୃଙ୍ଗ) ଭଅଁର ମଧୁପାନ କରୁଛ । (ଦ୍ୱିଜଦ୍ୱିଜେ) ଦନ୍ତରୂପ ପକ୍ଷୀମାନେ (ରସରଙ୍ଗେ) କ୍ରୀଡ଼ାକୌତୁକରେ ଥାନ୍ତି । ୧୦ । (ଅର୍କୋଦୟୁ) ସୂର୍ଯ୍ୟୋଦୟ କାଳରୁ ( ସକାଳୁ ) ପୁନର୍ବାର ସକାଳ-ଯାଏ । ଅହୋସ୍ୱନ—ଦିନସାତ । ନେତ୍ର—ଆଖି । କ୍ଷଣମାତ୍ର ନୋହେ—ପଲକ ପୁଣ୍ଡା ପଡ଼େ ନାହିଁ ।୧୧। ଅଶନହିଁ—ଭୋଜନ ମଧ୍ୟ । ଅନ୍ୟ ବିଷୟକୁ'ଏ ବିଷ'ମନ ଏହି ପ୍ରକାର ଘେନେ । ୧୨ । ଅପର୍ଣ୍ଣାର—ପାର୍ବତୀର । ମନୋରଥ—ଅଭିଳାଷ । ଅମରାଳଙ୍କ—ଦେବତାମାନଙ୍କର । ୧୩ । ଅସୁରେଶ—ଅସୁର ରାଜା ତାରକାସୁର । ୧୪। ଅଷ୍ଟ ଆଖି—ବ୍ରହ୍ମା । ଅଦ୍ରି-ନନ୍ଦିନୀ—ପାର୍ବତୀ । ୧୫ । ଅବନୀର—ପୃଥିବୀର । ପୂର୍ବରୁ ଦେବତାମାନେ ତାରକାସୁରଦ୍ୱାରା ପୀଡ଼ିତ ହୋଇ ନିସ୍ତେଜ ହୋଇଥିଲେ । ତାହାର ବିନାଶକ କାର୍ତ୍ତିକେୟ ଜନ୍ମହେବାର ସମ୍ଭାବନା ଦେଖି ସେମାନେ ଆନନ୍ଦିତ ହେଲେ ।

ଅତି ଉଦ୍‌ବେଗ ନୋହିଲେ ସାଧୁଜନେ
ଅହିଗ୍ରାଜ ମହୀ ବହେ ଅବମନେ । ୧୭ ।
ଅମ୍ବି ଅମ୍ବି ଋଷି ମନ ହେଲା ଥୟେ
ଅବକାଳଲେ ବିଷୟ୍ୟ ବସି ଲୟେ । ୧୮ ।
ଅତି ଅଭେଦ୍ୟ ତାରକାସୁର-ଗୃହେ
ଅନ୍ତକର ଅପାଙ୍ଗ-ପତନ ହୋଏ । ୧୯ ।
ଅଙ୍ଗନାର ଦକ୍ଷିଣ ନେତ୍ର ତା ସ୍ଫୁରେ
ଅତୁଲହିଁ ତା କରକୁ ହେଲା ଭାର । ୨୦ ।
ଅଷ୍ଟ ଦିଗପାଳେ କଷ୍ଟ ଯିବ ଭାଳି
ଅସୁରଙ୍କ ଆସ୍ୟ ପଡିଗଲା କାଳି । ୨୧ ।
ଅଥ ଦଶମ ମାସ ସମ୍ପୂର୍ଣ୍ଣ ହେଲା
ଅଦ୍ରି-କୁମାରୀ କୁମାର ଜନ୍ମ ହେଲା । ୨୨ ।
ଅନୁସରି ବୃହସ୍ପତି ପୂର୍ବେଁ ଥିଲେ
ଅବ୍ଦ ମାସ ଦିନ ଲଗ୍ନେ କୋଷ୍ଠୀ କଲେ । ୨୩ ।
ଅତି ବେଗେ ହରଙ୍କୁ କହନ୍ତି ଯାଇ
ଅବା କେ ପାରିବ ତାଙ୍କ ସୁଖ କହି । ୨୪ ।
ଅୟେ ଅରକ୍ଷରକ୍ଷଣ ମୋକ୍ଷଦାତା
ଅନ୍ତ କର ଭଞ୍ଜରାଜ-ଭବ-ଚିନ୍ତା । ୨୫ ।

---

୧୭ । ଅବମନେ—ଦୁଃଖିତ ନ ହୋଇ । ଅହିରାଜ—ବାସୁକି । ୧୯ । ଅନ୍ତକର—ଯମର । ଅପାଙ୍ଗ—ଆଡ଼ଦୃଷ୍ଟି । (ତା ଅଙ୍ଗନାର) ତା ସ୍ତ୍ରୀର ଦକ୍ଷିଣ ନେତ୍ର ତେଇଁଲା । ସ୍ତ୍ରୀମାନଙ୍କର ଡାହାଣ ଅଙ୍ଗ ଅପ୍ରଶସ୍ତ । ୨୦ । ଅତୁଲ—ଖଡ଼୍ଗ । ୨୧ । ଆସ୍ୟ—ମୁହଁ । ୨୩ । ଅବ୍ଦ—ବର୍ଷ । ୨୫ । ଭବଚିନ୍ତା—ପୁନର୍ଜନ୍ମବିଷୟକ ଚିନ୍ତା ।]



# ଷଟ୍‌ତ୍ରିଂଶ ଛାନ୍ଦ

—୧—

ଅନ୍ଧକରିପୁ-ବପୁ ଉତ୍‌ଫୁଲ୍ଲେ ଶୋଭି
ଅଧର ସୁନ୍ଦର ହାସେ ଅଧିକ ମୁଖ ବିକାଶେ
ଶରଦ-ସମ୍ପୂର୍ଣ୍ଣ-ଶଶିପ୍ରଭି ସେ । ଘୋଷା ।
ଅସିତକଣ୍ଠ-କୁମାର ଜାତ ଶୁଣି ତୋଷଭର
ଶତ୍ରୁ ପ୍ରମୁଦିତ ସୁଖଭରେ
ଅନେକ ଦୀନ ବ୍ରାହ୍ମଣେ କନକ ରତ୍ନ ଭୂଷଣେ
ଦାନ କଲେ ଅତି ତତପରେ ସେ । ୧ ।
ଅଯୁତ ଅଯୁତ ପଟ୍ଟ— ଅମ୍ବର ରଜକ ଭୁଟ
ଲୁଟାଇ ଭଣ୍ଡାରୁ ଦେଲେ ଭରି
ଅନ୍ନଦାନ ଜଳସତ୍ର ବିପୁଳ-ଗୃହ ପବିତ୍ର
ଦ୍ୱିଜେ ଦେଲେ ଶତ ଶତ କରି ସେ । ୨ ।
ଅଇରାବତ ସମାନ ଗଜମାନ ଦେଲେ ଦାନ
ବନ୍ଦୀ ଗୁଣିଗଣ ଗଣକରେ
ଅବନୀ-ଖଗ ଅନେକ ଦେଲେ ବିପ୍ରେ ମହାବାକ୍ୟ
କରି ଦେଶକାଳପାତ୍ର-ବରେ ସେ । ୩ ।

---

ଷଟ୍‌ତ୍ରିଂଶ ଛାନ୍ଦ

୧ । ଶରଦ········ପ୍ରଭି—ଶରତ୍‌କାଳୀନ ପୂର୍ଣ୍ଣିମାଚନ୍ଦ୍ରର କାନ୍ତି ପରି କାନ୍ତିବିଶିଷ୍ଟ । ଅସିତକଣ୍ଠ—ମହାଦେବ । ପଟ୍ଟଅମ୍ବର—ପାଟଲୁଗା । ରଜକ ଭୁଟ—ଧୋବା ଭୁଟ । ଜଳସତ୍ର—ଜଳଛତ୍ର । ବିପୁଳ ଗୃହ—ନୂତନ ଗୃହ କରି ତାହାକୁ ଗୃହସ୍ଥାଳୀର ଯାବତୀୟ ଉପକରଣରେ ପୂର୍ଣ୍ଣ କରି ଦାନ କରାଯାଏ । ବନ୍ଦୀ—ଭାଟ । ଗୁଣିଗଣ—ପଣ୍ଡିତସମୂହ । ଗଣକ—ଜ୍ୟୋତିଷ । ଅବନୀଖଗ—ଭୂମି ।

ଅଣାଇ ଦୂତଙ୍କୁ ଦୂତ— ଦିଗେ ପେଷିଲେ ଶଘ୍ର
ବୈକୁଣ୍ଠ-ଭୁବନେ ବ୍ରହ୍ମବାସେ
ଅମର-ଯକ୍ଷ କିନ୍ନର ଗନ୍ଧର୍ବ ଅସୁର ନର
ନାଗ ଶିଷ୍ଟ ମୁନି ଋଷି ପାଶେ ସେ । ୪।
ଅମୂଲ୍ୟ-ରତନ-ବାସ— ମାନଙ୍କେ ମଣ୍ଡାଇ ବାସ
ଗୀତବାଦ୍ୟ ନୃତ୍ୟ କୁତୂହଳେ
ଅଭୀଷ୍ଟ ପୂର୍ଣ୍ଣ ହୋଇଲା ନୃପ ବଳଭଦ୍ର ଭଲା
ପ୍ରଭୁଙ୍କୁ ଦର୍ଶନ ଏହୁ ହାଲେ ସେ । ୫ ।

—୨—

ଅନୁଜ୍ଞା ପାଇ ଈଶ୍ୱର-ଦୂତ
ଅନେକ ଭୁବନେ କଲେ ସଂଗତ । ଘୋଷା ।

ଅନନ୍ତ-ପୁରକୁ ଚଳିଲେ କେହି । ଅନନ୍ତ-ବାସେ କେ ସମ୍ବାଦ ଦେଇ । ୧
ଅମ୍ବୁଜାସନଙ୍କୁ କହି ଖବର । ଅମୂଲ୍ୟ ଧନ ପାଇଲା କେ ଦୂତ । ୨ ।
ଅମରବରେ କେ ଜଣାଇଁ ଧାଇଁ । ଅମର ରତନ ନେଲା ବଧାଇ । ୩ ।
ଅନେକ ଦେବ ଅସୁର ଦୂତଗଣେ । ଅଇଲେ ଦଶଦିଶେ ଦୂତଗଣେ । ୪ ।
ଅଙ୍ଗବଙ୍ଗୋତ୍କଳ କଳିଙ୍ଗ ଦେଶେ । ଅନୁଆନେ ବାର୍ତ୍ତା କଲେ ହରଷେ ।
ଅବନୀଧବ ବଳଭଦ୍ର ଭୂପେ । ଅଚିରେ ବାହାରିଲେ ସବେ ତୋଷେ ।୬।

— ୩ —

ଅନ୍ତର୍ଯ୍ୟାମୀ ତ୍ରିପୁରହର
ଅପାଙ୍ଗ ରଙ୍ଗେ ଢାଳନ୍ତୁ କୃପା ପୂର୍ଣ୍ଣ କର । ଘୋଷା ।
ଅମରପାଳ ଶତ୍ରୁଧିଜାଳ କମଳବାଳ ଆସିଲେ

---

ଦୂତ—ଦୂତ । ବୈକୁଣ୍ଠ ଭୁବନେ—ବିଷ୍ଣୁ ପୁରକୁ । ବ୍ରହ୍ମ ବାସେ—ବ୍ରହ୍ମଲୋକକୁ । ଅମୂଲ୍ୟ ରତନ ବାସ—ବହୁମୂଲ୍ୟ ରତ୍ନଖଚିତ ଲୁଗା । ମାନଙ୍କେ—ମାନଙ୍କଦ୍ୱାରା । ଅଭୀଷ୍ଟ—ବାଞ୍ଛା ।୨। ଅନୁଜ୍ଞା—ଆଦେଶ । ସଙ୍ଗତ କଲେ—ଗମନ କଲେ । ଅନନ୍ତ-ପୁରକୁ—ବିଷ୍ଣୁପୁରକୁ । ଅନନ୍ତ-ବାସେ—ପାତାଳ ଲୋକରେ ।ଅମ୍ବୁଜାସନ—ବ୍ରହ୍ମାଙ୍କୁ । ଅମରବରେ—ଇନ୍ଦ୍ରଙ୍କୁ । ବଧାଇ—ପାରିତୋଷିକ । ୩ । ଅନ୍ତର୍ଯ୍ୟାମୀ—ସମସ୍ତଙ୍କ ହୃଦୟରେ ଆତ୍ମାରୂପରେ ସ୍ଥିତ । ତ୍ରିପୁରହର—ଶିବ । ଅମରପାଳ—ଇନ୍ଦ୍ର ।

ଅହ୍ନବିଳାସୀ ଅମୃତସ୍ୱଶି ଇସ୍ତ୍ର ଇସ୍ତ୍ର ଶିବ ଭାଷିଲେ
ଅବଧିବାସୀ ଧନନିବାସୀ ପ୍ରାଣନାଶୀ ଦରଶୁଆ (?)
ଅନିଳ ଅନଳ ଦେବ ନମି ହେଲେ ଠିଆ । ୧ ।
ଅତ୍ରି କୁମ୍ଭସୁତ ବଷ୍ଟବାଦୀ (ବଶ୍ରବାଦି) [?] ସାଦରେ
ଅଙ୍ଗିରା ପୁଲସ୍ତ୍ୟ ମଣ୍ଡିଲେ ମୁଣ୍ଡ ସୁପାଦରେ ।
ଅର୍ଯ୍ୟମା ସେ ବାମଦେବ ଲୋମପାଦ କଶ୍ୟପେ
ଅଇଲେ ନାରଦ ବୀଣାବାଦ୍ୟ-ଗୀତାଲାପେ । ୨ ।
ଅସୁତସଂଖ୍ୟ ଯକ୍ଷରକ୍ଷକିନ୍ନରାଦି ଋକ୍ଷସେ
ଅଖିଳ-ଭୂର ଅସୁର ସାର ବୀରବାର-ମୁଖ୍ୟ ସେ ।
ଅବନୀନାଥ ଯୋଡ଼ି ହାଥ [ତ] ମହୀରେ ମାଥ ମାଇଲେ
ଅନୁସରି ଭକ୍ତିରାଜ ଦଣ୍ଡବତ ହେଲେ । ୩ ।

ଶ୍ଳୋକ

[୧] ବ୍ରହ୍ମସ୍ତୁତଃ

ଅକାଳମୃତବାରକୋ ରଜତ-ଶୈଳ-ସଞ୍ଚାରକଃ
ଅମର୍ତ୍ତ୍ୟଭୟହାରକଃ ପ୍ରବଳଦୈତ୍ୟସଂହାରକଃ ।
ଅଚିନ୍ତ୍ୟଗୁଣଧାରକଃ ସ୍ୱଜନକୀର୍ତ୍ତିବିସ୍ତାରକଃ
ଅରକ୍ଷଜନତାରକଃ ସ୍ଫୁରତୁ ମେ ସ୍ମରସ୍ମାରକଃ । *

ପୃଥ୍ୱୀବୃତ୍ତ,

---

ବରୂଥଜାଲ—ଦେବଗଣ । କମଳବାଳ—ବ୍ରହ୍ମା । ଅହ୍ନବିଳାସୀ—ସୂର୍ଯ୍ୟ । ଅମୃତ-ସ୍ୱଶି—ଚନ୍ଦ୍ର । ଅବ୍ଧିବାସୀ—ବରୁଣ । ଧନନିବାସୀ— ( ଧନଦ ) କୁବେର । ପ୍ରାଣନାଶୀ—(ଅନ୍ତକ) ଯମ । ଅନିଳ—ପବନ । ଅନଳ—ଅଗ୍ନି । ନମି—ନମସ୍କାର କରି । କୁମ୍ଭସୁତ—ଅଗସ୍ତି । ସୁପାଦରେ—ମହାଦେବଙ୍କ ଶ୍ରେଷ୍ଠପାଦରେ । ଅସୁରସାର—ଅସୁରଶ୍ରେଷ୍ଠ । ବୀରବାରମୁଖ୍ୟ—ବୀରସମୂହରେ ପ୍ରଧାନ ।

ବ୍ରହ୍ମସ୍ତୁତଃ—ଅକାଳେନ । ଅକାଳମୃତେଃ—ଅସମୟ ମରଣସ୍ୟ ବାରକଃ—ନିବର୍ତ୍ତକଃ । ରଜତମୟେ—ରୌପ୍ୟମୟେ ଶୈଳେ—କୈଳାସେ ସଞ୍ଚରତି—ଇତି ଚରତୈର୍ବୃଣ୍ ବିହରତି ଯଃ ତାଦୃଶଃ । ଅମର୍ତ୍ତ୍ୟାନାଂ—ଦେବାନାଂ ଭୟଂ ହାରୟତି—ବିନାଶୟତି ତାଦୃଶଃ । ପ୍ରବଳାନାଂ—ପ୍ରକୃଷ୍ଟବଳବତାଂ ଦୈତ୍ୟାନାଂ ସଂହାରକଃ—ବିନାଶକଃ । ଅଚିନ୍ତ୍ୟାନାଂ—ଚିନ୍ତାତୀତାନାଂ ଗୁଣାନାଂ ଧାରକଃ—ଧାରଣକର୍ତ୍ତା । ସ୍ୱଜନାନାଂ—ସ୍ୱାଶ୍ରିତାନାଂ ଭକ୍ତାନାଂ କୀର୍ତ୍ତେଃ—ଯଶସଃ ବିସ୍ତାରକଃ—ପ୍ରତାନକଃ । ଅରକ୍ଷାଣାଂ—ଅଶରଣାନାଂ ଜନାନାଂ—ନସଣାଂ ତାରକଃ—ଉଦ୍ଧାରକର୍ତ୍ତା । ସ୍ମରଂ—କନ୍ଦର୍ପଂ ସ୍ମାରୟତି—ସ୍ମୃତି-ଶ୍ରିତ ସ୍ମାରକଃ (ଖ)

## [୨] ଇନ୍ଦ୍ରସ୍ତୁତଃ

**ଅନ୍ଧକାସୁର୍-ତମୋଽରୁଣ ପ୍ରଭୋ !**
**ଅନ୍ତକାର୍ତ୍ତି-ନବମାରଦାନଲ ।**
**ଅଙ୍କ-ଦୁଃଖିତଜନାମରଦ୍ରୁମ**
**ଅଦ୍ୟ ମେ କୁରୁ ଶିବଂ ସଦାଶିବ !**

**ରଥୋଦ୍ଧତା**

---

ବିଷୟୀଭୂତଂ କରୋତି ( ବିନାଶୟତି ) ଯଃ ତାଦୃଶଃ ଶିବଃ ମେ—ମମ ସମ୍ବନ୍ଧେ ସ୍ଫୁରତୁ—ବିଳସତୁ ।

ଭାଷା ଃ—ଯେ ଅକାଳ ମୃତ୍ୟୁକୁ ଦୂର କରନ୍ତି, ଯେ ରୌପ୍ୟମୟ କୈଳାସ ପର୍ବତରେ ବିହାର କରନ୍ତି, ଯେ ଦେବଗଣଙ୍କର ( ଅସୁରାଦିଜନିତ ) ଭୟ ବିନାଶ କରନ୍ତି, ଯେ ବଳବାନ୍ ଦୈତ୍ୟମାନଙ୍କୁ ବିନାଶ କରନ୍ତି, ଅଭିବନୀୟ ଗୁଣସମୂହକୁ ଯେ ଧାରଣ କରିଅଛନ୍ତି, ଯେ ଆଶ୍ରିତଗଣଙ୍କର କୀର୍ତ୍ତିକୁ ବର୍ଦ୍ଧନ କରନ୍ତି, ଯେ ଅଶରଣ ବ୍ୟକ୍ତିର ଉଦ୍ଧାରକ ଓ ଯେ ସ୍ମରକୁ ( ବିନାଶ କରି ) କେବଳ ସ୍ମୃତିରେ ଅବସ୍ଥାପିତ କରିଅଛନ୍ତି, ସେହି ଶିବ ମୋ (ହୃଦୟରେ) ସ୍ଫୁରିତ ହୁଅନ୍ତୁ ।

ଇନ୍ଦ୍ରସ୍ତୁତଃ—ଅନ୍ଧକନାମା ଅସୁର ଏବ ତମଃ—ଅନ୍ଧକାରଃ ତସ୍ୟ ଅରୁଣଃ—ସୂର୍ଯ୍ୟଃ (ନିରାକରଣାତ୍ ସୂର୍ଯ୍ୟରୂପଃ, ତତ୍ସମ୍ବୋଧନଂ) । ଅନ୍ତକକୃତା— ଯମକୃତା ଯା ଅର୍ତ୍ତିଃ—ପୀଡ଼ା ସା ଏବ ନବମାରଦଃ—ନୂତନ ମେଘଃ , ତସ୍ୟ ଅନଲଃ(ଅପସାରଣାତ୍ ବାୟୁସ୍ୱରୂପଃ ତତ୍ସମ୍ବୁଦ୍ଧୌ)। ଅଙ୍କାଶ୍ଚ—ଅବଦ୍ୟାଂଶ୍ଚ ଦୁଃଖିତାଶ୍ଚ ଯେ ଜନାଃ—ନରାସ୍ତେଷାଂ ଅମରଦ୍ରୁମଃ—କଳ୍ପଦ୍ରୁମଃ ( ବାଞ୍ଛାପୂରକତ୍ୱାତ୍ କଳ୍ପଦ୍ରୁମସ୍ୱରୂପଃ ତତ୍ସମ୍ବୁଦ୍ଧୌ ) । ହେ ସଦାଶିବ ! ଅଦ୍ୟ ମେ—ମମ ଶିବଂ— ମଙ୍ଗଳଂ କୁରୁ ।

ଭାଷା ଃ—ଅନ୍ଧକାସୁରରୂପ ଅନ୍ଧକାର ବିନାଶନବିଷୟରେ ସୂର୍ଯ୍ୟସ୍ୱରୂପ, ଯମପୀଡାରୂପ ନୂତନ ମେଘ ଅପସାରଣବିଷୟରେ ବାୟୁସ୍ୱରୂପ, ଅଙ୍କ ଓ ଦୁଃଖିତ ଜନଙ୍କ ବାଞ୍ଛାପୂରଣବିଷୟରେ କଳ୍ପଦ୍ରୁମସ୍ୱରୂପ ହେ ସଦାଶିବ ! ମୋର ମଙ୍ଗଳ ବିଧାନ କର ।

[୩] ଦେବଗଣ ସ୍ତୁତଃ

ଅଙ୍କହୀନ-ଲୁହିନାଂଶୁମଣ୍ଡନ !
ଅବ୍‌ଜ-ନନ୍ଦିତ-ପଦାଘଖଣ୍ଡନ !
ଅଚ୍ୟୁତାଦ୍ୟମରବୃନ୍ଦବନ୍ଦନ !
ଅଦ୍ୟ ନୋ ହ୍ୟବ ଶିବାଙ୍ଗଚନ୍ଦନ !

ରଥୋଦ୍ଧତା

[୪] ପରମହଂସ ସ୍ତୁତଃ

ଅଜ୍ଞାନାର୍ଣ୍ଣବମନ୍ଥନାଚଳ ଖଳବ୍ୟାଳୌଘତାର୍କ୍ଷ୍ୟୋପମ !
ଅନ୍ୟାଦେଃ ପରିପାଳନପ୍ରମୁଦିତ ସ୍ୱର୍ଗାପବର୍ଗପ୍ରଦ !
ଅନ୍ୟାଶା-ରହିତେ କୁକର୍ମସହିତେ ତାପତ୍ରୟାର୍ତ୍ତେ ମୟି
ଅବ୍‌ଜାର୍କାନଲ-ଚନ୍ଦ-ନେତ୍ର-ମହିମନ୍ ପ୍ରାକ୍ ସାବଧାନୋଭବ ।

ଶାର୍ଦ୍ଦୂଳ ବିକ୍ରୀଡ଼ିତ

---

ଦେବଗଣ ସ୍ତୁତଃ—ଅଙ୍କେତି । ଅଙ୍କେନ—କଳଙ୍କେନ ହୀନଃ—ରହିତଃ ଯଃ ଲୁହିନାଂଶୁଃ—ଚନ୍ଦ୍ରଃ ସ ଏବ ମଣ୍ଡନଂ ଯସ୍ୟ ତତ୍ସମ୍ବୋଧନେ । ଅବ୍‌ଜଂ—ପଦ୍ମଂ ନନ୍ଦିତଂ ଯାଭ୍ୟାଂ ତାଦୃଶୌ ପଦୌ—ଚରଣୌ ଯସ୍ୟ ତତ୍ସମ୍ବୋଧନେ ପଦଶବ୍ଦୋଽ-ଦାକାରାନ୍ତଃ । ଅଘାନି—ପାପାନି ଖଣ୍ଡୟତି—ଛେଦୟତି ଇତି ତାଦୃଶଃ ତତ୍‌ସମ୍ବୋ-ଧନେ । ଅଚ୍ୟୁତଃ—ବିଷ୍ଣୁଃ ସ ଏବ ଆଦ—ପ୍ରଥମଃ ଯେଷାଂ ତେଷାଂ ଅମରାଣାଂ—ଦେବାନାଂ ବୃନ୍ଦଂ—ସମୂହଃ ତେନ ବନ୍ଦନଂ ଯସ୍ୟ ତତ୍ସମ୍ବୋଧନେ । ଶିବାୟାଃ—ପାର୍ବତ୍ୟାଃ ଅଙ୍ଗସ୍ୟ ଚନ୍ଦନଂ ( ତାପହରଣାତ୍ ) ତତ୍‌ସ୍ୱରୂପଃ ତତ୍ସମ୍ବୋଧନେ । ନଃ—ଅସ୍ମାନ୍ ଅଦ୍ୟ ହ୍ର ଇତି ନିଷ୍ଟୟେ ଅବ—ରକ୍ଷ ।

ଭାଷା—ହେ ନିଷ୍କଳଙ୍କ-ଚନ୍ଦ୍ରମଣ୍ଡିତ, ହେ ପଦ୍ମପାଦ, ହେ ପାପନାଶନ, ହେ ବିଷ୍ଣୁ ପ୍ରଭୃତି ଦେବଗଣବନ୍ଦିତ, ହେ ଶିବାଙ୍କର ଅଙ୍ଗ-ଚନ୍ଦନ, ଅଦ୍ୟ ଆମ୍ଭ-ମାନଙ୍କୁ ରକ୍ଷାକର ।

ପରମହଂସ-ସ୍ତୁତଃ—ଅଜ୍ଞାନଂ ଏବ ଅର୍ଣ୍ଣବଃ ତସ୍ୟ ମନ୍ଥନାଚଳଃ—ମେରୁଃ ତତ୍ସ୍ୱରୂପଃ ତସ୍ୟ ସମ୍ବୋଧନେ । ଖଳାଃ—ଅସଜ୍ଜନାଃ ଏବ ବ୍ୟାଳାଃ—ସର୍ପାଃ ତେଷାଂ ଓଘଃ ସମୂହଃ ତେଷୁ ତାର୍କ୍ଷ୍ୟୋପମଃ—ଗରୁଡ଼ ସଦୃଶଃ (ବିନାଶକଃ)। ଅନ୍ୟାଦେଃ—ଋଷିବର୍ଗସ୍ୟ ପରିପାଳନେନ—ପରିରକ୍ଷଣେନ ପ୍ରମୁଦିତଃ ଆନନ୍ଦିତଃ (ତତ୍‌ସମ୍ବୋ-ଧନେ)। ସ୍ୱର୍ଗଶ୍ଚ ଅପବର୍ଗଃ—ମୋକ୍ଷଃ ତୌ ପ୍ରଦଦାତୀତି, ତତ୍ସମ୍ବୋଧନେ । ଅବ୍‌ଜଃ—ଚନ୍ଦ୍ରଃ ଅର୍କଃ—ସୂର୍ଯ୍ୟଃ ଅନଲଃ—ଅଗ୍ନିଶ୍ଚ ତୈଃ ଚନ୍ଦଃ—ଆହ୍ଲାଦଜନକଃ ନେତ୍ରାଣାଂ—ଲୋଚନାନାଂ ମହିମା—ମହତ୍ତ୍ୱଂ ଯସ୍ୟ ତତ୍ସମ୍ବୋଧନେ । ଅନ୍ୟା ଆଶା ତୟା ରହିତେ—ସ୍ୱାନେ ତଥା କୁତ୍ସିତଂ କର୍ମ ତେନ ସହିତେ—ଯୁକ୍ତେ ତଥା ତାପାନାଂ—ଆଧ୍ୟାତ୍ମିକାଧି-ଭୌତିକାଧିଦୈବିକରୂପାଣାଂ ତ୍ରୟଂ ତେନ ଆର୍ତ୍ତେ—ପୀଡିତେ ମୟି—ମମ ବିଷୟେ ପ୍ରାକ୍—ସର୍ବାଦୌ ସାବଧାନଃ—ସତର୍କୋଭବ ।

## [୫] ନାରଦ-ସ୍ତୁତିଃ

ଅର୍ଦ୍ଧାଙ୍ଗେ ତବ ମାଧବୋ ରବିସୁଧାରଶ୍ମ୍ୟଗ୍ନୟଶ୍ଚାକ୍ଷିଷୁ
ଅଙ୍କେ ହୈମବତୀ ଗଳେ ତୁ ଗରଳଂ ମୂର୍ଦ୍ଧ୍ନି ସ୍ଥିତା ସ୍ୱର୍ଣ୍ଣଦୀ ।
ଅଙ୍ଘ୍ରୌ ଦେବଗଣାଶ୍ଚ ପନ୍ନଗଚୟଃ ସର୍ବାଙ୍ଗଦେଶେଷ୍ୱପି
ଅସ୍ଥାନଂ ହର ରକ୍ଷ ମାମଶରଣଂ ଶୂନ୍ୟେଽମଳେ ଚେତସି ।

ଶାର୍ଦ୍ଦୂଳବିକ୍ରୀଡିତ

---

ଭାଷା—ହେ ଅଜ୍ଞାନସମୁଦ୍ରର ମନ୍ଦାଚଳ , ଖଳ-ସର୍ପସମୂହଙ୍କ ପକ୍ଷରେ ଗରୁଡ଼ ସଦୃଶ, ଅତି ପ୍ରଶସ୍ତ ଋଷିମାନଙ୍କ ପଦପାଳନରେ ଏକାନ୍ତ ଆନନ୍ଦିତ,ହେ ସ୍ୱର୍ଗ ଓ ମୁକ୍ତିର ପ୍ରଦାନକାରି, ହେ ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନିଙ୍କଦ୍ୱାରା ବର୍ଦ୍ଧିତ ନେତ୍ର-ମହିମାକୁ ଧାରଣ କରିଥିବା ଶିବ ! ମୁଁ ଅନ୍ୟାଶ୍ରାରହିତ ଓ କୁକର୍ମଜନିତ ଆଧ୍ୟାତ୍ମିକାଦି ବିପତ୍ତିଗ୍ରସ୍ତ ହୋଇଛି, ମୋ ବିଷୟରେ ସର୍ବାଗ୍ରେ ସାବଧାନ ହେଉନ୍ତୁ ।

ନାରଦ ସ୍ତୁତିଃ—ହେ ହର ! ସର୍ବପାପହାରିନ୍ ! ତବ ଅର୍ଦ୍ଧାଙ୍ଗେ—ଅଙ୍ଗସ୍ୟ ଅର୍ଦ୍ଧାଂଶେ, ମାଧବଃ—ବିଷ୍ଣୁଃ (ହରିହରରୂପା ମୂର୍ତ୍ତିରିହ ଲକ୍ଷ୍ୟତେ) ,ରବିଃ—ସୂର୍ଯ୍ୟଶ୍ଚ ସୁଧାରଶ୍ମି—ଚନ୍ଦ୍ରଶ୍ଚ ଅଗ୍ନିଶ୍ଚ ତେ ତବ ଅକ୍ଷିଷୁ ଲୋଚନେଷୁ ବର୍ତ୍ତନ୍ତେ ଲୋଚନରୂପେଣ ବର୍ତ୍ତନ୍ତେ ଇତ୍ୟର୍ଥଃ । ଅଙ୍କେ—କ୍ରୋଡେ ହୈମବତୀ—ହିମବତଃ କନ୍ୟା, ଗଳେ ଗରଳଂ—ବିଷଂ, ମୂର୍ଦ୍ଧ୍ନି—ମସ୍ତକେ ସ୍ୱର୍ଣ୍ଣଦୀ—ଗଙ୍ଗା ସ୍ଥିତା । ଅଙ୍ଘ୍ରୌ—ଚରଣେ ଦେବଗଣାଶ୍ଚ ବର୍ତ୍ତନ୍ତେ। ପନ୍ନଗଚୟଃ—ସର୍ପସମୂହଃ ସର୍ବାଙ୍ଗଦେଶେଷୁ—ସର୍ବାବୟବେଷୁ ଭୂଷଣାଦିରୂପେଣ ବର୍ତ୍ତନ୍ତେ । ଅସ୍ଥାନଂ—ସ୍ଥାନହୀନଂ ଅଶରଣଂ—ଅରକ୍ଷକଂ ମାଂ ଶୂନ୍ୟେ ଅନ୍ୟୈରଧିକୃତେ ଅମଳେ—ନିର୍ମଳେ ଚେତସି—ମନସି ରକ୍ଷ—ସ୍ଥାପୟ । ଅନ୍ୟୈସ୍ତେ ସର୍ବଂ ଶରୀରଂ ପ୍ରାଗଧିକୃତଂ ସର୍ପବିଷାଦିଭିଃ ଖଳୈରପି ପରିବ୍ୟାପ୍ତଂ ଚ, ଅତଃ ସ୍ଥାନହୀନଂ ଅନାଥଂ ମାଂ ଅବଶ୍ୟମେବ ଅମଳେ ମନସି ରକ୍ଷିଷ୍ୟସି ଇତି ଭାବଃ ।

ଭାଷା—ହେ ହର ! ଆପଣଙ୍କ ଅଙ୍ଗର ଅର୍ଦ୍ଧଭାଗ ବିଷ୍ଣୁଙ୍କଦ୍ୱାରା ଅଧିକୃତ । ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ଚକ୍ଷୁ ଅଧିକାର କରିଅଛନ୍ତି । ଅଙ୍କରେ ପାର୍ବତୀ ବିଦ୍ୟମାନା । ଗଳପ୍ରଦେଶ ଗରଳର ବାସସ୍ଥାନ, ମସ୍ତକରେ ଗଙ୍ଗା ଅବସ୍ଥିତା, ସର୍ପମାନେ ସର୍ବାଙ୍ଗରେ ଭୂଷଣରୂପେ ବିରାଜିତ, ଦେବଗଣ ପାଦମୂଳକୁ ଆଶ୍ରୟ କରିଅଛନ୍ତି । ମୁଁ ଅନାଥ, ସ୍ଥାନହୀନ; ଅତଏବ ମୋତେ (ଅନ୍ୟ ଅବୟବରେ ସ୍ଥାନ ନ ଥିଲେ ସୁଦ୍ଧା) ଶୂନ୍ୟ ଓ ନିର୍ମଳ ହୃଦୟରେ ରକ୍ଷା କରନ୍ତୁ (ସ୍ଥାନ ଦିଅନ୍ତୁ) ।

[୭] ବ୍ୟାସସ୍ତୁତଃ

ଅଯ୍ୱେ ବଭ୍ୱେ ! ଶିବାପତେ !
ଅନଲ୍ପକଲ୍ମଷଂ ମମ
ଅଶେଷିତାନୁକମ୍ପୟା
ଅରକ୍ଷପକ୍ଷ ! ନଶ୍ୟତାଂ ।
ପ୍ରମାଣିକା ବା ଜଗସ୍ୱରୂପିଣୀ ।

[୭] ଶୁକଦେବ ସ୍ତୁତଃ

ଅବ୍‌ଜକଳା-ଛବି-ମଣ୍ଡିତ-ମସ୍ତ !
ଅନ୍ତକଦଣ୍ଡବିଖଣ୍ଡନଶସ୍ତ !
ଅଙ୍ଗବିହୀନ-ବିନାଶନସୁସ୍ଥ !
ଅଦ୍ୟ ଦୟାଂ କୁରୁ ଲୋକପ୍ରଶସ୍ତ !
ଦୋଧକ ।

---

ବ୍ୟାସ ସ୍ତୁତଃ—ଅଯ୍ୱେ ବଭ୍ୱେ ! ସର୍ବବ୍ୟାପିନ୍ ଶିବାପତେ—ପାର୍ବତୀପତେ ! ଅରକ୍ଷପକ୍ଷ—ଅଶରଣାନାଂ ସହାୟ ! ଶିବ ! ଅଶେଷିତାନୁକମ୍ପୟା—ଅପରିମିତୟା କରୁଣୟା ମମ ଅନଲ୍ପକଲ୍ମଷଂ—ବହୁପାପଂ ନଶ୍ୟତାଂ ତ୍ୱୟା ଇତି ଶେଷଃ ।

ଭାଷା—ହେ ସର୍ବବ୍ୟାପିନ୍ ଶିବାପତେ ! ଅଶରଣଶରଣ ଶିବ ! ଅସୀମ-କରୁଣାପୂର୍ବକ ମୋର ବହୁପାପ ବିନାଶ କରନ୍ତୁ ।

ଶୁକଦେବ ସ୍ତୁତଃ—ଅବ୍‌ଜସ୍ୟ ଚନ୍ଦ୍ରସ୍ୟ କଳା ଷୋଡ଼ଶଭାଗୈକଭାଗଃ ତସ୍ୟାଃ ଛବିଃ କାନ୍ତିଃ ତୟା ମଣ୍ଡିତଂ ମସ୍ତଂ—ମସ୍ତକଂ ଯସ୍ୟ ତତ୍ସମ୍ବୋଧନେ । ଅନ୍ତକସ୍ୟ—ଯମସ୍ୟ ଦଣ୍ଡଃ—ପୀଡ଼ା ତସ୍ୟ ବିଖଣ୍ଡନେ—ବିନାଶନେ ଶସ୍ତଃ—ପ୍ରଶଂସିତଃ, ଦକ୍ଷୋ ବା ତତ୍ସମ୍ବୋଧନେ । ଅଙ୍ଗବିହୀନଃ—ଅନଙ୍ଗଃ, କାମଃ ତସ୍ୟ ବିନାଶନଂ—ନାଶଃ ତେନ ସୁ ସ୍ଥଃ—ସୁଖୀ ତତ୍ସମ୍ବୋଧନେ । ଲୋକପ୍ରଶସ୍ତ—ଚତୁର୍ଦ୍ଦଶସୁ ବ୍ରହ୍ମାଣ୍ଡେଷୁ ପ୍ରଶଂସିତ ହେ ଦେବ ! ଅଦ୍ୟ ଦୟାଂ କୁରୁ ମୟି ଇତି ଶେଷଃ ।

ଭାଷା—ହେ ଚନ୍ଦ୍ରକଳାଶୋଭିତମସ୍ତକ, ହେ ଯମଦୁଃଖବିଖଣ୍ଡନଦକ୍ଷ ! ହେ କାମବିନାଶନରେ ଆନନ୍ଦିତ, ହେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଖ୍ୟାତ ଶିବ ! ମୋତେ ଦୟାକର ।

[୮] ଅଥର୍ବଋଷି ସ୍ତୁତିଃ

ଅୟେ ! ବିଶ୍ୱନାଥ ! ପ୍ରଭୋ ! ଶକ୍ତିଯୁକ୍ତ !
ଅନାଦ୍ୟନ୍ତମଧ୍ୟ ପ୍ରପଞ୍ଚାତିରିକ୍ତ !
ଅନିଷ୍ଟାନ୍ତକ ! ଶ୍ରେଷ୍ଠଭକ୍ତୈକରକ୍ତ !
ଅଶେଷାମରୌଘାଭିଷେକାଭିଷିକ୍ତ !

ଭୁଜଙ୍ଗପ୍ରୟାତ

[୯]

ଅଚିନ୍ତ୍ୟାପ୍ରମେୟାପ୍ରକାଶାପ୍ରକାର ! ଅୟେ ବିଶ୍ୱରୂପ ! ପ୍ରଚଣ୍ଡାବତାର !
ଅଧର୍ମାନୁଗପ୍ରାଣରତ୍ନୈକଚୌର ! ଅଘୌଘାକୁଳଂ ରକ୍ଷ କର୍ପୂରଗୌର !

ଭୁଜଙ୍ଗପ୍ରୟାତ

---

ଅର୍ବ ବା ଅଥର୍ବ ସ୍ତୁତିଃ—ଅୟେ ବିଶ୍ୱସ୍ୟ—ଚରାଚରସ୍ୟ ନାଥ—ପ୍ରଭୋ ! ନିଗ୍ରହାନୁଗ୍ରହସମର୍ଥ ! ଶକ୍ତ୍ୟା—ମହାଶକ୍ତ୍ୟା ଯୁକ୍ତଃ ଆଦିଶ୍ଚ ଅନ୍ତଶ୍ଚ ମଧ୍ୟଶ୍ଚ—ଆଦ୍ୟନ୍ତମଧ୍ୟାଃ ତେ ନ ସନ୍ତି ଯସ୍ୟ ତତ୍ସମ୍ବୋଧନେ । ତଥା ପ୍ରପଞ୍ଚାତ୍ ସୃଷ୍ଟିବିଷୟେଭ୍ୟଃ ଇତ୍ୟର୍ଥଃ ଅତିରିକ୍ତଃ—ଅନ୍ୟଃ ତତ୍ସମ୍ବୋଧନେ । ଅନିଷ୍ଟାନାଂ—ଅମଙ୍ଗଳାନାଂ ଅନ୍ତକଃ ନିବର୍ତ୍ତକଃ ତତ୍ସମ୍ବୋଧନେ । ଶ୍ରେଷ୍ଠା ଯେ ଭକ୍ତାଃ ତେଷୁ ରକ୍ତଃ ଅନୁରକ୍ତଃ ତତ୍ସମ୍ବୋଧନେ । ଅଶେଷାଣାଂ— ଅସଂଖ୍ୟାନାଂ ଅମରାଣାଂ—ଦେବାନାଂ ଓଘଃ—ସମୂହଃ ତସ୍ୟ ଅଭିଷେକଃ (ଭକ୍ତ୍ୟୁପହୃତସ୍ନାନୀୟଜଳଂ) ତେନ ଅଭିଷିକ୍ତଃ—ସ୍ନାତଃ ତତ୍ସମ୍ବୋଧନେ । ଅଚିନ୍ତ୍ୟ—ଚିନ୍ତାବିଷୟମତୀତ ! ଯତୋବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟମନସା ସହ ଇତିଶ୍ରୁତେଃ । ଅପ୍ରମେୟ—ପ୍ରମାଣାଦିଭିଃ ଅସାଧନୀୟ ! ଅପ୍ରକାଶ—ଅବ୍ୟକ୍ତମବସ୍ଥିତ ! ଅପ୍ରକାର—ଅବିକୃତ ! ହେ ପ୍ରଚଣ୍ଡାବତାର ତମୋ-ଗୁଣମୟତ୍ୱାତ୍ ସଂହାରକରୂପେଣ କଲାନ୍ତେ ଅବତୀର୍ଣ୍ଣ ! ଅଧର୍ମଂ ଅନୁଗଚ୍ଛନ୍ତୀତି ତେଷାଂ—ଅଧର୍ମଚରଣମିତ୍ୟର୍ଥଃ ପ୍ରାଣା ଏବ ରତ୍ନାନି ତେଷାଂ ଏକଶ୍ଚୌରଃ ପ୍ରଧାନା-ପହାରକଃ ତତ୍ସମ୍ବୋଧନେ । କର୍ପୂରଇବ ଗୌରଃ—ଧବଳବର୍ଣ୍ଣଃ ତତ୍ସମ୍ବୁଦ୍ଧୌ । ଅଘାନାଂ—ପାପାନାଂ ଓଘଃ—ପ୍ରବାହଃ ତେନ ଆକୁଳଃ—ବିପର୍ଯ୍ୟସ୍ତଃ ତାଦୃଶଂ ମାଂ ରକ୍ଷ—ପାଳୟ ।

ଭାଷା—ହେ ପ୍ରଭୋ ବିଶ୍ୱନାଥ ! ଶକ୍ତ୍ୟାଲିଙ୍ଗିତଦେହ ! ଆଦି, ଅନ୍ତ ଓ ମଧ୍ୟରହିତ ! ଅବିନାଶିନ୍, ଅନିଷ୍ଟସକଳର ଯମ ! ହେ ଶ୍ରେଷ୍ଠଭକ୍ତପ୍ରିୟ ! ଅସଂଖ୍ୟ ଦେବଗଣଙ୍କଦ୍ୱାରା ଅଭିଷିକ୍ତ ! ହେ କର୍ପୂରଗୌର ! ହେ ଅଚିନ୍ତ୍ୟ ! ଅପ୍ରମେୟ,

[୧୦] ମୁନିଗଣ ସ୍ତୁତିଃ
ଅଙ୍ଗହୀନତୁହିନାଂଶୁମଣ୍ଡନ !
ଅବ୍‌ଜନନ୍ଦିଭପଦାଘଖଣ୍ଡନ !
ଅଚ୍ୟୁତାଦ୍ୟମରବୃନ୍ଦବନ୍ଦନ !
ଅଦ୍ୟ ନଃ କୃପୟ ଷଣ୍ଢସ୍ୟନ୍ଦନ ।

ରଥୋଦ୍ଧତା

[୧୧] ସିଦ୍ଧଗଣ ସ୍ତୁତିଃ
ଅର୍ଦ୍ଧନିଶାଧବ-ମଣ୍ଡିତମସ୍ତକ ! ଖଣ୍ଡିତତାପ ! ବିଭେ ଟିପୁଘ୍ନରେ
ଅକ୍ଷୟ-ଦାନବ-ମାନବପୂଜିତ ଦୀନଜନାଘଭବାମୟହାରେ
ଅନ୍ତକଦଣ୍ଡପ୍ରଚଣ୍ଡ-ବିଖଣ୍ଡନ କୁଣ୍ଡଲିମଣ୍ଡଲକୁଣ୍ଡଲଧାରେ
ଅଦ୍ୟ ମନୋ-ମଧୁପୋହ୍ୟ ରମଙ୍କତୁ ଗୃହ୍ଣପଦେ ତବ ସାରସସାରେ ।

---

ଅବ୍ୟକ୍ତ ସ୍ୱରୂପ ! ଅବିକାରିନ୍ ! ହେ ବିଶ୍ୱରୂପରେ ପ୍ରକାଶିତ ! ପ୍ରଚଣ୍ଡାବତାର(ସଂହାରକରୂପେ କଳ୍ପାନ୍ତରେ ଅବତୀର୍ଣ୍ଣ) ! ଅଧାର୍ମିକ ଲୋକ ପ୍ରାଣହର ପ୍ରସିଦ୍ଧ ଘୋରସ୍ୱରୂପ ! ହେ କର୍ପୂର ପରି ଧବଳକାନ୍ତେ ! ଶିବ ! ପାପପ୍ରବାହରେ ମୁଁ ଅସ୍ତବ୍ୟସ୍ତ, ମୋତେ ରକ୍ଷାକର ।

ମୁନିଗଣ ସ୍ତୁତିଃ—ପୂର୍ବବତ୍ । ଷଣ୍ଢସ୍ୟନ୍ଦନ— ବୃଷଧ୍ୱଜ ଅଦ୍ୟ ନଃ - ଅସ୍ମାନ୍ କୃପୟ—ଅନୁକମ୍ପୟ ।

ସିଦ୍ଧଗଣ ସ୍ତୁତିଃ—ଅର୍ଦ୍ଧଃ ଖଣ୍ଡୌ (ନିଶାୟାଃ ଧବଃ)—ଚନ୍ଦ୍ରଃ ତେନ ମଣ୍ଡିତଂ ମସ୍ତକଂ ଯସ୍ୟ ତତ୍ସମ୍ବୋଧନେ । ଖଣ୍ଡିତାଃ ତାପାଃ ଆଧ୍ୟାତ୍ମିକାଦିରୂପାଃ ଯେନ ତତ୍ସମ୍ବୋଧନେ । ବିଭେ ସର୍ବବ୍ୟାପିନ୍ ନିପୂଣାଂ ପୁରାଣାଂ ଅରିଃ ଭେଦକତ୍ୱାତ୍ ଶତ୍ରୁଃ ତତ୍ସମ୍ବୋଧନେ । ନାସ୍ତିକ୍ଷୟୋଯସ୍ୟ ତାଦୃଶଃ ତତ୍ସମ୍ବୋଧନେ ଅଥବା ଅସଂଖ୍ୟାର୍ଥସ୍ୟ ଅକ୍ଷୟପଦସ୍ୟ ଦାନବାଦୀନାଂ ବିଶେଷଣତା । ଦାନବାଃ ଅସୁରାଃ ମାନବାଶ୍ଚ ତୈଃ ପୂଜିତଃ ତତ୍ସମ୍ବୋଧନେ ଦୀନାଃ ଦୁର୍ଗତିମାପନ୍ନାଃ ଯେ ଜନାଃ ତେଷାଂ ଅଘାନି ପାପାନି ତଥା ଭବାଃ ପୁନଃ ପୁନଃ ଜନ୍ମ ଏବ ଆମୟାଃ ରୋଗଃ ତଂ ହରତୀତି ତତ୍ସମ୍ବୋଧନେ ଅନ୍ତକସ୍ୟ ଯମସ୍ୟ ଦଣ୍ଡଃ ତଂ ପ୍ରଚଣ୍ଡଂ ଯଥା ସ୍ୟାତ୍ ତଥା—ଅତି ବେଗେନ ଇତ୍ୟର୍ଥଃ ବିଖଣ୍ଡୟତୀତି ତତ୍ସମ୍ବୋଧନେ । କୁଣ୍ଡଳିନାଂ ସର୍ପାଣାଂ ମଣ୍ଡଳଂ ସମୂହଃ ତେଷାଂ କୁଣ୍ଡଳଂ କୁଣ୍ଡଳନା ବଳୟାଦ୍ୟାକୃତୀ ବେଷ୍ଟନାତ୍ ତାଂ ଧାରୟତୀତି ତସ୍ମିନ୍ ତବ ସାରସାଭ୍ୟାଂ ପଦ୍ମାଭ୍ୟାଂ ସାରେ ଉତ୍କୃଷ୍ଟେ ଖୁରୁଣି ମନୋହରେ ପଦେ ଅଦ୍ୟ ନଃ ମନୋମାନସମେବ ମଧୁପଃ ଭ୍ରମରଃ ନିମଜ୍ଜତୁ ଲୀନୋଭବତୁ ।

[୧୨] ଗନ୍ଧର୍ବଗଣ ସ୍ତୁତିଃ

ଅରକ୍ଷକୁଳପାବନ ! ପ୍ରବଳ-ପୁଣ୍ୟକୀର୍ତ୍ତ୍ୟା ଜିତଃ
ଅପାରରସଦୁଗ୍ଧଧିର୍ଘଟସୁତାଞ୍ଜଳିସ୍ଥୋଽଭବତ୍
ଅୟେ ଶିବ ! ତବାଶ୍ରିତୋ ରଜତପର୍ବତସ୍ତଦ୍ଭୟାତ୍
ଅତଃ କୃଶଦଶାନ୍ୱିତଃ ଶିର ସଂଶ୍ରିତଶ୍ଚନ୍ଦ୍ରମାଃ ।

ପୃଥ୍ୱୀ

---

ଭାଷା—ହେ ଅର୍ଦ୍ଧଚନ୍ଦ୍ରମଣ୍ଡିତମସ୍ତକ, ତାପନାଶିନ୍ ! ବନ୍ଦ୍ୟେ ! ତ୍ରିପୁରାରେ ! ଅସଂଖ୍ୟ ଦାନବ ଓ ମାନବଙ୍କଦ୍ୱାରା ପୂଜିତ ! ଦୁର୍ଗତ ଲୋକଙ୍କର ଜନ୍ମାନ୍ତରୀଣ ପାପଜନିତ (କୁଷ୍ଠାଦି) ରୋଗର ବିନାଶକ ! ଯମର ପ୍ରଚଣ୍ଡ-ଦଣ୍ଡ ବିନାଶକାରିନ୍, ସର୍ପକୁଣ୍ଡଳଧାରିନ୍ , ହେ ଶିବ, ଆପଣଙ୍କ ପଦ୍ମ ପରି ସୁନ୍ଦର ଓ ସାରପଦରେ ମୋ ମନଭ୍ରମର ନିମଗ୍ନ ହୋଇଯାଉ ।

ଗନ୍ଧର୍ବଗଣ ସ୍ତୁତିଃ—ନାସ୍ତି ରକ୍ଷା ଯେଷାଂ ତେଷାଂ ଅରକ୍ଷକାନାଂ କୁଳଂ ସମୂହଃ ତଂ ପାବୟତୀତି ତତ୍ସମ୍ବୋଧନେ । ହେ ଅରକ୍ଷବୃନ୍ଦ-ପରିତ୍ରାତଃ ତବ ପୁଣ୍ୟା ଅନବଦ୍ୟା ପ୍ରବଳା ସମଧିକା ଯା କୀର୍ତ୍ତିଃ ତୟା (ଧାବଲ୍ୟଗୁଣଯୋଗାତ୍) ଅପାରଃ ଅସୀମଃ ରସଃ ଯସ୍ମିନ୍ ତାଦୃଶଃ ଦୁଗ୍ଧାଧିଃ—କ୍ଷୀରସମୁଦ୍ରଃ ଜିତଃ—ପରାଭୂତଃ ସନ୍ (କୀର୍ତ୍ତ୍ୟାଃ ଶୁକ୍ଳତ୍ୱଂ କବିସମୟସିଦ୍ଧଂ) ଘଟସୁତସ୍ୟ ଅଗସ୍ତ୍ୟେଃ ଅଞ୍ଜଳୌ କରପୁଟେ ତିଷ୍ଠତୀତି ତାଦୃଶଃ ଅଭବତ୍ । କରତଳଗତଃ ଅଭବତ୍ । ଅଗସ୍ତିଃ କରତଳଗତାନ୍ ସପ୍ତବାରିଧୀନ୍ ପପୌ ଇତି ପୌରାଣିକୀ ବାର୍ତ୍ତା । ତଦ୍ଭୟାତ୍ ତସ୍ୟାଃ କୀର୍ତ୍ତେଃ ଭୟାତ୍ ରଜତପର୍ବତଃ କୈଳାସଃ ତବାଶ୍ରିତଃ ଶରଣଂ ଗତଃ, ଅତଃ ଅସ୍ମାଦେବ କାରଣାତ୍ ଚନ୍ଦ୍ରମାଃ ମନଃଖେଦାତ୍ କୃଶଦଶାନ୍ୱିତଃ କ୍ଷୀଣଶରୀରଃ ତବ ଶିରସି ସଂଶ୍ରିତଃ ସ୍ଥିତଃ ଅଭବତ୍ ।

ଭାଷା—ହେ ଅଶରଣର ପରିତ୍ରାତା ଶିବ ! ଆପଣଙ୍କର ପୁଣ୍ୟମୟ କୀର୍ତ୍ତିର ଧବଳ ଗୁଣରେ ପରାଜିତ ହୋଇ, ଅପାର କ୍ଷୀରସାଗର ଭୟରେ ଅଗସ୍ତିଙ୍କର ଅଞ୍ଜଳିରେ ବାସ କଲା । କୈଳାସ ମଧ୍ୟ ସମାନ ହୋଇ ନ ପାରି ଆପଣଙ୍କୁ ଆଶ୍ରୟ କଲା । ଆହୁରି ମଧ୍ୟ ଏହି କାରଣରୁ ଚନ୍ଦ୍ର ମନୋବେଦନାରେ ଅତି କ୍ଷୀଣ ହୋଇ, ଆପଣଙ୍କ ମସ୍ତକକୁ ଆଶ୍ରୟ କରିଛି ।

[୧୩] ପିଙ୍ଗଳଭାଷାରେ ନାଗସ୍ତୁତ

ଅଧସସିସୁହମୁଣ୍ଡା ବାହଣଷଣ୍ଡା କୁଣ୍ଡଲମଣ୍ଡା ପରିଚଣ୍ଡା
ଅରୁଣାଣଲଣେଭା କାଲକୁନ୍ତା ତିପୁରହନ୍ତା ଭଅଖଣ୍ଡା,
ଅଣନ୍ତାକୁଲହାର ଅଦ୍ଦିବହାର ତିଗୁଣଧାର ସୁରସାର
ଅମରପଦବନ୍ଦା ଆଣନ୍ଦକନ୍ଦା ସିରୁପର ମନ୍ଦାକଣୀଧାର ।

[୧୪] ଗୁରୁସଗଣ-ସ୍ତୁତିଃ

ଅହିଜାଲ ମୁଣ୍ଡମାଳୀ ଦିଗବାସ କାଳୀବାଳୀ
ଗଣଭୂତପ୍ରେତମେଳ ନଚଗାତ ଭସ୍ମଧୂଳ
ଅଛେ ନାମ ଯା କପାଳୀ ଗିରିକନ୍ଦରରେ କେଳ
ଅରିବ୍ୟାଘ୍ରଚର୍ମଚେଲୀ ଜୟ ଜୟ ମଙ୍ଗଳାନୁକୂଳୀ ।

---

ନାଗସ୍ତୁତ – ଅର୍ଦ୍ଧଶଶିଶୋଭିମୁଣ୍ଡ—ଯାହାଙ୍କର ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭା ପାଉଛି । ବାହନଷଣ୍ଢ—ଷଣ୍ଢ ଯାହାଙ୍କର ବାହନ । କୁଣ୍ଡଳମୁଣ୍ଡ—ସର୍ପ ଯାହାଙ୍କର ମସ୍ତକରେ ଅଛି । ପ୍ରଚଣ୍ଡ—ଯେ କ୍ରୋଧମୟ । ଅରୁଣାନଳନେତ୍ର— ସୂର୍ଯ୍ୟ ଓ ଅଗ୍ନି ଯାହାଙ୍କର ନେତ୍ର । ତ୍ରିପୁରହନ୍ତା—ଯେ ତ୍ରିପୁରର ଦହନକାରୀ । ଭୟଖଣ୍ଡକ—ଯେ ଭୟକୁ ଖଣ୍ଡନ କରନ୍ତି । ଅନନ୍ତକୁଳହାର—ଅନନ୍ତଙ୍କର, ବାସୁକିଙ୍କର ବଂଶୀୟ ସର୍ପମାନେ ଯାହାଙ୍କର ହାର । ଅଦ୍ରିବିହାରୀ—ଯେ ପର୍ବତରେ କ୍ରୀଡ଼ା କରନ୍ତି । ତ୍ରିଗୁଣଧାରୀ—ଯେ ସତ୍ତ୍ୱ, ରଜଃ ଓ ତମଃ ରୂପ ତିନିଗୁଣକୁ ଧାରଣ କରିଛନ୍ତି ଅଥବା ତ୍ରିଗୁଣ—ତୃତୀୟ ଗୁଣ ଅର୍ଥାତ୍ ତମ ଗୁଣ । ସୁରସାର— ଯେ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅମରପଦବନ୍ଦିତ—ଦେବତାମାନେ ଯାହାଙ୍କର ପଦକୁ ବନ୍ଦନା କରନ୍ତି । ଆନନ୍ଦକନ୍ଦ—ଯେ ଆନନ୍ଦର ମୂଳପିଣ୍ଡ । ଶୀର୍ଷୋପରି ମନ୍ଦାକିନୀ ଧାରୀ—ଯାହାଙ୍କର ମସ୍ତକ ଉପରେ ଗଙ୍ଗାପ୍ରବାହ ବର୍ତ୍ତମାନ । ଏ ସମସ୍ତ ସମ୍ବୋଧନ ପଦ ।

ଗୁରୁସଗଣ ସ୍ତୁତି :—ଅହିଜାଲ—ସର୍ପସମୂହ । ଦିଗବାସ—ଦିଗମ୍ବର । କାଳୀବାଳୀ—କାଳିକା ଯାହାଙ୍କର ସ୍ତ୍ରୀ । ଗାତ୍ରଭସ୍ମଧୂଳ—ଚିତାଭସ୍ମ ଓ ଧୂଳିଯୁକ୍ତ । କପାଳୀ ନାମରେ ଯେ ଖ୍ୟାତ । ଗିରିକନ୍ଦରରେ—ପର୍ବତ ଗୁମ୍ଫାରେ । କେଳ— କ୍ରୀଡ଼ା । ବ୍ୟାଘ୍ରଚର୍ମଚେଲୀ—ଯେ ବାଘଚମଡ଼ାକୁ ଲୁଗାରୂପେ ପିନ୍ଧନ୍ତି ।

(୧୫) ଅସୁର୍-ସ୍ତୁତି (ଖୋରଠା)

ଅମ୍ବକେ ନାଥ ତ୍ରିଲୋଚନ ଶଙ୍କର୍ ଶମ୍ଭୁ ଦିଗମ୍ବର ଅମ୍ବକେ ପ୍ୟାରେ
ଅମ୍ବର୍ ଛୋଡ଼ଉ ଭୁତି ଚଢ଼ାଓଲେ ଡମ୍ବରୁ ଶୂଳ କପାଲକୀ ତ୍ୟାରେ
ଅନ୍ତର୍‌ଯ୍ୟାମି ସଦାଶିବ ହୋ ତୁମ୍ ଦିଲ୍‌କେ ବାତ୍ ଛପେ ନହିଁ ତୋରେ
ଅମ୍ବ ଇଲ୍‌ଖ୍ ଚଢ଼ାଉଁ କରେ ବଖସିସ୍ ମୁନାସିବ୍ ବାସ୍ ହମାରେ,

(୧୬) ବଙ୍ଗଦେଶ ସ୍ତୁତି

ଅପର୍ଣ୍ଣା ଦେବୀର୍ ସ୍ୱାମୀ ତୋମାର୍ ଚରନେ ଆମି
ଭୁତଭୂତ ସବେ କବେ ହୈବ
ଅପାର୍ ଐ ଭବନଦୀ ତରିବେ ନା ଦିଶେ ବୁଦ୍ଧି
ଯଦ୍ୟପି ନା ଦିବେ ଦୟାନାବ୍ ।
ଅଧର୍ମେର୍ ପଥ ମାଝି ଧର୍ମମାର୍ଗ ଦିଲ୍ ଛାଡ଼ି
ଚଞ୍ଚଲତେ ଜୀବନ ଚଞ୍ଚଲ୍
ଅନ୍ତକେର ଦୂତ ଯବେ ଜଞ୍ଜାଲ୍ କରିବେ ତବେ
ଉଦ୍ଧାରିବେ ତୁମି ଦିଗଚେଲ୍ ।

—୪—

ଅମର

ଅସୁର୍ ନର୍ କିନ୍ନର
ଅହି ସଙ୍ଗତେ ଯକ୍ଷ ରକ୍ଷସେ ସେ । ଘୋଷା ।
ଅଶେଷ ସୁଖ-ସିନ୍ଧୁରେ କେ ଭାସିଲ
ଅପାର୍-ଜନ୍ମ ଅଘ କେହୁ ନାଶିଲା
ଅଜ୍ଞାନ କାହାଠାରୁ ଦୂରେ ପଶିଲା
ଅଙ୍ଘ୍ରି-ପଦ୍ମରେ କେହୁ ହେଲ ଭ୍ରମର ସେ ଅମର । ୧ ।

---

ଅସୁରଗଣ ସ୍ତୁତି—ଅମ୍ବିକେ ନାଥ ପାର୍ବତୀଙ୍କ ସ୍ୱାମୀ ! ବଖସିସ୍—ପୁରସ୍କାର । ମୁନାସିବ—ହକ୍କ ।

ଗୀତ ୪ ଃ—ଅମର—ଦେବତା । ଅହି—ସର୍ପ । ଅଘ—ପାପ । ଅଙ୍ଘ୍ରି ପଦ୍ମ—ପାଦପଦ୍ମ । ପଞ୍ଚମୁଖ—ଶିବଙ୍କୁ ପଞ୍ଚାନନ କୁହାଯାଏ । ଅମଳ—ଉଜ୍ଜ୍ୱଳ,

ଅକ୍ଷି ରୁଖିଛୁ ଦେଖୁ ପଞ୍ଚମୁଖରେ
ଅମଳ ଅଙ୍ଗକୁ ଗୃହେଁ ସୁଖରେ
ଅଗ୍ରେ ପୃଷ୍ଠେ ବେ ଉଭୟ ବେନି ପାଖରେ
ଅନୁସର ବେ ଢ଼ାଳେ ଖଦି ଗୁମର ସେ ଅମର । ୨ ।
ଅଷ୍ଟଷଷ୍ଠଭୁବନ-ପତ୍ତ ହରଷେ
ଅଷ୍ଟଲୋଚନ ଆଦି ଦେବଙ୍କ ପାଶେ
ଅନାଇଁ ଆଜ୍ଞା କଲେ ମଧୁର ହାସେ
ଅଦ୍ୟ ବସା କର ଅଦିଷ୍ଟକୁମର ସେ ଅମର । ୩ ।
ଅନୁଜ୍ଞା ଘେନି ସର୍ବେ ତୋଷେ ଚଳିଲେ
ଅନୁରୂପ ମନ୍ଦିରେ ଯାଇଁ ମିଳିଲେ
ଅଶନ ଶୟନକୁ ଅବକଳିଲେ
ଅବନୀପାଳ ଭଞ୍ଜ ଶିବ ! ପାମର ସେ ଅମର । ୪ ।

---

—୫—

ଅନ୍ତଃପୁରୁ ବାହାର ବାହାରେ ଅବକାଶ ଯେ
ଅନାଇ ପ୍ରମଥଗଣ ଆଜ୍ଞା ଦେଲେ ଈଶ ଯେ । ଘୋଷା ।
ଅଦ୍ୟ ହେବ ତାଣ୍ଡବ-ଉତ୍ସବ ନୃତ୍ୟ ରସ ହେ
ଅଣାଅ ଭଣ୍ଡାରୁଁ ସେ ଭୂଷଣ ବେଶ ବାସ ହେ
ଅଚ୍ୟୁତ ଚତୁରାନନ କେଶବ
ଅମର କିନ୍ନର ଯକ୍ଷ ଗନ୍ଧର୍ବ
ଅସୁର ପନ୍ନଗ ଋଷି ମାନବ
ଅଣାଅ, ଏମାନଙ୍କୁ ବର୍‌ଯିବ ହେ । ୧ । ଅନ୍ତଃପୁରୁ

---

ଧବଳ । ଅଷ୍ଟଷଷ୍ଠଭୁବନ—ଚଉଦ ଭୁବନ । ଅଷ୍ଟଲୋଚନ—ବ୍ରହ୍ମା । ଅନୁଜ୍ଞା—ଆଦେଶ । ଅଶନ—ଭୋଜନ । ଅବକଳିଲେ—ଗ୍ରହଣ କଲେ । ହେ ଶିବ ! ପାମର—ଅଧମ । ଗୀତ ୫ :—ଅବକାଶ—ଅବସର ନେବା । ବାସ—ଲୁଗା ବା

ଅନୁରୂପ ମଣ୍ଡଣିରେ ମଣ୍ଡ ନାଟପୁର ହେ
ଅତର ପନୀର ନୀର ସିଞ୍ଚି ପୁଟ୍ଟେଦର ହେ
ଅଶୋକ କୁନ୍ଦ ମଲ୍ଲିକା ଜାଇ ଯୂଇ
ଅବ୍‌ଜ ଆଦିମାଳା ବରଣ ପାଇଁ
ଅଗୁରୁ ଚନ୍ଦନ ଚନ୍ଦ୍ର ମିଶାଇ
ଅଳକେ ଦେବାକୁ ଥାଅ ସଜାଇ ହେ । ୨ । ଅନ୍ତଃପୁରୁ
ଅନୁଆନ ଦାଣ୍ଡରେ ପାହାଡ଼ାମାନ ପାର ହେ
ଅବନୀରେ ନ ଲଗିବ ଯେମନ୍ତ ପୟର ହେ
ଅଷ୍ଟରତ୍ନ ହେମରୁପାଭୂଷଣ
ଅପାର ପ୍ରକାରେ କର ନିର୍ମାଣ
ଅମୂଲ୍ୟ ବସନ କର କାରଣ
ଅମରେ ଖଦା ହେବେ ସବଂଗଣ ହେ ।୩। ଅନ୍ତଃପୁରୁ
ଅବଲମ୍ବେ ପାରିଷଦମାନେ ଚଳଗଲେ ହେ
ଅନୁଜ୍ଞା ପ୍ରମାଣେ ସର୍ବଦ୍ରବ୍ୟ ସଜାଡିଲେ ହେ
ଅନ୍ତେ ବ୍ରହ୍ମା ଋଷି ଇନ୍ଦ୍ର ଦେବେ
ଅର୍ଚ୍ଚନା କର ଯଥାବଧି ପୂର୍ବେ
ଅଗ୍ରେ ଚହନ୍ତି ସମର୍ଯ୍ୟାଦଭାବେ
ଅବନୀପତି ବଳଭଦ୍ର ଭାବେ ହେ । ୪। ଅନ୍ତଃପୁରୁ...

[ ୭ ]

ଚୂର୍ଣ୍ଣିକା

ଅୟେ ଦେବମହର୍ଷିଗନ୍ଧର୍ବକିନ୍ନର-ରକ୍ଷସାସୁର-ନାଗ-ନରଗଣାଃ !
ଅଦ୍ୟ ତ୍ରୈଲୋକ୍ୟୈକ-ନାୟକ-ମହାମହିମାଳୟ-ମହେଶ୍ୱରସ୍ୟ

---

ସୁଗନ୍ଧଦ୍ରବ୍ୟ । ମଣ୍ଡ—ସଜାଅ । ନାଟପୁର—ନାଟ୍ୟମନ୍ଦିର । ପୁଟ୍ଟେଦର--ଗୃହ-ମଧରେ । ଅବ୍‌ଜ—ପଦ୍ମ । ଚନ୍ଦ୍ର—କର୍ପୂର । ଅଳକେ—କପାଳରେ । ପାହାଡ଼ା—ଆସ୍ତରଣ । ପାର—ବିଛାଅ ।

୭ । ଚୂର୍ଣ୍ଣିକା—ହେ ଦେବ, ମହର୍ଷି, ଗନ୍ଧର୍ବ, କିନ୍ନର, ରାକ୍ଷସ, ଅସୁର, ନାଗ ଓ ନରମାନେ, ଅଦ୍ୟ ତ୍ରିଲୋକର ଏକମାତ୍ର ଅଧୀଶ୍ୱର ମହାମହିମାଶାଳୀ ମହେଶ୍ୱରଙ୍କ ଅଷ୍ଟଭୁବନ-ପୂଜିତ ତାଣ୍ଡବ ନୃତ୍ୟ ହେବ । ଅତଏବ ଯେଉଁମାନେ

ଅଷ୍ଟଭୁବନ ବନ୍ଦନୀୟତାଣ୍ଡବନୃତ୍ୟକୌତୁକଂ ଭବତ୍ୟେତ ।
ଅସ୍ୟୋପଯୋଗି-ଚତୁର୍ବିଧ-ବାଦ୍ୟ-ସ୍ୱରାନୁଲାପ-ଗୀତ ଗାୟନ-
ସ୍ୱରକମ୍ପନାଙ୍ଗଭଙ୍ଗ୍ୟାଦି-ବକ୍ରୋକ୍ତି-ପରିହାସ-ପରିଭାଷାକଥନାଦି-
କାର୍ଯ୍ୟେଷୁ କୁଶଳାଃ ସନ୍ତସ୍ତେ ତେଽଚିରେଣ ହ୍ୟସ୍ୟାଜ୍ଞୟାଽଽଗଚ୍ଛନ୍ତୁ ।

—୨—

ଅମନ୍ଦେ ଅମନ୍ଦେ ଅମନ୍ଦେ ( ଅମନ୍ଦେ ଅମନ୍ଦେ )
ଅନୁଜ୍ଞା କଲେ ଈଶ୍ୱର ଆସ ସୁରବୃନ୍ଦେ । ଘୋଷା ।
ଅଚ୍ୟୁତ ହେ ଦେବଦେବ    ଅଚିରେ ବିଜୟ ହେବ
କରେ କରତାଳ ଥିବ, ଶିବ-ନାଟବନ୍ଧେ । ୧ ।
ଅମ୍ବୁଜାସନ ହେ ସନ—    ମାନେ ହର ଆଜ୍ଞା ଘେନ
ମର୍ଦ୍ଦଳ ଘେନି ବହନ, ଚଳିବ ସାନନ୍ଦେ । ୨ ।
ଅୟେ ଋଷିଗଣଶଶି !    ଆଜ୍ଞା କଲେ କାଶୀବାସୀ
ଆସିବା ହେବ ସୁବୀଣା, ବାଦ୍ୟ ଘେନି ଛନ୍ଦେ । ୩ ।
ଅପସର ଯକ୍ଷଗଣ    କିନ୍ନର ଚାରଣଗଣ
ଚଳ ଯେ ଯାହା ଭୂଷଣ, ବାଦନ ନିର୍ବନ୍ଧେ । ୪ ।
ଅମରକିନ୍ନରପୁଞ୍ଜି    ପଚ୍ଛେ ବଳଭଦ୍ର ଭଞ୍ଜି
ନମସ୍କାର କଲି କଞ୍ଜମୁଖ-ପଦଦ୍ୱନ୍ଦ୍ୱେ । ୫ ।

—[ ঃ ]—

ଏହି ନୃତ୍ୟର ଉପଯୋଗୀ ଚତୁର୍ବିଧ ବାଦ୍ୟ ସ୍ୱରର ଆଳାପ ଗୀତ ଗାନ ସ୍ୱରକମ୍ପନ ଅଙ୍ଗଭଙ୍ଗୀ ପ୍ରଭୃତିରେ ଓ ବକ୍ରୋକ୍ତି ପରିହାସ ପରିଭାଷା ପ୍ରଭୃତି କହିବାରେ ନିପୁଣ, ସେମାନେ ମହାଦେବଙ୍କ ଆଜ୍ଞାପ୍ରମାଣେ ଅତିଶୀଘ୍ର ଆଗମନ କରନ୍ତୁ ।

ଗୀତ ୨ । ଅମନ୍ଦେ—ଶୀଘ୍ର । ସୁରବୃନ୍ଦେ—ଦେବତାମାନେ । ଅଚ୍ୟୁତ—ବିଷ୍ଣୁ । ଅଚିରେ—ଶୀଘ୍ର । ଅମ୍ବୁଜାସନ—ବ୍ରହ୍ମା । କାଶୀବାସୀ—ଶିବ । ବାଦନ-ନିର୍ବନ୍ଧେ—ବାଦ୍ୟଯନ୍ତ୍ରାଦି ସହିତ । କଞ୍ଜମୁଖ-ପଦଦ୍ୱନ୍ଦ୍ୱେ – ଶିବଙ୍କର ପାଦଦ୍ୱୟରେ ।

—୮—

ଅତନୁ-ନାଶି-ଆଜ୍ଞା ଶୁଣି ସକଳ ଭୁବନବାସୀ
ଅଙ୍ଗରେ ଧରି ରଙ୍ଗ କୁତୁକ ସଙ୍ଗତ ରସରାଶି । ଘୋଷା ।
ଅଚ୍ୟୁତ ଅରବିନ୍ଦ କୁମର ଅନେକ-ନୟନ ଆଦି ଅମର
ଶିବର ନବର ବେଶର ପରିବେଶ ସଙ୍ଗେ ଆସି । ୧ ।
ଅତି ତରଳିତ ନାଦ-କଳିତ ମର୍ଦ୍ଦଳରବ ମଧୁର ଲଳିତ
ବେଣୁ ବଂଶୀ ବୀଣାସ୍ୱନ, ସ୍ୱର ଉତ୍କୃଷ୍ଟ ବର୍ଷି । ୨ ।
ଅବ୍ଜ-ଖଣ୍ଡ-ମଣ୍ଡନ-ଶିର ତାଣ୍ଡବ-ନଟ-ମଣ୍ଡଳସ୍ଥିର
ମିଳି ଖଣ୍ଡିଲେ ଭଣ୍ଡିବାର କାଳଦଣ୍ଡ-ଫାସି । ୩ ।

—(✻)—

—୯—

ସ୍ୱର—ନାଟ
ତାଳ—ଜସାରି

ଅମ୍ବାଧବ ରଚୟିତ ତାଣ୍ଡବନାଟ ପ୍ରକଟ କୌତୁକ ହେ । ଘୋଷା ।
ଅଳ୍ପ ଉତ୍କଟ ଇନତ ଆନନ
ହସ୍ତକଗତ ମସ୍ତକ ଘୂଳନ
ଧ୍ୱସ୍ତ କରଇ ଧୂତ ପଦଘୂଳନ
ନେହପଲ୍ଲବହାରକ ହେ । ୧ ।
ଅଙ୍ଘ୍ରିପର ନୂପୁର ଝୁଣଝୁଣ
ବାଜତ କଟି କଙ୍କିଣୀ ଠଣ ଠଣ
ଫୁଫୁ ଧ୍ୱନି ଶ୍ୱସତ ସନ୍ତତ
ଭୂଷଣ ଫଣିନାୟକ ହେ ।୨।
ଅଷ୍ଟନୟନ ମର୍ଦ୍ଦଳ ତରଳିତ
ତାକ୍ ଧିଗି ଧିଗ୍ କୃତ ଧୁଧୁଙ୍ଗନଵାହିତ
କ୍ୱା ହିତ କ୍ୱା ହିତ ଧେକ୍ୱେ
ଥେ ତଥେଇ କତ ହେ । ୩ ।

---

ଗୀତ ୮ । ଅତନୁନାଶୀ—ଶିବ । ରଙ୍ଗ କୁତୁକ—ନୃତ୍ୟ ବିଷୟକ କୌତୂହଳ । ଅବ୍ଜଖଣ୍ଡମଣ୍ଡନଶିର—ଶିରରେ ଅର୍ଦ୍ଧଚନ୍ଦ୍ରକୁ ଧାରଣ କରିଥିବା ଶିବ । ଗୀତ ୯ । ହସ୍ତକ ଗତ—ଅଭିନୟକାଳୀନ ହସ୍ତାଦିର ଭଙ୍ଗୀ ।

ଅତ୍ୟୁତ କରତାଳ ଝଂ ଝଂ କୃତ
ଝଂ ଝଂ ନଝଂ କୃତ ଝଂ କୃତ
ନା ଦେ ହର-ଚରଣ-ପ୍ରଚୁର
ବଦ୍ୟୁତଗତ ନନ୍ଦକ ହେ । ୪ ।

ଅଗ୍ରେ ମିଳ ବାଓତ ନାରଦ ବୀଣା
ସ ରି ଗ ମ ପ ଧ ନି ପ ଧ ସା
ଧପ ପଧ ନିଧ ଧପ ଧ' ମତେ
ବନା ଥେଇ ବାଦକ ହେ । ୫ ।

ଅମ୍ବୁଧିବର ବେଣୁ ବଜାଓତ
ତୁମ୍ବୁରୁ ଉଷି ତୁମ୍ବୁରୁ ବାଓତ
ନାକ-ଭୁବନ-ନାୟକ ଅମୃତୀ
କିନ୍ନରଗଣ ଗାୟକ ହେ । ୬ ।

ଅମୃତମୟ ସଙ୍ଗୀତ-ସାଗର
ତାଣ୍ଡବ ନଟ ମନ୍ଥନ-ମନ୍ଦର
ସ୍ୱଜନ ବଳଭଦ୍ର ଉମାବର
ଚନ୍ଦ୍ର ଚରିତ ସ୍ତାବୁକ ହେ । ୭ ।

—୧୦—

(ଆହା) ଅଙ୍ଗମାନ ଅଚେତନ କମ୍ପମାନ ତ
ଅଷ୍ଟ ସାତ୍ତ୍ୱିକ-ଲଳିତ । ଘୋଷା ।
ଅପୂର୍ବ ତାଣ୍ଡବରଙ୍ଗ ଦେଖି ସର୍ବ ଲୋକେ ହେଲେ ମୋହିତ
ଅମୃତକିରଣ ଯୋଗେ ଯଥା ଚନ୍ଦ୍ରକାନ୍ତ-ମଣି ବହିତ । ୧ ।
ଅମର ସମାନ ଦେଖି ହେଲେ ଦାନବାଦି ମାନବାଳି ସହିତ
ଅବନୀଜନଙ୍କ ପରି ହେଲେ ନାକବାସୀ ଆଗ୍ରେ କରି ମହୀ ତ । ୨ ।

---

ଅମ୍ବୁଧିବର—ବରୁଣ । ନାକଭୁବନନାୟକ—ଇନ୍ଦ୍ର । ଗୀତ ୧୦ । ଅମୃତକିରଣ-ଯୋଗେ—ଚନ୍ଦ୍ରଙ୍କର ଅମୃତମୟ କିରଣ ପଡ଼ିଲେ । ବହିତ—ତରଳିତ ହୁଏ । ମାନବାଳି—ମନୁଷ୍ୟଗଣ ।

ଅମ୍ବୁଧର ଢାଳ ପର ରଙ୍ଗସ୍ଥଳ ହେଲା ଆନନ୍ଦାଶ୍ରୁ ବହୁତ
ଅଙ୍ଗ ସ୍ୱେଦବୃଷ୍ଟି ନୀପ ଫୁଲ ଫୁଟି ଅଛି ଯା ପୁଲକେ ଦେହୀ ତ । ୩ ।
ଅଜୀବ ପଗ୍ୱଇ କେ ଗଲନ୍ନି ରହି କେ ହୋଇ ପ୍ରଳାପ ସହିତ
ଅନେକ ସ୍ଥାନକେ ନାଚ ନାଚି ନନ୍ଦେ ମନେ ତା କେ ଘେନ ଅଦ୍ଭୁତ ।୪।
ଅଚ୍ୟୁତ ଲୋକେଶ ଇନ୍ଦ୍ରାଦି ଅବଶ ହେଲେ ହୋଇ ଶ୍ରମ-ଗୂହିତ
ଅଚଳା ନ ସହି ଭଙ୍ଗିବାର ବହି ଏଣୁ ହେଲା ରସ-ରହିତ । ୫ ।

—:—

—୧୧—

ଅଥ ପ୍ରମଥନାଥୁଁ ସୁର ନର ନାଗ ଋଷି ଯକ୍ଷ ମୁନି ରାକ୍ଷସ ମେଳଣି ହୋଇ
ଅମଳବର ହାର ମଣି ହୀରକ ହିରଣ୍ୟ ହୟ ହସ୍ତୀ ପଟ୍ଟ ପଟଳ-ବହୁ
ଭୂଷଣ ପାଇ । ଘୋଷା ।
ଅଖିଳଜନତାତ ଅରହାତ ବଜ୍ରହାତରେ ପ୍ରେମ
ଆଶ୍ଲେଷ କର ଗୌରୀ ସାଇଁ
ଅବ୍ଜ-ଭବେ ଝାବଭର ଭାଷା ଭାଷି ହସି ଇନ୍ଦ୍ରଙ୍କୁ
ସାନ୍ଦ୍ର ପ୍ରୀତ ନେନେ ସୃହୁଁ । ୧ ।
ଅମରଗଣ ଜଣକୁ ଜଣ ଶାଢ଼ୀ ସଜ ଆଭରଣ
ମାଳ ନିର୍ମାଲ୍ୟ ଅନୁରୂପେ ନେଇ
ଅସୁରେ ଧନ ରତନ ଗୀର ବୃଷଭର ହୟ
ହାର-ବର ହରଷେ ହର ଦଉ ଭଲେ ଚଉ ମୋହି । ୨ ।
ଅତ ଉତ୍କଣ୍ଠ ବ୍ୟକ୍ତ ଅନୁରାଗ ଅନୁରକ୍ତ ପରଭକ୍ତ—
ଜନେ ମୁକ୍ତି ପଦ ଦେଲେ ଫେଇ

---

ଲୋକେଶ—ବ୍ରହ୍ମା । ଶ୍ରମଗୂହିତ—ଶ୍ରାନ୍ତ । ଅଚଳା— ପୃଥିବୀ ।
୧୧ ଗୀତ । ହିରଣ୍ୟ—ସୁନା । ହୟ—ଘୋଡ଼ା । ପଟ୍ଟ—ଲୁଗା । ଅରହାତ—ଚକ୍ରଧର, ବିଷ୍ଣୁ । ବଜ୍ରହାତ—ଇନ୍ଦ୍ର । ଆଶ୍ଲେଷ—ଆଲିଙ୍ଗନ । ଅବ୍ଜଭବେ—ବ୍ରହ୍ମାଙ୍କଠାରେ । ସାନ୍ଦ୍ର—ଗାଢ । ନିର୍ମାଲ୍ୟ—ଶିବଙ୍କ ବ୍ୟବହୃତ ମାଲ୍ୟାଦି (ଚଢ଼ାଫୁଲ) ।

ଅମିତ ପ୍ରୀତି ଆଦରରେ ଅଦର କଲ୍ୟାଣ କରି
                    ଯୋଗୀ ଯତି ମୁନି ଋଷି ମେଲଣି ଦେଇ । ୩ ।
ଅପରେ ଅନୁ ଆନ କରି ଦାନ ଅବଧାନ କରି
                    ମାନବରମାନବ ମେଲଣି ଦିହ
ଅବ୍ଜମୁଖ ଅବ୍ଜତନୁ ଅବ୍ଜ-ପାଦ ତଳରେ
                    ଅନୁବରତ ବଳଭଦ୍ର ଭୂପ ଚିତ୍ତ ଥୋଇ । ୪ ।



## ସପ୍ତତ୍ରିଂଶ ଛାନ୍ଦ

ଅଥାନ୍ତେ ଗୁଣନିପୁଣଗଣେ ଶୁଣ
ଅବଧେ ହେଲି ସୁତ ନାମକରଣ । ୧ ।
ଅନ୍ତ ଶିଶିର ହୁଅନ୍ତେ ଯେଉଁ ଆଶେ (?)
ଅଟବୀଦ୍ୟୁତି ବଢ଼େ ପ୍ରତିଦିବସେ । ୨ ।
ଅଙ୍ଗତରଙ୍ଗ-ଶୋଭା ପ୍ରଭା ବିଭବ
ଅହେ ଅହେ ବୃଦ୍ଧି ବଳବୀର୍ଯ୍ୟ ଭବ । ୩ ।
ଅରୁଣୋଦୟ କୁମୁଦ ପରି:ଶୀର୍ଣ୍ଣ
ଅଜ୍ଞାନ ଅବିବେକ ମୂର୍ଖ ବିଧାନ । ୪ ।

---

ଅଦର କଲ୍ୟାଣ—'ନିର୍ଭୟ ହୋଇଥାଅ' ଏହି ପ୍ରକାର ଆଶୀର୍ବାଦ ।

---

### ସପ୍ତବିଂଶ ଛାନ୍ଦ

୧ । ଅଥାନ୍ତେ—ଏହା ପରେ । ଗୁଣନିପୁଣଗଣ—ଗୁଣିବ୍ୟକ୍ତିମାନେ ୨ । ଯେଉଁପରି ଆଶେ—ଯେଉଁ ( ଶିଶିର ଋତୁ ବିତିଗଲେ ଯେପରି ) । ଅଟବୀଦ୍ୟୁତି—ବନର କାନ୍ତି ( ବସନ୍ତ ଋତୁ ସମାଗମ ହେତୁ ବନଶୋଭା ପ୍ରତିଦିନ ବଢେ ) ୩ । ଅଙ୍ଗ-ତରଙ୍ଗଶୋଭା—ଶରୀରର ଶୋଭାତରଙ୍ଗ । ପ୍ରଭା—ତେଜ । ବିଭବ—ପ୍ରଭବ । ଅହେ ଅହେ—ଦିନକୁ ଦିନ । ୪ । ଅରୁଣୋଦୟ କୁମୁଦ—ପ୍ରାତଃକାଳର କଇଁପରି ଶୀର୍ଣ୍ଣ, ମ୍ଳାନତେଜ । ମୂର୍ଖ ବିଧାନ – ମୂର୍ଖତା ।

ଅମ୍ବୁଜବତ ବିକଶିତ ସମସ୍ତ
ଅସ୍ତ୍ରଶସ୍ତ୍ରବିଦ୍ୟା ସଙ୍ଗୀତ ସାହିତ୍ୟ । ୫ ।
ଅମ୍ବୁଦ ପ୍ରବଳ ବୃଷ୍ଟି ଜଳ ପରି
ଅନେକ ମଣ୍ଡଳେ ଯଶଃ ଗଲା ପୂରି । ୬ ।
ଅଲୌକିକ ଦାନେ ବିପ୍ର ଭାଟ ଗୁଣୀ
ଅଶେଷ ଆଶିଷ ସ୍ତୁତିବାକ୍ୟ ଭଣି । ୭ ।
ଅସ୍ତ୍ର-ତେଜେ ଅସ୍ତ ଦିଶିଲେ ଦ୍ୟୁମଣି
ଅନଳପ୍ରଭା ଭଜିଲା ପ୍ରଭା ଜାଣି । ୮ ।
ଅବ୍ଜସମ୍ଭବ ସମ୍ଭାବନା କରନ୍ତି
ଅଶନିଧର ଆଦି ଅନୁସରନ୍ତି । ୯ ।
ଅସିତକଣ୍ଠ ବାହନ ଚମତ୍କାର
ଅହିମାନେ ଭ୍ରମି ଆସନ୍ତି ସଂସାର । ୧୦ ।
ଅସ୍ତ୍ର ଧରି ଅଗ୍ରେ ଉଭା ହେବା ପାଇଁ
ଅରହ କ୍ଷତ୍ରିୟ କୁଳେ କେହି ନାହିଁ । ୧୧ ।
ଅଶନି-ତ୍ରିଶୂଳ-ଚକ୍ର ତେଜ ଜିଣି
ଅମ୍ବୁଜାସନ ଶକତି ଦେଲେ ଆଣି । ୧୨ ।
ଅନେକ ଯୁଗକଳ୍ପାଦି ହେଲେ ଶେଷ
ଅନ୍ୟଥା ନୋହେ ଯା କୁମାର ବୟସ । ୧୩ ।
ଅଷ୍ଟଦିଗ ଜୟ କଲେ ବାହୁବଳେ
ଅଜେୟ ନାହିଁ ସ୍ୱର୍ଗ ମର୍ତ୍ତ୍ୟ ପାତାଳେ । ୧୪ ।
ଅତି ଉଗ୍ରକର୍ମା ତାରକ ଅସୁର
ଅମରବଳ ଡରେ ଯାର କିଙ୍କର । ୧୫ ।

---

୫।ଅମ୍ବୁଜବତ୍—ପଦ୍ମପରି ।୬। ବର୍ଷାକାଳର ବୃଷ୍ଟି ଜଳ ପରି ଅନେକ ଦେଶରେ ଯଶଃ ପୂରିଗଲା । ୭ । ଅଲୌକିକ ଦାନେ—ଅସାଧାରଣ ଦାନ କରିବାରୁ । ୮ । ଦ୍ୟୁମଣି—ସୂର୍ଯ୍ୟ ।୯। ଅବ୍ଜସମ୍ଭବ—ବ୍ରହ୍ମା । ସମ୍ଭାବନା କରନ୍ତି—ପୂଜା କରନ୍ତି । ଅଶନିଧର—ଇନ୍ଦ୍ର । ଅନୁସରନ୍ତି—ପଛରେ ଭୃତ୍ୟ ପରି ଗୋଡ଼ାନ୍ତି । ୧୦। ଅସିତକଣ୍ଠ—ମୟୂର । ଅହିମାନେ—ବନକ ଭିତରେ । ୧୧ । ଅରହ—ଯୋଗ୍ୟ । ୧୨ । ଅଶନି—ବଜ୍ର (ଇନ୍ଦ୍ରଙ୍କ ଅସ୍ତ୍ର) । ତ୍ରିଶୂଳ ଶିବଙ୍କ ଅସ୍ତ୍ର । ଚକ୍ର—ବିଷ୍ଣୁଙ୍କ ଅସ୍ତ୍ର । ଅମ୍ବୁଜାସନ—ବ୍ରହ୍ମା । ୧୫ । ଉଗ୍ରକର୍ମ—କ୍ରୂରକାର୍ଯ୍ୟ କରୁଥିବା । ଅମରବଳ—ଦେବତାମାନେ ।



ଅନେକ ସୁରଦଳାଦି ହେଲେ ଶେଷ
ଅନ୍ୟଥା ନୋହେ ଯା କୁମାର ଦସ୍ୱସ ।

ଅନର୍ଥ ତା'ଉପଦ୍ରବ ଗର୍ବ ଶୁଣି
ଅମରଷରେ ବାହାର ଶକ୍ତିପାଣି । ୧୬ ।
ଅନ୍ତେ ଅଛନ୍ତି ନିଜ ପାର୍ଶ୍ୱବଳ
ଅନ୍ତକବତ ଭୟଙ୍କର ପ୍ରବଳ । ୧୭ ।
ଅସୁର-ନଗର-ପାଶେ ପରବେଶ
ଅରି-ଅରିଷ୍ଟ ବୀରବାଦ୍ୟ ପ୍ରକାଶ । ୧୮ ।
ଅଙ୍ଗୁଳିଜ ନାଗେଶ୍ୱର ବାଦ୍ୟେ ଯଥା
ଅଚରେ ଧାଇଁଲେ ଦୈତ୍ୟ କ୍ରୋଧେ ତଥା । ୧୯ ।
ଅଶନି ସମ ଶସ୍ତ୍ର କଲେ ପ୍ରହାର
ଅକଳିତ ରଣ ତ୍ରୈଲୋକ୍ୟ-ବାହାର । ୨୦ ।
ଅନ୍ଧାର ହେଲ ବନ୍ଧାରେ କାଣ୍ଡ କାଣ୍ଡ
ଅନ୍ୟୋଽନ୍ୟ ଯୁଦ୍ଧରେ କମ୍ପିଲା ବ୍ରହ୍ମାଣ୍ଡ । ୨୧ ।
ଅକାଳେ ପ୍ରଳୟ କାଳ ହେଲା କିବା
ଅଦ୍ଭୁତ କର୍ମେ ସଭୟ ଦେବଦେବା । ୨୨ ।
ଅନିର୍ବଚନୀୟ ହୋଇଲା ତୁମୁଳ
ଅତି କ୍ରୋଧ ହେଲେ ନୀଳକଣ୍ଠ-ବାଳ । ୨୩ ।
ଅର୍କ ତେଜଃପୁଞ୍ଜ-ଧର ଶକ୍ତିଧାରୀ
ଅନଳୁଁ ବେଗେ ପିଙ୍ଗିଲେ ଶକ୍ତି ଧରି । ୨୪ ।
ଅଚଳେ କୁଳିଶପାତ ହେଲା ପ୍ରାୟେ
ଅସୁର ଅଙ୍ଗରେ ଭେଦି ପ୍ରାଣ ନିଏ । ୨୫ ।
ଅତତପ୍ତିକର ଦୂର ଗଲେ ଯଥା
ଅଙ୍ଗ ହୋଏ ମହୀ ସୁଖୀ ହେଲା ତଥା । ୨୬ ।

---

୧୬। ଅମରଷରେ—କ୍ରୋଧରେ (ସହି ନ ପାରି) । ଶକ୍ତିପାଣି—କାର୍ତ୍ତିକେୟ । ୧୭। ଅନ୍ତକବତ—ଯମପରି ।୧୮ ଅରି-ଅରିଷ୍ଟ—ଶତ୍ରୁର ଅନିଷ୍ଟକର ।୧୯। ନାଗେଶ୍ୱର ବାଦ୍ୟ—ଏକପ୍ରକାର ବାଦ୍ୟ ।୨୩। ଅନିର୍ବଚନୀୟ—ଅକଳନ୍ତ । ନୀଳକଣ୍ଠବାଳ—ଶିବପୁତ୍ର କାର୍ତ୍ତିକେୟ । ୨୪ । ଅର୍କତେଜଃପୁଞ୍ଜଧର—ସୂର୍ଯ୍ୟପରି ତେଜସ୍ୱୀ । ୨୫ । ଅଚଳେ—ପର୍ବତରେ । କୁଳିଶପାତ—ବଜ୍ରପତନ । ୨୬ । ଅତତପ୍ତିକର—ସୂର୍ଯ୍ୟ ।

ଅର୍କ ତାପିତ ହୋଇ ଯଥା ଚନ୍ଦନ
ଅମଙ୍ଗଳଙ୍କର ତଥା ହୋଇଲା ମନ । ୨୭ ।
ଅବ ଇତ୍ୟବସରେ ବଢାଇ ଆନନ୍ଦେ
ଅଇଲେ ଲୋଡ଼ଣି କୈଳାସକୁ ସ୍କନ୍ଦେ । ୨୮ ।
ଅଭ୍ୟସ୍ତେ ଭଲେ ସୁରେ ସ୍ୱଚ୍ଛେ ବିହାର
ଅନିଷ୍ଟ ଶଙ୍କା ଭୟ ନାହିଁ ଯାହାର । ୨୯ ।
ଅଳ୍ପକଳ୍ପନା ନୁହଇ ଏ ଚରିତ
ଅତିକଷ୍ଟେ ରଚେ ହେନ୍ତୁ ବସ୍ତ-ନାଥ । ୩୦ ।

—ଃ୍ଃଃ—

# ଅଷ୍ଟତ୍ରିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ
ଶୃଙ୍ଖଳା ମଧ୍ୟଯମକ

ଅମ୍ବିକା ବିଳାସ          ରସ ସାଭିଳାଷ
ହୋଇ ସଜ୍ଜନେ ପିଅନ୍ତୁ
ଅନ୍ତର ବାହାରେ          କଳୁଷ ବାହାରେ
ହେବଲ ଶୁଦ୍ଧ ଦିଅନ୍ତୁ । ୧ ।
ଅନ୍ତକ-ଉଦର—          ଦରଶନ-ଦର
ଏଥିଁ ନୁହନ୍ତା ନୟତ
ଅତରକାତରେ          ଅତଥ୍ୟ ଗୀତରେ
ମାତ ଦିନ ନ ନଅ ତ । ୨ ।

---

୨୭ । ଅମଙ୍ଗଳ—ଦେବତାଗଣଙ୍କର । ୨୮ । ସ୍କନ୍ଦେ—କାର୍ତ୍ତିକେୟ ।

---

ଅଷ୍ଟତ୍ରିଂଶ ଛାନ୍ଦ

୧ । ସାଭିଳାଷ—ଆଗ୍ରହଯୁକ୍ତ । ପିଅନ୍ତୁ—ପାନ କରନ୍ତୁ । ଅନ୍ତର—ଭିତର (ମାନସିକ) । ବାହାରେ (କାୟିକ) । କଳୁଷ ବାହାରେ—ପାପ ବ୍ୟତୀତ ଅନ୍ୟରେ ଅର୍ଥାତ୍ ପୁଣ୍ୟରେ । ୨ । ଅନ୍ତକ-ଉଦର-ଦରଶନ-ଦର—ଯମର ଗର୍ଭ ଦେଖିବା ଭୟ । ନୟତ—ନିଶ୍ଚିତ । ଅତରକାତରେ—ତର୍କଣା ନ କର । ଅତଥ୍ୟ— ଅସାର । ନ ନଅ ତ—ନଅ ନାହିଁ ।

ଅତଃପର ତାହିଁ ସାର ଜୀବକା ହିଁ
ସଂସାରରେ ନାହିଁ ଅଛି
ଅଚ୍ଛିନ୍ନ ପରମ— ଆନନ୍ଦରେ ରମ
ବିଷୟ କରିଦିଅ 'ଛି' । ୩ ।
ଅଛି କି ଏ ଜୀବ ବୋଲି ଏ ଯେ ଯିବ
ଅପ୍ରମାଣ ଏହା ଅଂଶ
ଅଶକତ କାଳ ଜାଣି ଆସି କାଳ—
ଦୂତ ଘୋଟିବେ ଶହଶ' ।୪।
ଅସମର୍ଥ ହେବ ବୋଲିବାକୁ ହେବ
ବୈକୁଣ୍ଠ ନରକ-ଅରି
ଅରିଧର-ରସ ବିନା ଘୋର ରସ—
ସିନ୍ଧୁ କେ ଯିବ ପହିଁରି । ୫ ।
ଅଦୃଷ୍ଟ ଇଦୃଶ ନୋହୁ ଜ୍ଞାନ-ଦୃଶ
ଘେନ ଦେଖ ନୁହ ଅନ୍ଧ
ଅନ୍ଧକନାଶନ— ବାମାକୁ ପ୍ରସନ୍ନ
କରି ନିଅ ଦିନଅଧ । ୬ ।

---

୩ । ଅତଃପର—ଏହାଠାରୁ ବଳି । ସାର—ଶ୍ରେଷ୍ଠ । ଜୀବକା– ଜୀବନ କଟାଇବାର ଉପାୟ । ଅଚ୍ଛିନ୍ନ ପରମାନନ୍ଦ—ଅଖଣ୍ଡ ଭଗବଦ୍ ବିଷୟକ ଆନନ୍ଦ । ରମ—ଆସକ୍ତ ହୁଅ । ବିଷୟ—ଭୋଗବିଳାସାଦିକୁ 'ଛିଃ' କରିଦିଅ ।୪। "ଏ ଜୀବ ଅଛି" ଏହା ବୋଲି କି ? ଅର୍ଥାତ୍ ଏ ଜୀବ ଅଛି, ଅତଏବ ରହିଥିବ, ଏପରି କହୁଅଛ କି ? ଏ ଯେ ଯିବ, ତାହାର ନାମ ଜୀବ(ଯିବ),ଅତଏବ ତାହାର ଯିବାହିଁ ସ୍ୱଭାବ । ଅଶକତ କାଳ—ଅକ୍ଷମତା ବେଳ । କାଳଦୂତ—ଯମଦୂତ । ଶହଶ'—ଶହ ଶହ ହୋଇ (ଅସଂଖ୍ୟ) । ୫ । ତେତେବେଳେ ତୁମ୍ଭେ ଅସମର୍ଥ ହେବ, ଅର୍ଥାତ୍ ତାକୁ ବାରଣ କରିବାକୁ ତୁମର କ୍ଷମତା ନ ଥିବ । ଅତଏବ 'ହେ ବୈକୁଣ୍ଠ' ! 'ହେ ନରକାରି' ଇତ୍ୟାଦି କହିବାକୁ ପଡିବ । ଅରିଧରରସ—ବିଷ୍ଣୁଭକ୍ତି । ଘୋର—ଭୟାନକ । ରସସିନ୍ଧୁ—ଅନୁରାଗ ସିନ୍ଧୁ ( ମମତା ରୂପକ ସମୁଦ୍ର) କିଏ ପହିଁରି ପାରିହେବ ? ୬ । ଅଦୃଷ୍ଟ—ଦୁର୍ଦ୍ଦଶା । ଇଦୃଶ—ଏ ପ୍ରକାର । ନୋହୁ—ନ ଘଟୁ । ଜ୍ଞାନଦୃଶ ଘେନ—ଜ୍ଞାନନେତ୍ରଦ୍ୱାରା ଦେଖ, ଅନ୍ଧ ହୁଅ ନାହିଁ । ଅନ୍ଧକନାଶନ-ବାମାକୁ—ଶିବଙ୍କ ଗୃହିଣୀ ଦୁର୍ଗାଙ୍କୁ । ପ୍ରସନ୍ନ କରି—ସନ୍ତୁଷ୍ଟ କରି । ଅଧ—ଅବଶିଷ୍ଟ ଦିନ କଟାଅ ।

ଅଧମୋଦ୍ଧାରିଣୀ    ପତିତତାରିଣୀ
ଅରିଷ୍ଟ–ମୂଷିକ–ଅହି
ଅହିତ ସୁହୃତ    ଯାହାର ନାହିଁ ତ
ନାହିଁ ପାପ ପୁନଅଁ ହିଁ । ୭ ।
ଅହିମକରଣ    ଅମୃତ–କିରଣ
ଅନଳ–ଆତ୍ମକ ଅକ୍ଷ
ଅକ୍ଷର–କାରଣ    ଅରକ୍ଷ–ଶରଣ
ସଂସାର–ସ୍ୟନ୍ଦନ–ଅକ୍ଷ । ୮ ।
ଅକ୍ଷରମାନଙ୍କ—    ର ମୂଳ ଜନକ
ନାହିଁ ଯା ସଂଖ୍ୟାକୁ ଅଙ୍କ
ଅଙ୍କରେ ସ୍ନେହର—    ତରେ ଛନ୍ତି ହର—
ଷରେ ଯେ ହର ଦିଅଙ୍କ । ୯ ।
ଅଙ୍କ ପରି କଳା    କେଶପରେ କଳା—
କରେ ଶୋଭି ସୁଧା–ଅଂଶୁ,

---

୭ । ଅଧମୋଦ୍ଧାରିଣୀ—ଅଜ୍ଞାନମାନଙ୍କର ପରିତ୍ରାଣକାରିଣୀ । ପତିତତାରିଣୀ — ପାପାଦିଦ୍ୱାରା ସନ୍ମାର୍ଗଚ୍ୟୁତ ବ୍ୟକ୍ତିଙ୍କର ପରିତ୍ରାଣକାରିଣୀ । ଅରିଷ୍ଟ-ମୂଷିକ-ଅହି— ଦୁର୍ଦ୍ଦଶାରୂପ ମୂଷାମାନଙ୍କୁ ନାଶ କରିବା ବିଷୟରେ ସର୍ପ ସଦୃଶ ଅଟନ୍ତି । ଯାହାର (ଅହିତ) ଶତ୍ରୁ, (ସୁହୃତ) ମିତ୍ର, ପାପ ପୁଣ୍ୟ କିଛି ନାହିଁ ।
୮—୯ । ଯେ ( ଅହିମକରଣ ) ସୂର୍ଯ୍ୟ ( ଅମୃତକିରଣ ) ଚନ୍ଦ୍ର (ଅନଳ) ଅଗ୍ନି (ଆତ୍ମକ) ରୂପ (ଅକ୍ଷି) ଲୋଚନ ବିଶିଷ୍ଟ, ଓ (ଅକ୍ଷର କାରଣ) ଅବିନାଶୀ ଓ ଜଗତର ମୂଳ କାରଣ (ଅରକ୍ଷଶରଣ) ଅଗତିର ଗତି ସଂସାର ରୂପ (ସ୍ୟନ୍ଦନର) ରଥର (ଅକ୍ଷ) ଅଖ ଏବଂ ଯେ (ଅକ୍ଷରମାନଙ୍କର) ଶବ୍ଦ ବ୍ରହ୍ମ ବର୍ଣ୍ଣମାତୃକାର (ମୂଳଜନକ) ପ୍ରଥମ ସୃଷ୍ଟିକର୍ତ୍ତା, ଯାହାର ସଂଖ୍ୟାକୁ ଅଙ୍କ ନାହିଁ । ଅର୍ଥାତ୍ ଯେ ସର୍ବରୂପରେ ବିଦ୍ୟମାନ ଥିବାରୁ ଗଣନା କରି ହୁଅନ୍ତି ନାହିଁ । ଏହି ପ୍ରକାର (ହର ଦିଅଁଙ୍କ) ହରନାମକ ଦେବତାଙ୍କର (ଅଙ୍କରେ) କୋଳରେ ସ୍ନେହରେ ରତ ହୋଇ ଯେ (ଦୁର୍ଗା) ଅଛନ୍ତି ।୧୦ । (ଅଙ୍କ)କଳଙ୍କ, କଜ୍ଜଳ ପରି କଳାବର୍ଣ୍ଣ କେଶ ଉପରେ ( କଳାକରେ) ଏକ କଳାରୂପରେ (ସୁଧାଅଂଶୁ) ଚନ୍ଦ୍ର ଶୋଭି ପାଉଅଛନ୍ତି ।

ଅଂଶୁକେ ଶୋଭନ ଅଙ୍ଗ ବିଲୋଭନ
ଅଞ୍ଚଳ ଖସିଛି ଅଂସୁ । ୧୦ ।
ଅଂଶକେ ସକଳ ସୁରଙ୍କର କୁଳ
ନତ୍ୟ କରିଛନ୍ତି ଅଙ୍ଗ
ଅଙ୍ଗନା-ଜଗତୀ ଜିଣେ ନେତ୍ରଗଣ୍ଡ
ଆଶ୍ରୟେ ନାହିଁ ଯା ଅଙ୍ଗ । ୧୧ ।
ଅଙ୍ଗଦ-ପ୍ରକର କରେ ଶୋଭାକର
ଶ୍ରୀମୁଖ ସୁନ୍ଦର ଅତି
ଅତିକ୍ରମି ନର— କରୁ ପାପିନର
ଯା ଦେଖି ମୁକ୍ତ ହୁଅନ୍ତି । ୧୨ ।
ଅନ୍ତକେ ଯାହାର ଅଛନ୍ତି ବିହାର—
ଆଶେ ଅନୁସରି ଅଜ
ଅଜପାମନ୍ତ୍ରେ ତନ୍ତ୍ରାଦି ଯନ୍ତ୍ରରେ
ଭଜନ୍ତି ଯାହାକୁ ଅଜ । ୧୩ ।

---

ଅଂଶୁକେ—ବସ୍ତ୍ରଦ୍ୱାରା ବିଲୋଭନ—ମନୋହର,ଅଙ୍ଗ,ଶୋଭନ—ସୁନ୍ଦର । ଅଞ୍ଚଳ—ପଣତ, ଅଂସୁ—କାନ୍ଧରୁ । ୧୧ । (ଅଂଶୁକେ) ଗୋଟିଏ କିରଣରେଖାରେ ଅଥବା ଅଂଶକରେ(ସକଳ ସୁରଙ୍କର କୁଳ)ଦେବତାମାନେ (ନତ୍ୟ)ସର୍ବଦା (ଅଙ୍ଗ କରିଛନ୍ତି) ଶରୀର ରକ୍ଷା କରିଛନ୍ତି । ଯାହାର (ନେତ୍ରଗଣ୍ଡ) ଆଖିର ଭଙ୍ଗୀ (ଅଙ୍ଗନା-ଜଗତୀ)ସ୍ତ୍ରୀ ସୃଷ୍ଟିକୁ (ଜିଣେ)ଜିଣୁଛି, ଯାହାର ଯେଉଁ ଚକ୍ଷୁଭଙ୍ଗୀର (ଆଶ୍ରୟେ) ଆଧାର ହେବା ପାଇଁ ଅଙ୍ଗ ଅପର କାହାକୁ (ଆଶ୍ରୟେ) ଆଶ୍ରୟ କରି ନାହିଁ, ଅର୍ଥାତ୍ ଏପରି ଚକ୍ଷୁଭଙ୍ଗୀ ଆଉ କାହାରିଠାରେ ଦେଖାଯାଏ ନାହିଁ । ୧୨ । ଅଙ୍ଗଦ-ପ୍ରକର—କଙ୍କଣସମୂହ । କରରେ—ହସ୍ତରେ । ଶୋଭାକର—ସୁନ୍ଦର । ଶ୍ରୀମୁଖ ଅତିସୁନ୍ଦର । (ଯା) ଯେଉଁ ଶ୍ରୀମୁଖ ଦେଖି, (ପାପିନର) ପାପିଲୋକ ନରକରୁ ମୁକ୍ତ ହୁଅନ୍ତି । ୧୩ । ଯାହାଙ୍କର (ଅନ୍ତକରେ) ନିକଟରେ (ବିହାର ଆଶେ) କ୍ରୀଡ଼ା ଉଦ୍ଦେଶ୍ୟରେ (ଅଜ) ଶିବ ଅନୁସରି ଅଛନ୍ତି । (ଅଜ) ବ୍ରହ୍ମା (ଅଜପା ମନ୍ତ୍ରରେ) (ହଂ ସଃ) ମନ୍ତ୍ରରେ ତନ୍ତ୍ରମନ୍ତ୍ରାଦିରେ ଯାହାଙ୍କୁ ଭଜନ କରନ୍ତି ।

ଅଯତ୍ନ ତାଙ୍କର ସେବାରେ ନ କର
ମୂଢ଼ ମନ ଅନ୍ତଅନ୍ତ
ଅନ୍ତସମୟକୁ ଅନ୍ତକ-ଭୟକୁ
ସେ'ଟି ବୋଲେ ଭଞ୍ଜନାଥ । ୧୪ ।

---

# ଊନଚତ୍ୱାରିଂଶ ଛାନ୍ଦ

## ଭାଗବତ ବୃତ୍ତେ

ଅନ୍ତଃକରଣ କର ଶାନ୍ତ ଅଥ ଶୁଣ ହେ ସୁପଣ୍ଡିତ ।୧।
ଅମ୍ବିକାବିଳାସ କବିତ୍ୱ ଅବଧେ ହେଲା ସମାପତ । ୨ ।
ଅନ୍ତର୍ଗତ ମୋ ତୃପ୍ତ ନୁହେଁ ଅପେକ୍ଷା ଏଥି କିଛି ରହେ ।୩।
ଅମୂଲ୍ୟ ଦେବତା ଦେଉଳ ଅଟ୍ଟାଳୀ ସରଃ ପୁର କୁଳ ।୪।
ଅମାନେ ହେଲେ ଏ ନିର୍ମିତ ଅବଶ୍ୟ ହେଲେ ପ୍ରତିଷ୍ଠିତ ।୫।
ଅନ୍ତଃକରଣ ହୁଏ ସିଦ୍ଧ ଅଖିଳେ ହୁଏ ସେ ପ୍ରସିଦ୍ଧ । ୬ ।
ଅତଃ ଧାରଣ୍ଟି ଏ ମୋ ଗୀତ ଅଟେ ସୁବର୍ଣ୍ଣପୁର ସତ ।୭।

---

୧୪ । ରେ ମୂଢ ମନ (ତାଙ୍କର) ସେହି ଜଗଜ୍ଜନନୀଙ୍କର ସେବାରେ ଅଯତ୍ନ କର ନାହିଁ । (ଅନ୍ତ ସମୟକୁ) ଶେଷ କାଳକୁ ( ଅନ୍ତକ ଭୟକୁ ) ଯମଭୟକୁ (ସେଟି) ଏକମାତ୍ର ଉଦ୍ଧାର ଉପାୟ ।

### ଊନଚତ୍ୱାରିଂଶ ଛାନ୍ଦ

୧ । ଅନ୍ତଃକରଣ—ମନ । ୩ । ଅନ୍ତର୍ଗତ—ଅନ୍ତଃକରଣ

୪-୬ । ଉତ୍କୃଷ୍ଟ ଦେବମନ୍ଦିର, ବଗିଚ୍ଚ, ପୋଖରୀ, ନଗର, ଗୃହ ଏମାନେ ଅସଂଖ୍ୟ ଭାବେ ନିର୍ମିତ ହେଲେ ଅବଶ୍ୟ ପ୍ରତିଷ୍ଠା କରାଯାଏ । ତଦ୍ଦ୍ୱାରା କର୍ତ୍ତାର ମନ ପବିତ୍ର ହୁଏ । ସେ ଜଗତର ପ୍ରସିଦ୍ଧ ହୁଏ ।୭। ଏଣୁ ମୋର ଏ ଗୀତ ମୋର ସ୍ୱର୍ଣ୍ଣ ନିର୍ମିତ ବୃହତ୍ପଦ୍ମ ଅଟେ । ଅତଏବ ବର୍ତ୍ତମାନ ଏହାର ପ୍ରତିଷ୍ଠା କରାଯାଉ ।

ଅମ୍ବିକା-ସଂକଳ୍ପ ଉଚ୍ଚାରି ଅବର୍ଣ୍ଣ ଆଦି ଶୁଭ କରି ।୮।
ଅନେକ ଖମ୍ବ—ସ୍ୱଗ ବାଣୀ ଅଥ ବସିଛି ପଦ—ଶେଣୀ ।୯।
ଅକ୍ଷରମାନେ ରୁଅ କୁଳ ଅନୁପ୍ରାସାଦି ଓସମୂଳ ।୧୦।
ଅନ୍ତର୍ନିୟମ ଯେ ଗୁଈ ଅଭଙ୍ଗ-ଶ୍ଳେଷ ପେଣ୍ଡାବ୍ରଜ ।୧୧।
ଅନ୍ତର ଭମମାନେ ଛଳ ଅଛେ କି ଆସି ଦୃଷ୍ଟିକୂଳ ? ।୧୨।
ଅନୁଲୋମାଦି ଚକ୍ରବନ୍ଧ ଅଛେ ସେ ପିତ୍ତୁଳା-ବବନ୍ଧ ।୧୩।
ଅସ୍ଫୁଟ ଭଙ୍ଗୀ ଛନ୍ଦ ବୃତ୍ତ ଅଛନ୍ଦ ଲତା ନନ୍ଦାବ୍ରତ ? ।୧୪।
ଅକ୍ଷର ସ୍ୱର ମିଶ ବତା ଅର୍ଥ ଯେ ଗଣ୍ଡି ପାଠସୂତା ।୧୫।
ଅଲଙ୍କାରାଦି କାବ୍ୟଗାଡ ଅସମ ବତାନର ଦ୍ୟୁତ ।୧୬।
ଅଷ୍ଟ ଯେ ଏକ ସ୍ଫୁଟ ରସ ଅଗାର ଭିତ୍ତି ସେ ପ୍ରକାଶ ।୧୭।
ଅତି ସୁରସ ପଦ ଗୁଣ ଅନଳାୟନ ସେ ଟି ଜାଣ ।୧୮।
ଅନେକ ଅର୍ଥ ପଦ କଷ୍ଟ ଅସନ୍ଧି କୋଇପ କବାଟ ।୧୯।
ଅସ୍ଫୁ ଭୋଦସ୍ତ ସୁମନସ ଅହଂସା ଯଶଃ ସୁପ୍ରକାଶ ।୨୦।
ଅମଳ ଗୁଣାଦି ଲକ୍ଷଣ ଅଛେ ସେ ସୌଧ-ଶୋଭା ଜାଣ ।୨୧।
ଅନ୍ତ ସ୍ୱେପିତ ପୁର ଧରି ଅଛେ ଏ ପୁସ୍ତକ ପାଚେରି ।୨୨।
ଅନେକ ଦ୍ରବ୍ୟ ଖର୍ଚ୍ଚ କରି ଅବଘ୍ନେ ତୋଳିଛି ଏ ପୁରୀ ।୨୩।
ଅନ୍ତଃକରଣ ସୁକାଞ୍ଚନ ଅପରେ ପଞ୍ଚରତ୍ନ ମନ ।୨୪।
ଅହର୍ନିଶରେ ଏହା ଦେଇ ଅକ୍ଷ-ବନ୍ଧାଣୀ କି ଲଗାଇ ।୨୫।

---

୮-୧୦ । ପ୍ରଥମେ 'ଅମ୍ବିକା' ନାମରୂପ ସଂକଳ୍ପ ଉଚ୍ଚାରଣ କରି ଅକାର ନିୟମକୁ 'ଶୁଭ' (ଆରମ୍ଭ) କଲି । ସ୍ୱଗ ଓ ବାଣୀ ଗୁଡ଼ିକ ଏହାର ଖମ୍ବ, ପଦଗୁଡ଼ିକ ଶେଣୀ, ଅକ୍ଷରମାନେ ରୁଅ, ଅନୁପ୍ରାସାଦି ଶବ୍ଦାଲଙ୍କାରମାନେ ଓସ ଇତ୍ୟାଦି । ୧୬ । ବତାନ—ଚାନ୍ଦୁଆ । ୧୭ । ଅଷ୍ଟ ଯେ ଏକ—ନଅ । ଅଗାରଭିତ୍ତି—କାନ୍ଥ । ୧୮ । ଅନଳାୟନ—ଝରକା । ୨୨ । ଏହି ପ୍ରକାର ସ୍ୱର୍ଣ୍ଣପୁରକୁ ଏହି ପୁସ୍ତକ ପାଚେରି ବେଢି ରହିଲି । ୨୪ । ଦ୍ରବ୍ୟର ସଂଖ୍ୟା ଦେଖାଉଅଛନ୍ତି । ଅନ୍ତଃକରଣ—ହୃଦୟରୂପ ଉତ୍ତମ ସୁନା । ପଞ୍ଚମନ ରୂପ ପଞ୍ଚରତ୍ନ ।୨୫। ଅହର୍ନିଶି—ସର୍ବଦା । ଅକ୍ଷବାନ୍ଧାଣି—ଇନ୍ଦ୍ରିୟରୂପ କାରିଗରକୁ (କର, ଚକ୍ଷୁ ପ୍ରଭୃତି କର୍ମ ଓ ଜ୍ଞାନେନ୍ଦ୍ରିୟମାନଙ୍କୁ) ।

ଅମାନ ପ୍ରକୃତି ପ୍ରବଳ ଅଚଳେ ନାଶିଥାନ୍ତି ମୂଳ ।୨୬।
ଅନେକ ଅବଧାନ ବନ ଅନ୍ୱେଷେ ଖୋଜ ପୁନଃ ପୁନଃ । ୨୭ ।
ଅନୁରୂପେ ଏ ପୁର ସମ ଅଛିଦ୍ର କାଷ୍ଠାବଳି ରମ୍ୟ । ୨୮ ।
ଅଣାଇ କରୁଛି ନିର୍ମିତ ଅଛି ହେବାକୁ ପ୍ରତିଷ୍ଠିତ । ୨୯ ।
ଅହିଂସା-ସଂକଳ୍ପ ବିଧାନ ଅଗ୍ରେ କର ହେ ସାଧୁଜନ । ୩୦ ।
ଅଟ ଚତୁର-ମୁଖ ସତ ଅଛି କି ତୁମ୍ଭର ଅକୃତ । ୩୧ ।
ଅତି ନିର୍ମଳ ତୁମ୍ଭ ଦ୍ୱିଜେ ଅଛନ୍ତି ରସଜ୍ଞା ଆଗୁର୍ଯ୍ୟେ । ୩୨ ।
ଅଳ୍ପ ନିଯୁକ୍ତ ତାଙ୍କୁ କର ଅନ୍ୟଥା ଏଥିରେ ନ କର । ୩୩ ।
ଅଟନ୍ତି ମନ ପଞ୍ଚାମୃତ ଅଗରେ କର ତା ସଂସ୍କୃତ । ୩୪ ।
ଅପୂର୍ବ ବିଧି କର୍ଣ୍ଣ-କୁଣ୍ଡେ ଅନୁଶ୍ରବଣ-କର୍ମକାଣ୍ଡେ । ୩୫ ।
ଅବିଘ୍ନ ରୂପ ହୋମ-ଦ୍ରବ୍ୟ ଅସ୍ତୁ ଉଚାର ପ୍ରିୟ-ଭବ୍ୟେ । ୩୬ ।

---

୨୬ । (ପ୍ରକୃତି) ଜଳ ଅଗ୍ନି ଆଦି (ଅମାନ ପ୍ରବଳ) ଅତି ପ୍ରବଳ ହୋଇ ଗୃହକୁ (ଅଚଳେ) ସ୍ଥିର ଭାବେ ମୂଳରୁ ଭାଙ୍ଗିଦିଅନ୍ତି । ଗୃହ ଉପକରଣରେ କାଠ ଦ୍ରବ୍ୟ ଶକ୍ତିହୀନ ହେଲେ ସେ ଯେପରି ଭାଙ୍ଗିପଡ଼େ, ସେହିପରି ପଦ, ବାକ୍ୟ ପ୍ରଭୃତି କାବ୍ୟ ନିର୍ମାଣ କାଳରେ ଅବିସ୍ମରିତ କରି ପ୍ରୟୋଗ କରିଥିଲେ ସେ ମଧ୍ୟ ନଷ୍ଟ ହୁଏ । ୨୭-୨୯ । (ଅବଧାନ) ଏକାଗ୍ରତା ରୂପ ବନ ବାରମ୍ବାର ଖୋଜି ଖୋଜି (ଅନୁରୂପେ) ଯଥାଯୋଗ୍ୟ ଭାବେ ଏ (ପୁରସମ) ଗୃହର ଉପଯୋଗୀ (ଅଛିଦ୍ର) ଉଇଁର ବାଦ୍ଧା ପ୍ରଭୃତିରହିତ (କାଷ୍ଠାବଳି) କାଠସମୂହ ଅଣାଇ ଏ ପୁର କରିଛି । କେବଳ ପ୍ରତିଷ୍ଠିତ ହେବା ପାଇଁ ଅଛି । ୩୦-୩୪ । ହେ ସାଧୁଜନମାନେ ! ଆପଣ-ମାନେ ଏହାର ପ୍ରତିଷ୍ଠା କାର୍ଯ୍ୟ କରନ୍ତୁ । ପ୍ରଥମେ (ଅହିଂସା) ଈର୍ଷାବଶତଃ ଦୋଷ ଆବିଷ୍କାର ନ କରିବା ରୂପ ନିୟମକୁ ସଙ୍କଳ୍ପରୂପେ ଉଚ୍ଚାରଣ କର । ଆପଣମାନେ ତ (ଚତୁର ମୁଖ) ପ୍ରତିଷ୍ଠାପକ୍ଷେ ବ୍ରହ୍ମା, କାବ୍ୟପକ୍ଷେ, (ଚତୁର) ଦକ୍ଷ ମୁଖବିଶିଷ୍ଟ । ଅକୃତ —ଅସ୍ପଷ୍ଟ । ତୁମ୍ଭର ନିର୍ମଳ ଦ୍ୱିଜେ—ପ୍ରତିଷ୍ଠାପକ୍ଷେ, ବ୍ରାହ୍ମଣ; ଅନ୍ୟପକ୍ଷେ—ଦନ୍ତ-ମାନେ । ରସଜ୍ଞା—ପ୍ରତିଷ୍ଠାପକ୍ଷେ "ରସୋବୈ ସଃ" ଏହି ବେଦୋକ୍ତି ଅନୁସାରେ 'ରସ' ଅର୍ଥାତ୍ ବ୍ରହ୍ମ (ରସଜ୍ଞ)—ବ୍ରହ୍ମଜ୍ଞାନୀ, କାବ୍ୟ ପକ୍ଷେ—ଜିହ୍ୱାରୂପ ଆଗୁର୍ଯ୍ୟ । ୩୪ । ପଞ୍ଚମନ ରୂପ ପଞ୍ଚାମୃତକୁ ପ୍ରଥମେ ସଂସ୍କାର କର; କାବ୍ୟପକ୍ଷେ ଃ—ସରଳ (ଦୋଷଶୂନ୍ୟ) କର । ୩୫ । ଅନୁଶ୍ରବଣ—ଶୁଣିବା ।

ଅବଶ୍ୟ-ପ୍ରତ୍ୟକ୍ଷ ଏ ହେବ ଅକ୍ଷି ପାଇବା ପରି ଜୀବ । ୩୭ ।
ଅନଳ ଦହନ କୁନ୍ଦନ ଅଂସେ ହୋଇବ ସୁବନ୍ଧନ । ୩୮ ।
ଅତୃପ୍ତ ହୋଇଲେ ସାଧବେ ଅବଶ୍ୟ ଲୋକେ ଦୋଷ ଦେବେ ।୩୯।
ଅପାର ପୁନରୁକ୍ତି ଅଛୁ ଅବା ବୋଲିବ କେହୁ ବାଛୁ । ୪୦ ।
ଅଧିକ ନୋହିଲା ସରଳ ଅର୍ଥ ତ ନୋହିଲା ତରଳ । ୪୧ ।
ଅପ୍ରଚୁର ଏ ଶବ୍ଦମାନ ଅଲଙ୍କାରରୁ ହେଲା ଭିନ୍ନ । ୪୨ ।
ଅନ୍ତରେ ଗର୍ବ କେ ବହିବେ ଅଜ୍ଞାନ କବିଏ କହିବେ । ୪୩ ।
ଅମରଷରେ ବାଣୀ ଭଣି ଅନ୍ତର ହେବେ କେ ନ ଶୁଣି । ୪୪ ।
ଅହି ସ୍ୱରୂପ ଯେଉଁମାନେ ଅବଶ୍ୟ ଦଂଶିବେ ସେମାନେ । ୪୫ ।
ଅଢାଇ ଚରଣିଆ ପଦ ଅଟଇ ଏ ମୋ ଗୀତପଦ । ୪୬ ।
ଅଲକ୍ଷ୍ୟେ ଯିବ ତାଙ୍କ ଶ୍ରେଷ୍ଠ ଅମ୍ଭିକାନାମ ଯେ ଅଛାଟ । ୪୭ ।
ଅଛନ୍ତି ବଡ ବଡ କବି ଅଟନ୍ତି ନାମେ କବି-ରବି । ୪୮ ।
ଅଟେ କେ ଅବା କବିଚନ୍ଦ୍ର ଅଟେ କେ କବିକୁଳ-ଇନ୍ଦ୍ର । ୪୯ ।
ଅମ୍ବୁଧି ତାଙ୍କ ବୁଦ୍ଧିବଳ ଅନନ୍ତ ଶାସ୍ତ୍ରେ ସେ କୁଶଳ । ୫୦ ।
ଅକ୍ଷର ଗୋଟି ପାଞ୍ଚ ସାତ ଅର୍ଥକରଣେ କେ ସମର୍ଥ । ୫୧ ।
ଅଭିଧାନରୁ ଶାସ୍ତ୍ରଯାଏ ଅଧରେ ନୃତ୍ୟ କରୁଥାଏ । ୫୨ ।
ଅପାର ନୀରନିଧି ପାଶେ ଅଦ୍ରି-ସରିତ ଯେଉଁ ଆଶେ । ୫୩ ।
ଅର୍କ ଆଗରେ କ୍ଷୁଦ୍ର ତାରି ଅବ୍‌ଜକୁ ଖଦ୍ୟୋତର ପରି । ୫୪ ।
ଅମାନ କବିଙ୍କ କବିତ୍ୱ ଅଗ୍ରେ ମୋ ଏ ଗୀତ ତେମନ୍ତ । ୫୫ ।

---

୩୭। ଅକ୍ଷି—ଆଖି ।୩୮। ଅନଳ ଦହନ କୁନ୍ଦନ—ନିଆଁରେ ପୋଡ଼ା ହୋଇଥିବା ସୁନା। ୪୦। ଆଶଙ୍କିତ ଦୋଷର ବିବରଣ ଦେଉଛନ୍ତି । ପୁନରୁକ୍ତି—ଏକ ଶବ୍ଦର ଏକ ଅର୍ଥରେ ବାରମ୍ବାର ପ୍ରୟୋଗ ।୪୧। ତରଳ—ପରିଷ୍କାର; ଅସନ୍ଦିଗ୍ଧ ।୪୪। ଅମରଷରେ—ସହି ନ ପାରି ।୪୫। ଅହିସ୍ୱରୂପ—ସାପପରି (ଖଳ) ।୪୬। ଅଢାଇଚରଣିଆ ପଦ—ଅଢାଇ ଚରଣବିଶିଷ୍ଟ ମନ୍ତ୍ର । (ଅଢାଇ ଚରଣିଆ ପଦ ଅଣଲେଉଟ ବୋଲି ପ୍ରବାଦ ଅଛି) । ୪୭। ଶ୍ରେଷ୍ଠ—କାମୁଡ଼ା । ୫୦ । ଅମ୍ବୁଧି—ସମୁଦ୍ରପରି ବିସ୍ତୃତ । ୫୩-୫୫। ଅପାର ସମୁଦ୍ର ପାଖରେ ଗିରିନଦୀ ପରି, ସୂର୍ଯ୍ୟ ଆଗରେ କ୍ଷୁଦ୍ର ତାରା ପରି, ଚନ୍ଦ୍ର ପାଖରେ (ଖଦ୍ୟୋତ) ଜୁଳୁଜୁଳିଆ ପୋକ ପରି, ଅସଂଖ୍ୟ କବିଙ୍କ (କବିତ୍ୱ) କବିତା ନିକଟରେ ମୋର ଏ ଗୀତ (ହେୟ) ।

ଅନ୍ତରେ ଭାବି ଏହି କଥା ଅଧିକ ମନେ ହେଲା ବ୍ୟଥା । ୫୬ ।
ଅର୍କ ଚରିତ ଲେଖିଥିଲି ଅପାର ଭୟେ ନିବର୍ତ୍ତିଲି । ୫୭ ।
ଅଥ ଏମନ୍ତେ କେତେ ଦିନେ ଅନୁସନ୍ଧାନ ହେଲା ମନେ । ୫୮ ।
ଅସତ କାବ୍ୟ ଏ ନୁହଇ ଅବଶ୍ୟ ଏଥିଁ ଗତି ଥାଇ । ୫୯ ।
ଅତି ମହିମା ସାଧୁଗଣ ଅବା ସେ କରିବେ ଗ୍ରହଣ । ୬୦ ।
ଅବ୍ଜ ଯେସନେ ସର୍ବଠାବେ ଅଂଶୁ ପକାଏ ସମଭାବେ । ୬୧ ।
ଅନନ୍ତ ଯଥା ନୋହେ ଲକ୍ଷି ଅଙ୍ଗ-ବଳରେ ଉଡ଼େ ପକ୍ଷୀ । ୬୨ ।
ଅଯୁତ ଲକ୍ଷ କୋଟି କ୍ରମେ ଅର୍ବୁଦ ପର୍ଯ୍ୟ ଯେ ଗମେ । ୬୩ ।
ଅନ୍ତ ନୁହଇ ତଥାପି ସେ ଅର୍ଥ ଶବ୍ଦହିଁ ଏହି ଆଶେ । ୬୪ ।
ଅଦୃଶ୍ୟ ଅଣୁଠାରୁ ସ୍ଥୂଳ ଅଶେଷ ପୂର୍ଣ୍ଣ ଶବ୍ଦକୁଳ । ୬୫ ।
ଅଚିନ୍ତ୍ୟ ଶବ୍ଦବ୍ରହ୍ମ ସାର ଅଷ୍ଟଲୋଚନେ ଅଗୋଚର । ୬୬ ।
ଅବଧି ଏ ବ୍ୟାକରଣ ଭାବ ଅର୍ଥ ଜାଣନ୍ତି ଏକା ଶିବ । ୬୭ ।
ଅନ୍ତରେ ଘେନିଲେ ଏମନ୍ତ ଅଜ୍ଞ ବୋଲାଇବେ ପଣ୍ଡିତ । ୬୮ ।
ଅତଃ କାରଣୁଁ ବୁଦ୍ଧି ଜାଣି ଅବଶ୍ୟ ପ୍ରବର୍ତ୍ତିବ ପ୍ରାଣୀ । ୬୯ ।
ଅଛନ୍ତି କେତେ ବିଦ୍ୟାଗଣ ଅଷ୍ଟ ଏକ ଯେ ବ୍ୟାକରଣ । ୭୦ ।
ଅନେକ କାବ୍ୟ ସୁନାଟକ ଅଲଙ୍କାରାଦି ଶାସ୍ତ୍ର ଯାକ । ୭୧ ।
ଅଥ ଜ୍ୟୋତିଷ ଶିଳ୍ପବିଦ୍ୟା ଅଶେଷ ନୁହନ୍ତି ସେ ଭେଦ । ୭୨ ।
ଅଧ୍ୟୟନ ଏ ସର୍ବେ ହେବେ ଅଭୀଷ୍ଟ ପୂର୍ଣ୍ଣ ନୋହେ ତେବେ ।୭୩।
ଅଛନ୍ତି ଯେତେ ଶାସ୍ତ୍ରମାନେ ଅର ପର ଏ ବିଦ୍ୟାମାନେ । ୭୪ ।
ଅଙ୍ଗକୁ ବୋଲଇ କେ ନିତ୍ୟ ଅବା ବୋଲି କେ ଜୀବ ସତ୍ୟ ।୭୫।
ଅପରେ ଜନ୍ମାନ୍ତର ନାହିଁ ଅଛି ବୋଲି କେ ଅବା କହି । ୭୬ ।

---

୫୮ । ଅନୁସନ୍ଧାନ ହେଲା ମନେ ଅର୍ଥାତ୍ ମନରେ ଅଭିଳାଷ ଜାତ ହେଲା । ୬୧ । ଅବ୍ଜ—ଚନ୍ଦ୍ର , ଅଂଶୁ—କିରଣ । ୬୨ । ଅନନ୍ତ—ଆକାଶ । ୬୪ । ଏହି ଆଶେ—ଏହିପରି । ୬୬ । ଅଚିନ୍ତ୍ୟ – ଚିନ୍ତାର ବିଷୟକୁ ଅତିକ୍ରାନ୍ତ । ଶବ୍ଦବ୍ରହ୍ମ—ନାଦବ୍ରହ୍ମ । ଅଷ୍ଟଲୋଚନ—ବ୍ରହ୍ମା ।୬୭। ଅବଧି—ସମୁଦ୍ର ।୬୯। ବୁଦ୍ଧି ଜାଣି—ନିଜ ଜ୍ଞାନ ଅନୁସାରେ ।୭୦। ଅଷ୍ଟଏକ—ନଅ । ୭୩ । ଅଭୀଷ୍ଟ—କାମନା ।୭୪। ଅରପର – ଶତ୍ରୁତୁଲ୍ୟ ଅର୍ଥାତ୍ ପରସ୍ପର ବିରୋଧୀ ।

| | |
|---|---|
| ଅଧର୍ମ ଧର୍ମ ଏକ ଯୋଗ | ଅଧନ ମୁକ୍ତି ଭିଇ ସ୍ୱର୍ଗ । ୭୭ । |
| ଅପାର ରୂପେ ଯେ କହନ୍ତି | ଅଚ୍ୟୁତଭାବ ନାହିଁ ଏଥି । ୭୮ । |
| ଅନନ୍ତ ବିଦ୍ୟାଫଳ ଏହି | ଅନନ୍ତ ଭକ୍ତି ଯେବେ ହୋଇ ।୭୯। |
| ଅତି ଦୁର୍ଲ୍ଲଭ ନର ଜୀବ, | ଅପେକ୍ଷା କରୁଛନ୍ତି ଦେବ । ୮୦ । |
| ଅମୃତ କୃଷ୍ଣଭକ୍ତି ଫଳ | ଅଭାବେ ମାତ୍ର ସେ ନିଷ୍ଫଳ । ୮୧ । |
| ଅଚ୍ୟୁତ ଶିବ ଏ ଅଭିନ୍ନ | ଅମ୍ବିକା ରାଧିକା ଯେସନ । ୮୨ । |
| ଅନ୍ତର ଏଥି କିଛି ନାହିଁ | ଅଜ୍ଞାନୀ ଭେଦ କରୁଥାଇ । ୮୩ । |
| ଅନାଇଁ ଯେଉଁରୂପେ କ୍ଷୀର | ଅନେକ ରୂପ ହୁଏ ତାର । ୮୪ । |
| ଅମୂଲ୍ୟ ଦଧି ଛେନା ଘୃତ | ଅଧାମ ଚଲ୍‌ହା ନବନୀତ । ୮୫ । |
| ଅନେକ ହୁଅଇ ବିକାରୁଁ | ଅଟନ୍ତି ସର୍ବେ ଜାତ କ୍ଷୀରୁଁ । ୮୬ । |
| ଅନାଦି ବ୍ରହ୍ମ ତଥା ନିତ୍ୟ | ଅଟେ ପ୍ରକୃତି ତାର କୃତ୍ୟ । ୮୭ । |
| ଅମ୍ବୁଜାସନ ବିଷ୍ଣୁ, ଶିବ | ଅଗ୍ରେ ଜନ୍ମିଲେ ତିନି ଦେବ । ୮୮ । |
| ଅଟନ୍ତି ତ୍ରିଗୁଣ ଏ ତିନି | ଅବ୍ୟକ୍ତଜନ୍ମା ରଜଃଗୁଣୀ । ୮୯ । |

---

୭୭-୭୮ । ଅଧର୍ମ, ଧର୍ମ, ସ୍ୱର୍ଗ, (ନରକ), ମୃତ୍ୟୁ ଓ ମୁକ୍ତି, ଏ ସମସ୍ତ (ଏକଯୋଗ) ସମାନ, ଅଭିନ୍ନ, ବୋଲି ନାନାପ୍ରକାର କହନ୍ତି । କିନ୍ତୁ ଏଥିରେ ( ଅଚ୍ୟୁତ ଭାବ ) ଈଶ୍ୱରଭକ୍ତି ନାହିଁ । ୭୯ । ଅନନ୍ତ—ଅସୀମ ପରମେଶ୍ୱରଙ୍କଠାରେ ଭକ୍ତି ହିଁ ଅନନ୍ତ ବିଦ୍ୟାର ଫଳ ଅଟେ ।୮୦। ଏହି ମନୁଷ୍ୟର ଶରୀର ଅତି ଦୁର୍ଲ୍ଲଭ । ଏହାକୁ ଦେବତା ମଧ୍ୟ ଲାଭ କରିବାକୁ ଅପେକ୍ଷା କରୁଅଛନ୍ତି । ୮୧। କୃଷ୍ଣଭକ୍ତି ହିଁ ଶେଷଫଳ (ଅମୃତ) ମୋକ୍ଷ ଅଟେ; ଅତଏବ ଶ୍ରୀକୃଷ୍ଣ ଭକ୍ତି ନ ଥିଲେ (ମନୁଷ୍ୟର ଜନ୍ମ) ନିଷ୍ଫଳ ହୋଇ-ଯାଏ । ୮୨-୮୩ । ଯେ ଶିବ, ସେହି କୃଷ୍ଣ, ଯେ ପାର୍ବତୀ, ସେହି ରାଧା, ଏଥିରେ କୌଣସି ଭେଦ ନାହିଁ; କିନ୍ତୁ ଅଜ୍ଞାନ ବ୍ୟକ୍ତିମାନେ ଏହାଙ୍କୁ ଅଲଗା ବୋଲି କହୁଥାନ୍ତି । ୮୪-୮୭ । ଦେଖ, ଯେପରି ଦୁଗ୍ଧ ବିକାରପ୍ରାପ୍ତ ହେଲେ ଦହି, ଛେନା, ଅଧାମ, ଚହ୍ଲା, ଲହୁଣୀ ପ୍ରଭୃତି ନାନା ନାମ ଧାରଣ କରେ, କିନ୍ତୁ ସେ ସମସ୍ତର ମୂଳ ଏକମାତ୍ର ଦୁଗ୍ଧ , ସେହିପରି ଏକ ଅନନ୍ତ ବ୍ରହ୍ମ ନିତ୍ୟ ଅଟନ୍ତି । ଏହି ପଞ୍ଚଭୂତ ତ୍ରିଗୁଣାତ୍ମିକା ପ୍ରକୃତି ତାହାଙ୍କର ବିକାର ( ରୂପାନ୍ତର ମାତ୍ର ) । ୮୮-୮୯ । ବ୍ରହ୍ମା, ବିଷ୍ଣୁ, ଓ ଶିବ, ଏହି ତିନି ଦେବତା ତାହାଙ୍କର ରୂପାନ୍ତରରୂପେ ପ୍ରଥମେ ଜାତ ହେଲେ । ଏହି ଦେବତା ତିନିହେଁ ସତ୍ତ୍ୱ, ରଜଃ ତମଃ ଏହି ତିନି ଗୁଣ ଧାରଣ କରିଅଛନ୍ତି । ସେମାନଙ୍କ ମଧ୍ୟରୁ (ଅବ୍ୟକ୍ତଜନ୍ମା) ବ୍ରହ୍ମା ରଜୋଗୁଣବିଶିଷ୍ଟ ।

ଅମଳ ସତ୍ତ୍ୱମୟ ହରି
ଅପରେ ତମଃ ତ୍ରିପୁରାରି ।୯୦।
ଅନ୍ତର ଗୁଣମାନ ଘେନି
ଅଭିନ୍ନ ଅଟନ୍ତି ଏ ତିନି ।୯୧।
ଅଗ୍ନିର (?) ଜନ୍ମ କର୍ମ ମୃତ୍ୟୁ
ଅଛି ଅବଶ୍ୟ ତିନି ହେତୁ ।୯୨।
ଅତଃ କାରଣେ ସର୍ବ ଜୀବେ
ଅଧିକାରୀ ଏ ତିନି ଦେବେ ।୯୩।
ଅପରେ ଯେତେ ଦେବଗଣ
ଅସୁର କିନ୍ନର ଚାରଣ ।୯୪।
ଅଶେଷ ନର ନାଗ ଜୀବ
ଅନେକ କେ ତାହା କହିବ ।୯୫।
ଅଂଶେ ଈଶ୍ୱର-ତେଜଃ ବହି
ଅଶେଷ ଚିନ୍ତ ଜନ୍ମ ପାଇ ।୯୬।
ଅଗ୍ନି ଯେସନେ ସତ୍ତା ପାଇ
ଅଦ୍ଭୁତ ତେଜଃ ପ୍ରକାଶଇ ।୯୭।
ଅଦୃଶ୍ୟ ପତ୍ର କୁଶଯୋଗେ
ଅଙ୍ଗାରେ କାଷ୍ଠ ତେଜଃ ଜାଗେ ।୯୮।
ଅଳପ ତେଜ ଇନ୍ଧନରେ
ଅଧିକ ତହିଁ କି ଦୀପରେ ।୯୯।
ଅମାନ ଦିହୁଡ଼ୀରେ ଜଳେ
ଅବ୍ଜ-ଦୀପରେ ମହୋଜ୍ଜ୍ୱଳେ ।୧୦୦।
ଅଧିକୁଁ ଅଧିକ ଉଜ୍ଜ୍ୱଳ
ଅନୁରୂପକୁ ଦ୍ରବ୍ୟ ମୂଳ ।୧୦୧।

---

୯୦-୯୧। ବିଷ୍ଣୁ ନିର୍ମଳ ସତ୍ତ୍ୱଗୁଣଯୁକ୍ତ ଓ (ତ୍ରିପୁରାରି) ତ୍ରିପୁର ସଂହାରକ ଶିବ ତମୋଗୁଣଯୁକ୍ତ । ଏଣୁ ଏ ତିନିଜଣ ଗୁଣ ଘେନି ଭିନ୍ନ ହେଲେହେଁ ମୂଳତଃ ଭିନ୍ନ ନୁହନ୍ତି ।
୯୨-୯୬। ପ୍ରତ୍ୟେକ ଜୀବ ଜନ୍ମ, କର୍ମ ଓ ମୃତ୍ୟୁର ଅଧୀନ । ବ୍ରହ୍ମା, ବିଷ୍ଣୁ ଓ ଶିବ ଏହି ତିନି କର୍ମର ଯଥାକ୍ରମେ ଅଧିକାରୀ । ତେଣୁ ସମସ୍ତ ପ୍ରାଣୀଙ୍କ ଉପରେ ତାହାଙ୍କର ଅଧିକାର ଅଛି । ଏହା ଛଡ଼ା ଅନ୍ୟାନ୍ୟ ଦେବତା, ଅସୁର, କିନ୍ନର, ଚାରଣ, ମନୁଷ୍ୟ, ନାଗ ଇତ୍ୟାଦି ଅସଂଖ୍ୟ ଜୀବ ଅଛନ୍ତି । ତାହାଙ୍କର ସଂଖ୍ୟା କେହି କହି ପାରିବ ନାହିଁ । ଏମାନେ ସମସ୍ତେ ଅଂଶରୂପେ ଈଶ୍ୱରତେଜକୁ ଗ୍ରହଣ କରି ଜନ୍ମ ହୋଇଅଛନ୍ତି ।
୯୭-୧୦୧ । ଅଗ୍ନି ଅଣୁ ଆକାରରେ ସତ୍ତା ମାନରେ ( ଛଆ ମାନରେ ) ଅବସ୍ଥିତ ରହି କ୍ରମେ ଅଦ୍ଭୁତ ତେଜ ପ୍ରକାଶ କରେ । ସେ କୁଶ ପ୍ରଭୃତି ତୃଣକୁ ଆଶ୍ରୟ କରିବା ବେଳେ ଅଦୃଶ୍ୟପ୍ରାୟ ହୋଇ ଥାଏ, ଅଙ୍ଗାରକୁ ଆଶ୍ରୟ କରିବା ବେଳେ ତଦପେକ୍ଷା ଟିକିଏ ତେଜ ବଢାଏ, କାଠକୁ ଆଶ୍ରୟ କଲେ ତା ଅପେକ୍ଷା ଆଉ ଟିକିଏ ତେଜୀୟାନ୍ ହୁଏ , ଦୀପକୁ ଆଶ୍ରୟ କଲେ ପୂର୍ବ ଅପେକ୍ଷା ଆହୁରି ତେଜସ୍ୱୀ ହୁଏ, ଦୀପ ଅପେକ୍ଷା ଦିହୁଡ଼ୀରେ ( ମଶାଲରେ ) ଅଧିକ ଉଜ୍ଜ୍ୱଳ ତେଜ ଧାରଣ କରେ, ( ଅବ୍ଜଦୀପ ) ଚନ୍ଦ୍ରଉଦଆ ବା ମହତାପରେ ଦିହୁଡ଼ୀ ଅପେକ୍ଷା ଆହୁରି ତେଜସ୍ୱୀ ଦେଖାଯାଏ । ଏହିପରି ଅଗ୍ନି ଭିନ୍ନ ଭିନ୍ନ ଦ୍ରବ୍ୟ ଆଶ୍ରୟ କରିବା ଫଳରେ ଉଜ୍ଜ୍ୱଳରୁ

ଅଙ୍ଗାରୁ ବ୍ରହ୍ମା ରୁଦ୍ର ସବୁ    ଅଛୁ ଈଶ୍ୱର-ତେଜ ପୂରୁ । ୧୦୨ ।
ଅଳପ ଶକ୍ତି ଅଟେ ଯାରୁ    ଅଙ୍ଗାର ଅନଳ ସେ ନରୁ । ୧୦୩ ।
ଅଣୁଏ ଅଛୁ ଅବା ନାହିଁ    ଅଟେ ଟି କୁଶଅଗ୍ନି ସେହି । ୧୦୪ ।
ଅଂଶରେ ଅଧିକ ଯା ବଳ    ଅଟେ ସେ ଇନ୍ଧନ-ଅନଳ । ୧୦୫ ।
ଅଛୁ ଯେ ପର ଉପକାରେ    ଅଟେ ସେ ପ୍ରଦୀପ ପ୍ରକାରେ । ୧୦୬ ।
ଅବନୀପତି ଯେଣୁ ରାଜ    ଅଟେ ଦିବ୍ୟୁଟୀ ତାଙ୍କ ତେଜ । ୧୦୭ ।
ଅମରଗଣେ ଚନ୍ଦ୍ର ଦୀପ    ଅଧିକ ମହଃ ତା ସ୍ୱରୂପ । ୧୦୮ ।
ଅଗ୍ନି ଯେ ଏକା ଦ୍ରବ୍ୟ ବଳେ    ଅନେକ ରୂପ ବହେ ଫଳେ । ୧୦୯ ।
ଅନାଦି ବ୍ରହ୍ମାଣ୍ଡ କାରଣ-    ଅଂଶେ ଏ ସବ ସୃଷ୍ଟି ଜାଣ । ୧୧୦ ।
ଅନ୍ତଶେ କୃଷ୍ଣ-ପଦକଞ୍ଜ    ଅପେକ୍ଷେ ବଳଭଦ୍ର ଭଞ୍ଜ । ୧୧୧ ।

—ଃ*ଃ—

---

ଉଜ୍ଜ୍ୱଳତର ହୋଇଥାଏ । ୧୦୨—୧୧୦ । ଅଙ୍ଗାରଠାରୁ ଆରମ୍ଭ କରି ବ୍ରହ୍ମା, ଶିବ, ବିଷ୍ଣୁପର୍ଯ୍ୟନ୍ତ ସମସ୍ତଙ୍କଠାରେ ଈଶ୍ୱର ତେଜ ପୂରି ରହିଛି । ଯାହାର ଅଳପ କ୍ଷମତା, ସେ ଲୋକ ଅଙ୍ଗାରକୁ ଆଶ୍ରୟ କରିଥିବା ଅଗ୍ନିପରି ଅଟେ । ଯେ କାର୍ଯ୍ୟ ଦେଖାଇ ନ ଥିବାରୁ ଅଛି କି ନାହିଁ ବୋଲି ଜଣାପଡ଼େ ନାହିଁ, ସେ କୁଶ-ଅଗ୍ନି ପରି । ଯେ ତଦପେକ୍ଷା ( ଅଙ୍ଗାରାଗ୍ନି ସହିତ ତୁଳିତ ନର ଅପେକ୍ଷା ) ଅଧିକ ଉଜ୍ଜ୍ୱଳ, ସେ କାଷ୍ଠ ଅଗ୍ନି ସଦୃଶ । ଯେ ପର ଉପକାରରେ ରତ, ସେ ଦୀପାଗ୍ନି ସଦୃଶ । ରାଜା ପୃଥିବୀର ମାଲିକ ହୋଇଥିବାରୁ ସେ ମଶାଲ୍ ନିଆଁ ପରି । ଦେବତାମାନେ ( ଚନ୍ଦ୍ରଉଦୟ ) ବା ମହତାପସ୍ଥିତ ଅଗ୍ନି ପରି ଅତି ଉଜ୍ଜ୍ୱଳ । ଯେପରି ଏକ ଅଗ୍ନି ଭିନ୍ନ ଭିନ୍ନ ଉପାଧି ଆଶ୍ରୟ କରି ଭିନ୍ନ ଭିନ୍ନ ରୂପ ଧାରଣ କରୁଅଛି, ସେପରିପରି ସମସ୍ତଙ୍କର ଏକମାତ୍ର କାରଣ ପରଂବ୍ରହ୍ମଙ୍କର ଅଂଶରେ ଏ ସମସ୍ତ ଭିନ୍ନ ଭିନ୍ନ ଜୀବାଦିର ସୃଷ୍ଟି ହୋଇଅଛି । । ୧୧୧ । ଶ୍ରୀ ବଳଭଦ୍ର ଭଞ୍ଜ ସର୍ବଦା ଶ୍ରୀକୃଷ୍ଣଙ୍କ ପାଦପଦ୍ମକୁ ଅପେକ୍ଷା ରଖିଛନ୍ତି ।

——ଃ୦ଃ——

# ଚତ୍ୱାରିଂଶ ଛାନ୍ଦ

## ସ୍ୱପ୍ନାଦେଶ ଓ ରାଜନୀତି ବର୍ଣ୍ଣନ

ରାଗ—ମଥୁରାଭାବେ

ଅକଲ୍ମଷମନେ ଘେନ ସୁଜନ ଜନ
ଅମ୍ବିକା-ବିଳାସ ଗୀତ ହେଲା ସମ୍ପୂର୍ଣ୍ଣ । ୧ ।
ଅତି ସହୃଦୟ୍ୟ ଭବ ବିବେକବର
ଅପୂର୍ବ ପଣ୍ଡିତ ସର୍ବ ବିଷୟେ ଧୀର । ୨ ।
ଅପାର ଆଦରେ ଏମାନଙ୍କୁ ଅଣାଇଁ
ଅନୁଆନେ ସର୍ବ ଛାନ୍ଦମାନ ଶୁଣାଇଁ । ୩ ।
ଅଥ ଶ୍ଳିଷ୍ଟାଶ୍ଳିଷ୍ଟ ଶବ୍ଦଶ୍ଳେଷ ଭଣିନେ
ଅଦୋଷ ଦୋଷ ବା ଅଛି ଯେ ଯେଉଁ ସ୍ଥାନେ । ୪ ।
ଅକ୍ଷର ବଶରୁ ଯେଉଁ ଶବ୍ଦ ଅପୁଷ୍ଟ
ଅଛି ଶ୍ଳେଷାର୍ଥରେ ଯେଉଁ ପଦରେ କ୍ଳିଷ୍ଟ । ୫ ।
ଅନେକ ନିୟମେ ଊଣା ଯେଉଁ ବସନ୍ତ
ଅବର୍ଣ୍ଣ-ନିୟମେ ମୀରସ ଯେ ଭାରତୀ । ୬ ।
ଅନୁଭାବି ଏ ବିଷୟମାନ ବିଦୂଷେ
ଅଦୋଷ ହୋଇଲା ଗୀତ କହିଲେ ତୋଷେ । ୭ ।
ଅତଃ କାରଣୁଁ ଏ ଗୀତ ନିର୍ଦ୍ଦୋଷରତ୍ନ
ଅଟେ ସୂତ୍ରୁ ଗୁଣଧର ଉଜ୍ଜ୍ୱଳେ ଯତ୍ନ । ୮ ।

---

ଚତ୍ୱାରିଂଶ ଛାନ୍ଦ

୧—୧୦ । ଅକଲ୍ମଷମନେ—ନିର୍ମଳ ମନରେ । ସହୃଦୟ—ପୂର୍ବ ଜନ୍ମାର୍ଜିତ ପୁଣ୍ୟବାନ୍, "ପୁଣ୍ୟବନ୍ତଃ ପ୍ରମିଣ୍ୱନ୍ତି ଯୋଗିବଦ୍ରସସନ୍ତତିଂ ।" ବିବେକବର—ପ୍ରଧାନ ସମାଲୋଚକ । ଅପୁଷ୍ଟ—ଅର୍ଥଦୋଷ ବିଶେଷ । ନିର୍ଦ୍ଦୋଷରତ୍ନ—କୀଟାଦି ପ୍ରକୃତିଙ୍କଦ୍ୱାରା ବିଦ୍ଧ ହୋଇ ନ ଥିବା ରତ୍ନ । ସୁରୁଗୁଣଧର—ସୁନ୍ଦର ସୂତା ଧାରଣ କରିଥାଏ; କାବ୍ୟ—ମାଧୁର୍ଯ୍ୟ, ଓଜଃ ଓ ପ୍ରସାଦ ରୂପ ଗୁଣକୁ ଧାରଣ କରିଛି

ଅନୁରାଗି-ରସିକର କଣ୍ଠଭୂଷଣ
ଅମୂଲ୍ୟ ଏ ହେତୁ ନ ପଡ଼ଇ ଲକ୍ଷଣ ।୯ ।
ଅନେକ ରସପ୍ରାପ୍ତକ ହେଲ କୁତୁକ
ଅନୁକ୍ଷଣେ ମନ ମୋଦେ ପାଇଲେ ଲୋକ ।୧୦।
ଅଥ ଏକଦିନେ ମୁଁ ଯେ ଶୟନପୁରେ
ଅଚେଷ୍ଟେ ପଡ଼ୁଛ ଅଛୁ ପଲ୍ୟଙ୍କ ପରେ ।୧୧।
ଅନେକ ଜନ୍ମ ଅର୍ଜିତ ସୁକୃତ ଫଳ
ଅନୁଆନେ ସର୍ବେ ଆସି ହୁଅନ୍ତ ଠୁଳ ।୧୨।
ଅଖିଳ ଈଶ୍ୱର ସଙ୍ଗେ ଈଶ୍ୱରୀ ଛନ୍ତ
ଅଇଲେ କଶାଙ୍କମାନେ ମୋହର କନ୍ତ ।୧୩।
ଅରୁଣ-କରଣ-ତେଜ ପୂରନ୍ତେ ପୁରେ
ଅକ୍ଷି ଫିଟାଇ ଦେଇ ମୁଁ ଗୃହୁଁଲୁ ଧୀରେ ।୧୪।
ଅନନ୍ତ ଆନନ୍ଦଦାତା ତ୍ରିପୁର-ମାତା
ଅଗ୍ରେ ଦେଖି ଦୂର ହେଲ ସକଳ ଚନ୍ତା ।୧୫।
ଅବଲମ୍ବେ ପଲ୍ୟଙ୍କ ଉପରୁ ଓହ୍ଲାଇ
ଅଙ୍ଘ୍ରିତଳେ ଦଣ୍ଡ-କାଣି ପଡ଼ିଲୁ ଯାଇଁ ।୧୬।
ଅଳ୍ପହାସେ ଆଜ୍ଞାକଲେ ଉଠ ନୃପତ
ଅଇଲୁ ଆମ୍ଭେ ତୋ ଭକ୍ତି-ଭାବନା ଘେନ ।୧୭।
ଅମ୍ବିକାକଳାସଙ୍ଗୀତେ ହୋଇ ପ୍ରସନ୍ନ
ଅନୁକମ୍ପା କରି ଏଣୁ ଦେଲୁ ଦର୍ଶନ ।୧୮।
ଅଭୀଷ୍ଟ ପୂର୍ଣ୍ଣ ହୋଇବ ଅବଶ୍ୟ ତୋର
ଅଚନ୍ତାରେ ଜୟଯୁକ୍ତେ କର ସଂସାର ।୧୯।

---

ରତ୍ନ ( ଉଜ୍ଜ୍ୱଳ ) ନିର୍ମଳ ହୋଇଥିବାରୁ (ଯତ୍ନ) ସୁନ୍ଦର ଦିଶେ । କାବ୍ୟ (ଉଜ୍ଜ୍ୱଳ) ଶୃଙ୍ଗାର ରସରେ ମଧୁର ହୋଇଛ । ରତ୍ନ—କଣ୍ଠର ଅଳଙ୍କାର, ଗୀତ ମଧ୍ୟ କଣ୍ଠରେ ଗୃହୀତ ହେବାରୁ ତାହାର ଶୋଭବର୍ଦ୍ଧକ । ୧୨ । ସୁକୃତ-ଫଳ— ପୁଣ୍ୟଫଳ । ୧୩ । କଶାଙ୍କମାନେ— ସ୍ୱିତ ଅଧରେ । ୧୪। ଅରୁଣ କାରଣ ତେଜ—ରକ୍ତବର୍ଣ୍ଣ କାରଣେ ତେଜ । ୧୬ । ଅଙ୍ଘ୍ରି-ତଳେ—ପାଦତଳେ ।

ଅର୍ଦ୍ଧଅହେ କାଳୁ ବିପ୍ର ଯାହା କହିବ
ଅନୁଜ୍ଞା ପରାଏ ତାହା ଘେନିବୁ ସର୍ବ ।୨୦।
ଅନ୍ତର୍ଦ୍ଧାନ ହେଲେ କହି ଏତେ ଭାରତୀ
ଅନ୍ତ ରାତ ହେଲା ସ୍ୱପ୍ନ ଉଠିଲେ ଚନ୍ଦ୍ର ।୨୧।
ଅରୁଣ-ଉଦୟୁଁ ସାରି ମାଜଣା କର୍ମ
ଅନୁଷ୍ଠାନ କଲେ ଜପପୂଜାଦି କର୍ମ ।୨୨।
ଅଚ୍ୟୁତାଗ୍ରଜଦର୍ଶନ ବନ୍ଦନ ସାରି
ପୁରାଣାଦି ଶ୍ରବଣାନ୍ତେ ମଣୋହି କରି ।୨୩।
ଅନୁରୂପେ ଯଥୋଚିତେ ହୋଇଛି ସନ୍ଧି
ଅଇଲେ ଏକ ବ୍ରାହ୍ମଣ ସୂର-ପ୍ରଭିଭି ।୨୪।
ଅବନୀଶଙ୍କୁ କହି ହେ କହନ୍ତେ ଏତେ
ଅବଲମ୍ବେ ବିପ୍ରାଗତ ଦ୍ୱାରୀ ଜଣାନ୍ତେ ।୨୫।
ଅନୁସରି ସ୍ୱପ୍ନ ବସି ଏକାନ୍ତ ପୁରେ
ଅତି ଆଦରେ ଡକାଇ ନେଇ ସଭିରେ ।୨୬।
ଅବନୀରେ ଶିର ମାରି ପ୍ରଣାମ କରି
ଅଙ୍ଘ୍ରି ଧୋଇ ଆସନେ ବସାଇ ଜୁହାରି ।୨୭।
ଅଦ୍ୟ ମୋର ଭାଗ୍ୟ କୃତକୃତ୍ୟ କହନ୍ତେ
ଅଭ୍ୟୁ ବିପ୍ର କଲ୍ୟାଣ କଲେ ଅମିତେ ।୨୮।
ଅନୁଜ୍ଞା କଲେ ତୁମ୍ଭଙ୍କୁ ଦେଖିବା ପାଇଁ
ଅଇଲୁଁ ବହୁତ ଦୂରୁ ଅବନୀ-ସାଇଁ ।୨୯।
ଅବଲୋକନେ ତୁମ୍ଭଙ୍କୁ ହେଲୁଁ ପ୍ରସନ୍ନ
ଅନୁଶ୍ରବଣ କର ହେ ଆମ୍ଭ ବଚନ । ୩୦ ।

---

୨୦। ଅର୍ଦ୍ଧଅହେ—ଦ୍ୱିପ୍ରହର ସମୟରେ। ଅନୁଜ୍ଞା—ଆଦେଶ । ୨୨ । ମାଜଣା କର୍ମ—ସ୍ନାନ । ୨୩ । ଅଚ୍ୟୁତାଗ୍ରଜ—ବଳଭଦ୍ର ( କବିଙ୍କର ଇଷ୍ଟଦେବତା )। ମଣୋହି—ଭୋଜନ । ୨୪। ସୂରପ୍ରଭିଭି—ସୂର୍ଯ୍ୟଙ୍କପରି ତେଜସ୍ୱୀ । ୨୫ ।ଅବଲମ୍ବେ···ଜଣାନ୍ତେ—ବ୍ରାହ୍ମଣ ଅଇଲେଣି ବୋଲି ଜଣାଇବାରୁ ।୨୬। ଏକାନ୍ତପୁରେ—ନିର୍ଜ୍ଜନ ଗୃହରେ । ୨୭। ଜୁହାରି—ନମସ୍କାର କରି। ୨୮ । କୃତକୃତ୍ୟ—କୃତାର୍ଥ, ସଫଳ। ଅଭ୍ୟୁ....ଅମିତେ —ବ୍ରାହ୍ମଣ ତୁମ୍ଭର 'ଅଭ୍ୟୁ' ହେଉ ବୋଲି ବହୁବାର ଆଶୀର୍ବାଦ କଲେ ।

ଅଖିଳ ସଂସାର ଏ ଯେ ସଚରାଚର
ଅହିମାନବଦେବଙ୍କ ଏ ତିନି ପୁର ।୩୧।
ଅଷ୍ଟଷଡ଼ ଭୁବନ ଏ ବେଦ ପ୍ରମାଣ
ଅମ୍ବୁନିଧି ନଦ ନଗ ଆଦି ଘଟଣ ।୩୨।
ଅନୁଆନେ କେତେ ସ୍ଥଳମାନ ଅଛନ୍ତି
ଅଟେ ଏ ବରିଷ୍ଠ ଦେବ ଅଙ୍ଗ ବିଭୂତି ।୩୩।
ଅଶେଷ ସଂସାର-ସ୍ରଷ୍ଟା ଏକା ଈଶ୍ୱର
ଅବ୍ଜାସନାଦି ସର୍ବେ ଦାସ ତାଙ୍କର ।୩୪।
ଅଣ୍ଡଜୀବୁଁ ଦେବଯାଏ ଚତୁଃଖାନିର
ଅନୁପୋଷଣେ ବୋଲନ୍ତି ସେ ବିଶ୍ୱମ୍ଭର ।୩୫।
ଅବା ତୁ ବୋଲୁବୁ ରାଜା କେତେ ତ ଛନ୍ତି
ଅଶନିଧରାଦି ମହୀପାଳ ପ୍ରଭୃତି ।୩୬।
ଅଜ୍ଞାନରେ କର୍ତ୍ତା ଆମ୍ଭେ ବୋଲନ୍ତି ଏହୁ
ଅଛୁ ଯେ ଉଦାହରଣ ଏଥକୁ କହୁଁ ।୩୭।
ଅକ୍ଷି ନାସା ରସନା ଶ୍ରବଣ ଚରମ
ଅଙ୍ଘ୍ରି ଆଦି କରୁଛନ୍ତି ଯେ ଯାହା କର୍ମ ।୩୮।
ଅଟେ ଏଥି ଆତ୍ମାମନ ଯେସନେ ମୂଳ
ଅଭାବେ ତାର ଇନ୍ଦ୍ରିୟେ ଯଥା ବିଫଳ ।୩୯

---

୩୨। ଅଷ୍ଟଷଡ଼—ଚଉଦ । ଅମ୍ବୁନିଧି—ସମୁଦ୍ର । ନଗ—ପର୍ବତ । ଘଟଣ—ସୃଷ୍ଟି । ୩୩। ବରିଷ୍ଠ ଦେବ—ବରିଷ୍ଠ ପୁରୁଷଙ୍କର । ବିଭୂତି—ଐଶ୍ୱର୍ଯ୍ୟ ।୩୪। ଅବ୍ଜାସନ ସର୍ବେ—ବ୍ରହ୍ମାପର୍ଯ୍ୟନ୍ତ ।୩୫। ଚତୁଃଖାନିର—ଉଦ୍ଭିଜ୍ଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଏହି ଚାରି ପ୍ରକାର ପ୍ରାଣୀଙ୍କର । ଅନୁପୋଷଣେ—ପୋଷଣ କରୁଥିବାରୁ ।୩୬। ଅଶନିଧରାଦି ଇନ୍ଦ୍ର ପ୍ରଭୃତି । ମହୀପାଳ—ଅନ୍ୟାନ୍ୟ ମର୍ତ୍ତ୍ୟର ରାଜା । ୩୮। ଅକ୍ଷି—ଆଖି । ନାସା—ନାକ । ଶ୍ରବଣ—କର୍ଣ୍ଣ । ଚରମ—ଚର୍ମ । ଅଙ୍ଘ୍ରି—ପାଦ (ଅର୍ଥାତ୍ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟମାନେ) । ୩୯-୪୪। ଅଟେ...ବିଫଳ—ଆତ୍ମା ଓ ମନ ସହିତ ଇନ୍ଦ୍ରିୟର ସଂଯୋଗ ନ ହେଲେ, ରୂପ, ରସ, ଗନ୍ଧ, ସ୍ପର୍ଶ, ପ୍ରଭୃତି ବିଷୟ ଗୃହୀତ ହୋଇପାରେ ନାହିଁ । ସେହିପରି ଈଶ୍ୱର ସମସ୍ତ ବିଶ୍ୱର ରାଜା । ଅନ୍ୟାନ୍ୟ ଯେଉଁମାନେ ରାଜା ବୋଲନ୍ତି, ସେମାନେ ନିମିତ୍ତ ମାତ୍ର ।

ଅଖିଳନାୟକ ସର୍ବମୟ ଈଶ୍ୱର
ଅଟନ୍ତି ଏ ରାଜା ସର୍ବେ ନିମିତ୍ତ ପର ।୪୦।
ଅଘ ପୁଣ୍ୟେ ଦେବା ଦୀନ ରାଜା ହୁଅନ୍ତି
ଅନ୍ତ ହୋଇଲେ ନିଜ କର୍ମେ ପୁଣି ଭ୍ରମନ୍ତି ।୪୧।
ଅତଃ କାରଣରୁ ଯାହାର ସୁଯୋଗ ଥାଇ
ଅବହିତ ହୀନ କର୍ମ କରଇ ନାହିଁ ।୪୨।
ଅନା ମାନଧାତା ପୃଥୁ ଆଦି ନୃପତି
ଅଛନ୍ତି କାହିଁ କେ ନେଇଗଲେ ଏ ପୃଥ୍ୱୀ ।୪୩।
ଅଛି ମାତ୍ର ରହି ଯଶ ଅଯଶମାନ
ଅନ୍ତର୍ଗତେ ଏଣୁ ଆମ୍ଭ ବଚନ ଘେନ ।୪୪।
ଅବନୀପତି ସ୍ୱଧର୍ମ କହିବା କିଛି
ଅନେକ-ମତ-ସମ୍ମତ ଯେଉଁ ହୋଇଛି ।୪୫।
ଅଲୋଭି ହୋଇବୁ ପର-ଧନେ ନୃପତି
ଅମ୍ବା ପରି ଦେଖିବୁ ପରଯୁବତି ।୪୬।
ଅଧମରେ ଦୟା ଥିବ ଅବନୀଧବ
ଅଧିକ କରୁଣା ଏତେ ଠାବରେ ହେବ ।୪୭।
ଅତିବୃଦ୍ଧ ବାଳକ ଅନାଥ-ଯୁବତି
ଅନ୍ଧ ପଙ୍ଗୁ କୁବ୍ୟାଧି ଯେ ଅଚଳ ଅତି ।୪୮।
ଅସ୍ଥାନ ସ୍ଥିତିରୁ ଅସ୍ତବ୍ୟସ୍ତ ଯେ ପ୍ରାଣୀ
ଅପବାଦେ ବୁଡି ଯାଉଥିବ ଯେ ପୁଣି ।୪୯।

---

ଲୋକମାନେ ପାପଫଳରେ ଦରିଦ୍ର ଓ ପୁଣ୍ୟଫଳରେ ମାତ୍ର କେତେ ଦିନ ପାଇଁ ରାଜା ହୁଅନ୍ତି । ସେ ପୁଣ୍ୟ ବା ପାପ ଭୋଗ ହୋଇଗଲେ ପୁଣି ସ୍ୱ ଅବସ୍ଥା ପ୍ରାପ୍ତ ହୁଅନ୍ତି । ଏଣୁ ଯାହାର ସୁଦଶା ଥାଏ, ସେ ଅବିଧି କାର୍ଯ୍ୟ କରେ ନାହିଁ । ଦେଖ ! ମାନଧାତା, ପୃଥୁ ଆଦି କେତେ କେତେ ରାଜା ନ ଥିଲେ ! ସେ ଅଛନ୍ତି କି ? ନା ସେମାନଙ୍କ ମଧ୍ୟରୁ କେହି ଏ ପୃଥ୍ୱୀକୁ ନେଇଗଲେ କି ? କେବଳ ଯଶ ବା ଅଯଶମାନ ସଂସାରରେ ରହିଛି ସିନା । ମୋର ଏକ ଥାକୁ ମନରେ ଧାରଣା କରି ରଖ । ୪୨-୬୫ କିଛି ରାଜଧର୍ମ କହୁଥାଇଁ । ବହୁ ବିଜ୍ଞବ୍ୟକ୍ତି ଏହାକୁ ସମ୍ମାନ ଦେଖାଇଥାନ୍ତି । ହେ ରାଜା ! ପରଧନରେ ଲୋଭ କରିବୁ ନାହିଁ, ପରଯୁବତୀକୁ ମାତାପରି ଜ୍ଞାନ କରିବୁ । ଅକ୍ଷମ ବ୍ୟକ୍ତିଙ୍କଠାରେ ଦୟା କରୁଥିବୁ । ଅତିବୃଦ୍ଧ, ବାଳକ, ବିଧବା ଯୁବତୀ,

ଅରିବର୍ଗ ବେଢ଼ିଥିବେ ଯାକୁ ଆକର୍ଷି
ଅତି ଆର୍ତ୍ତେ ଶରଣ ଯେ ପଶିବ ଆସି । ୪୦ ।
ଅଶନ-ଅଭାବେ ଶୀର୍ଣ୍ଣ ବସନହୀନ
ଅଧନରେ ଶୁଦ୍ଧ ହୋଇ ନ ପାରେ ଯେ ଜନ ।
ଅକ୍ଷମତ୍ୟରୁ ବ୍ରାହ୍ମଣର ନ ଥିବ ବଳ
ଅତିକ୍ରମୁଥିବ ଯାର ବ୍ରତର କାଳ ।
ଅଚଳେ ବିବାହକୃତ୍ୟ ଯେବେ ନୋହିବ
ଅଗାରେ ଯା ରଜସ୍ୱଳା କୁମାରୀ ଥିବ ।
ଅନୁସରିଥିବ ନିଶିଦିନ ଯେ ନତ୍ୟେ
ଅନନ୍ୟଗତିକ ଅବା କ୍ଷୁଧାତୃଷାର୍ତ୍ତେ ।
ଅବଶ୍ୟ ଏତେ କଥାରେ କରିବୁ ଦୟା
ଅହିତ ହୋଇ ସେ ପଛେ କରନ୍ତୁ ମାୟା । ୪୫ ।
ଅନୁପଯୋଗୀ ଏ ଗିର ଘେନବୁ ନାହିଁ
ଅତି ଆର୍ତ୍ତେ କୃପା କର ଧରଣୀସାଇଁ ।
ଅଥ ସର୍ବୋପରି ଧର୍ମ କହିବି ଆର
ଅଥ ଶ୍ରବଣ କର ନ କର ଧୀବର ।

---

ଅନ୍ଧ, ପଙ୍ଗୁ, କୁଷ୍ଠ ପ୍ରଭୃତି ବ୍ୟାଧିପୀଡିତ ବ୍ୟକ୍ତି, ଚଳନଶକ୍ତିରହିତ ବ୍ୟକ୍ତି, ଯେ ଅନୁପଯୁକ୍ତ ସ୍ଥାନରେ ଅସ୍ତବ୍ୟସ୍ତ ହେଉଥିବ, ଯେ ଅପବାଦ ( ନିନ୍ଦା ) ରେ ବୁଡିଥିବ, ଯାହାକୁ ଶତ୍ରୁମାନେ ଘେରିଥିବେ, ଯେ ଅତି ପୀଡ଼ା ପାଇ ଶରଣ ପଶିଥିବ, ଯେ ଖାଇବାକୁ ନ ପାଇ ଦୁର୍ବଳ ହୋଇଥିବ ଯାହାର ପିନ୍ଧିବା ଲୁଗା ମଧ୍ୟ ନ ଥିବ, ଧନ ନ ଥିବାରୁ ଯେ ଶୁଦ୍ଧ ହୋଇପାରୁ ନ ଥିବ, ଯେଉଁ ବ୍ରାହ୍ମଣର ଅସାମର୍ଥ୍ୟ ହେତୁ ବିବାହ ବା ବ୍ରତ ( ଉପନୟନ ) କାଳ ଗଡି-ଯାଉଥିବ, ଯାହାର ଘରେ ଅବିବାହିତା ରଜସ୍ୱଳା କନ୍ୟା ଥିବ, ଯେ ସ୍ୱାମୀକିନ ଅନୁସରଣ କରୁଥିବ, ଯାହାର ଅପର କୌଣସି ଗତି ନ ଥିବ, ଯେ କ୍ଷୁଧା ବା ତୃଷାରେ ଆର୍ତ୍ତ ହୋଇଥିବ, ସେମାନେ ଶତ୍ରୁତା କରି ତୋହ ପାଖରେ କପଟ ବ୍ୟବହାର କରନ୍ତୁ ପଛକେ, ତୁ ସେମାନଙ୍କୁ ଦୟା କରୁଥିବୁ । ଏ ସବୁ କଥା ଅନୁପଯୋଗୀ ବୋଲି ମନେ କରିବୁ ନାହିଁ । ଶେଷ କଥା କହୁଛି—ଅତି ଆର୍ତ୍ତ ବ୍ୟକ୍ତିକୁ ନିଶ୍ଚୟ ଦୟା କରିବୁ । ଏହା ପରେ ସର୍ବଶ୍ରେଷ୍ଠ ଧର୍ମ ମୁଁ ତୋତେ କହୁଛି । ତୁ ଏହା ଶୁଣ ବା ନ ଶୁଣ, ତୋ ଇଚ୍ଛା ।

ଅଶେଷ ଜୀବ ସନ୍ତୋଷ ଯେ କରିପାରେ
ଅତଃପର ଧର୍ମ କର୍ମ ନାହିଁ ସଂସାରେ ।
ଅନେକ ଶାସ୍ତ୍ର ଆଗମ ନିଗମ ସାର
ଅଟେ ଏ କର୍ମ ଈଶ୍ୱର ସନ୍ତୋଷକର ।
ଅବନୀଧବର ବର ଧର୍ମ ଆଉର
ଅଛି ଯା କହିବା ଶୁଣ ନିଶ୍ଚଳ କରି । ୭୦ ।
ଅଖଣ୍ଡମଣ୍ଡଳେ ଥିବ ରାଜ୍ୟାଧିକାର
ଅମରପତି-ସମ୍ପତ୍ତି ଥିବ ତା ପୁର ।
ଅଗାରେ ଥିବ କେଳଣୀସମ ସୁଦତୀ
ଅରି ଥରି ଉଠୁଥିବ ତା ନାମ ଶୁଣି ।
ଅଙ୍ଗମାନ ଅଟନ୍ତି ଯେ ସକଳ ହେତୁ
ଅଛି ପ୍ରଜାପାଳନ ଯେ ଜାଣିଥାଅ ତୁ ।
ଅବନୀ ଚଷିବା ଜନ ନୋହେ କେବଳ
ଅଟନ୍ତି ସାଧାରଣରେ ପ୍ରଜା ସକଳ ।
ଅଶ୍ରୁ ପ୍ରଜାର ଯେମନ୍ତ ପଡେ ଭୂପରେ
ଅନଷ୍ଟ ନୃପର ନାହିଁ ଏଥି ଉପରେ । ୭୫ ।

---

ସମସ୍ତ ପ୍ରାଣୀଙ୍କି ସନ୍ତୁଷ୍ଟ କରି ପାରିଲେ ତାହାଠାରୁ ବଳି ଧର୍ମକାର୍ଯ୍ୟ ସଂସାରରେ ନାହିଁ । ସମସ୍ତ ଶାସ୍ତ୍ର ବେଦ ତନ୍ତ୍ରାଦିରେ ଏହା ଶ୍ରେଷ୍ଠ, ଈଶ୍ୱର-ତୃପ୍ତିକର ବୋଲି କଥିତ ହୋଇଅଛି । ଆଉରି ମଧ୍ୟ ରାଜାର ଅନ୍ୟଧର୍ମ ଅଛି । ତାହା କହୁଛି, ଧୀରଭାବରେ ଶୁଣ । ରାଜାର ରାଜ୍ୟରେ ଅଖଣ୍ଡ ଅଧିକାର, ଗୃହରେ ଇନ୍ଦ୍ରପରି ସମ୍ପତ୍ତି, ( କେଳଣୀ ) ରତି ପରି ସ୍ତ୍ରୀ ଥିଲେହେଁ, ତାହାର ନାମ ଶୁଣି ଶତ୍ରୁ କମ୍ପି ଉଠୁଥିଲେ ସୁଦ୍ଧା, ତାହାସବୁ ରାଜ୍ୟର ଗୋଟିଏ ଅଙ୍ଗମାତ୍ର । କିନ୍ତୁ ସୁଖରେ ପ୍ରଜାପାଳନ ସମସ୍ତଙ୍କର ମୂଳ ଅଟେ । ଏ କଥା ଉତ୍ତମରୂପେ ମନେ ରଖିଥାଅ । ପ୍ରଜା କହିଲେ କେବଳ ଭୂଇଁ ଚଷୁଥିବା ଲୋକ (ଚଷା)ଙ୍କୁ ବୁଝାଏ ନାହିଁ । ବ୍ରାହ୍ମଣାଦି ସମସ୍ତେ ପ୍ରଜା ଅଟନ୍ତି । ସେହି ପ୍ରଜାମାନଙ୍କର ଅଶ୍ରୁ (ଲୁହ) ଯେବେ ଭୂମିରେ ପଡେ, ତେବେ ତାହାକୁ ବଳି ରାଜାର ଅନଷ୍ଟ କଥା ଆଉ କିଛି ନାହିଁ ।

ଅଛି ସର୍ବ ଗୁଣ ନାହିଁ ପ୍ରଜାପାଳନ
ଅଟେ ସେ ପୀୟୂଷ ବିଷ-ହେତୁ ଭୁଞ୍ଜନ ।
ଅଟନ୍ତି ପ୍ରଜା କୁସୁମ-ଲତିକା ବତ
ଅବନୀଶ ମାଳୀ ସମ ପାଳ ନିୟତ ।
ଅନୁରୂପ କର କର-କୁସୁମ ତୋଳ
ଅଧିକ ନ ନେବ ଧନ-ପଲ୍ଲବ-ଦଳ ।
ଅଦଣ୍ଡ୍ୟ ଅଟନ୍ତି ବୃଦ୍ଧ ବାଳକ ନାରୀ
ଅଥ ପ୍ରଜାଦୋଷେ ଦଣ୍ଡ ନେବ ବିଗୁରି ।
ଅତ ଦୋଷରେ ଦଣ୍ଡିବ ଶାସ୍ତ୍ର ପ୍ରମାଣ
ଅବଶ୍ୟ ଦଣ୍ଡ୍ୟ ଯେ ଦଣ୍ଡଧର ତା ଶୁଣ । ୬୦ ।
ଅଯୃନମାରକ ଗୁରୁ-ବୈଷ୍ଣବଦ୍ରୋହୀ
ଅମ୍ବା ପିତା ବ୍ରାହ୍ମଣ ଯେ ଭୀଷଣ ଦେଇ ।

---

ଯେଉଁ ରାଜାର ( ଦାନ, ଧର୍ମ ଆଦି ) ସବୁ ଗୁଣ ଅଛି; କିନ୍ତୁ ପ୍ରଜାରଞ୍ଜନ ଗୁଣ ନାହିଁ, ସେ ବିଷମିଶ୍ରିତ ଅମୃତ ପରି ଅଟେ । ପ୍ରଜାମାନେ ପୁଷ୍ପିତା ଲତା ପରି ଅଟନ୍ତି । ରାଜା ମାଳୀ ସଦୃଶ ସେମାନଙ୍କୁ ପାଳନ କରେ । ମାଳୀ ଲତାରୁ ଫୁଟିଲ୍ ଫୁଲ୍ ତୋଳିଲା ପରି ରାଜା ସେମାନଙ୍କଠାରୁ ରାଜସ୍ୱ ଗ୍ରହଣ କରେ; କିନ୍ତୁ ମାଳୀ ଯେପରି ଫୁଲ୍ ଆଶାରେ କଅଁଳ ପତ୍ର ବା କଳି ତୋଳେ ନାହିଁ, ରାଜା ସେହିପରି ପ୍ରକୃତ ରାଜସ୍ୱ ବ୍ୟତୀତ ଅପର ଧନ ସେମାନଙ୍କଠାରୁ ଗ୍ରହଣ କରିବେ ନାହିଁ ।

"ଉତ୍ଖାତାନ୍ ନମୟନ୍ ନତାନ୍ ସମୁଦ୍ଧରନ୍ ମ୍ଳାନାନ୍ ମୁହୁଃ ସେଚୟନ୍
କୃଶାନ୍ କଣ୍ଟକିନୋ ବହିର୍ନିରସୟନ୍ ବିଶ୍ଳେଷୟନ୍ ସଂହତାନ୍
ଉତ୍ଖାତାନ୍ ପ୍ରତିରୋପୟନ୍ କୁସୁମିତାନ୍ ଚିନ୍ୱନ୍ ଶିଶୂନ୍ ବର୍ଦ୍ଧୟନ୍
ମାଲାକାର ଇବ ପ୍ରୟୋଗନିପୁଣୋ ରାଜା ଚିରଂ ଜୀବତୁ ।"—ଚାଣକ୍ୟଃ

ବୃଦ୍ଧ, ବାଳକ ଓ ନାରୀ, ଏମାନେ ଦଣ୍ଡଯୋଗ୍ୟ ନୁହନ୍ତି । ଅଦଣ୍ଡ୍ୟ ପ୍ରଜା ଦୋଷ କଲେ ଉତ୍ତମରୂପେ ବିଚାରି (ଦଣ୍ଡ) ଦଣ୍ଡରୂପେ ଅର୍ଥ ଗ୍ରହଣ କରିବ । ଯେବେ ଅତି ଦୋଷ କରନ୍ତି, ତେବେ ଶାସ୍ତ୍ରାନୁସାରେ ଦଣ୍ଡ ଦେବ । ଯେଉଁମାନଙ୍କୁ ନିଶ୍ଚୟ ଦଣ୍ଡ ଦେବ, ତାହା କହୁଅଛି ଶୁଣ । (ଅଯୃନମାରକ) ଖଣ୍ଟ; ଗୁରୁ ବୈଷ୍ଣବ ବାପ, ମା, ବ୍ରାହ୍ମଣ—ଏମାନଙ୍କୁ ଯେ ଦୁଃଖ ଦିଏ ।

ଅଗମ୍ୟ ଗମନ କରେ ପ୍ରାଣିନାଶନ
ଅକର୍ଣ୍ଣିତେ ପ୍ରାଣ ନେଇ ହରଇ ଧନ ।
ଅନୁକ୍ଷଣେ ନାନା ଜୀବ ମାରଇ ସ୍ନେହେ
ଅଗ୍ନି ଗୁପତେ ଲଗାଇ ପ୍ରାଣୀଙ୍କ ଗୃହେ ।
ଅଶନରେ ବିଷ ଦେଇ ନାଶଇ ଜନ
ଅବିଦ୍ୟା ପ୍ରଚାରି ବେଦ କରେ ଉଚ୍ଛନ୍ନ ।
ଅରିଠାରେ ସନ୍ଧି କହି ଗଡ ମସଇ
ଅଜ୍ଞାନେ ଶତ୍ରୁକୁ ଆଣି ପୁର ଲୁଟଇ । ୭୫ ।
ଅସତ୍ୟରେ ଖର କହି ବୁଡ଼ାଏ କୁଳ
ଅର୍ଚ୍ଚ୍ୟ ହୋଇଲେ ଏ ଦଣ୍ଡଯୋଗ୍ୟ ଭୂପାଳ ।
ଅଟ ତ ତୁମ୍ଭେ କ୍ଷତ୍ରିୟକୁଳେ ସମ୍ଭୂତ
ଅଶ୍ୱ-ଆରୋହଣ କର୍ମେ ହେବ ପ୍ରଶସ୍ତ ।
ଅସି ଧନୁର୍ବିଦ୍ୟା ନାନା ଶସ୍ତ୍ରେ ଶ୍ରମ
ଅଙ୍ଗବଳେ ମାଲ୍ଲସାଧନ ହିଁ ଉତ୍ତମ ।
ଅରୁଣୋଦୟରୁ ସାରି ସ୍ନାନ ମାର୍ଜ୍ଜନ
ଅଥ ସନ୍ଧ୍ୟା ପୂଜା ଜପ ଦେବଅର୍ଚ୍ଚନ ।
ଅନୁଶ୍ରବଣ ପୁରାଣ ଇଷ୍ଟ ଦର୍ଶନ
ଅନ୍ନଦାନ ଦେଇ ବିପ୍ରେ କର ଭୋଜନ ।

---

ଯେ ଅଗମ୍ୟା ସ୍ତ୍ରୀ ଗମନ କରେ, ଯେ ଜୀବବଧ କରେ, ଯେ ଅଜାଣତରେ ମାରି ଧନ ଲୁଣ୍ଠିନିଏ, ଯେ ଖୁସିରେ ସର୍ବଦା ନାନା ଜୀବ ମାରେ, ଗୋପନରେ ଯେ ଅନ୍ୟ ଲୋକଙ୍କ ଗୃହରେ ନିଆଁ ଲଗେଇଦିଏ, ଯେ ଖାଦ୍ୟରେ ବିଷ ଦେଇ ମାରେ, ଯେ ଅବିଦ୍ୟା ପ୍ରଚାର କରି ବେଦମାର୍ଗକୁ ଉଚ୍ଛନ୍ନ କରେ, ଯେ ଶତ୍ରୁକୁ ଗୋପନ କଥା କହିଦେଇ ଗଡ଼ ମଧ୍ୟକୁ ଆଣି ନଗର ଲୁଟ କରାଏ, ଯେ ମିଛରେ ନାନା ପ୍ରକାର ଚୁଗୁଲି କରେ, ସେ ଲୋକ ପୂଜାଯୋଗ୍ୟ ହୋଇଥିଲେ ସୁଦ୍ଧା ତାକୁ ଦଣ୍ଡ ଦେବ । ତୁମ୍ଭେ କ୍ଷତ୍ରିୟ କୁଳରେ ଜାତ, ତେଣୁ ଘୋଡ଼ାଚଢ଼ାରେ ଦକ୍ଷ ହେବା ଉଚିତ । ଖଣ୍ଡା, ଧନୁ ଓ ଅନ୍ୟାନ୍ୟ ନାନା ଶସ୍ତ୍ରଚାଳନାରେ ପରିଶ୍ରମ କରିବ । ମଲ୍ଲବିଦ୍ୟା ସାଧନ କରି ଦେହ ବଳ ବଢାଇବ । ଅରୁଣୋଦୟରୁ ଉଠି ସ୍ନାନ ସାରି ସନ୍ଧ୍ୟା, ପୂଜା, ଜପ, ଦେବାର୍ଚ୍ଚନାଦି କରି ପୁରାଣ ଶୁଣିବ ଓ ଇଷ୍ଟଦେବଙ୍କ ଦର୍ଶନ କରିବ । ତତ୍ପରେ ବ୍ରାହ୍ମଣଙ୍କୁ ଅନ୍ନଦାନ କରି ଭୋଜନ କରିବ ।

ଅହନଦ୍ରା ଅବହିତ ଅଟଇ ବଡ
ଅଙ୍ଗ ଅଳସ ହୋଇଲେ ଦଣ୍ଡେ ପଡୁଡ ।
ଅଥାନ୍ତରେ ସଭା କରି ବସ ବାହାର
ଅନ୍ତର୍ଗତେ ଘେନ ଯେଉଁ କଥା ଯାହାର ।
ଅର୍ଜ୍ଜନ ବ୍ୟୟ ସଞ୍ଚୟ ଲଭ ଅଲଭ
ଅନ୍ୟାୟ ନ୍ୟାୟ ଯେ ଆୟ ଯଥାର୍ଥେ ହେବ ।
ଅନୁଗତ ଜନଙ୍କର ପୋଷଣ ଭାର
ଅଶ୍ୱ ଗଜ ପଶୁରକ୍ଷଣାଦି ସମ୍ଭାର ।
ଅନଷ୍ଟ ଇଷ୍ଟ ସନ୍ଦେଶ ବୁଝିବା ପାଇଁ
ଅନୁଦିଗେ ଚର ପେଷ ସାକାଙ୍କ୍ଷ ହୋଇ । ୮୫ ।
* ଅରିମିତ୍ର ସମ ଏ ଯେ ତିନ ପ୍ରକାରେ
ଅନ୍ତର ନୃପତ ଶତ୍ରୁ ପର ବେଭାରେ ।
ଅଟେ ତା ସନ୍ନିଧି ରାଜା ମିତ୍ର ପ୍ରମାଣ ।
ଅରିମିତ୍ର ତା ପୁରତ ନୃପତ ଜାଣ ।
ଅପରେ ସମ ଉତ୍ତମ ମଧ୍ୟମ ବେନି
ଅପ୍ରୀତ ପ୍ରୀତ ଅସ୍ନେହ ସ୍ନେହରୁ ହୋଇ ।୮୮।

---

ଦିନରେ ଶୋଇବା ଅନୁଚିତ । ଯେବେ ଶରୀର ଅତି ଅଳସ ହୋଇଥାଏ,ତେବେ ଦଣ୍ଡେ ଖଣ୍ଡେ ଶୋଇପଡିବ । ତତ୍ପରେ ବାହାରେ ସଭା କରି ବସିବ । ଯେ ଯାହା ଆପତ୍ତି କରିବ, ତାହା ମନ ଦେଇ ଶୁଣିବ । ଆୟ, ବ୍ୟୟ, ସଞ୍ଚୟ, ଲଭ, ଯତ, ଅନ୍ୟାୟ, ନ୍ୟାୟ, ଚାକରଙ୍କର ବେତନ ପ୍ରଭୃତି କଥା, ଘୋଡ଼ା, ହାତୀ ପ୍ରଭୃତି ପଶୁମାନଙ୍କର ରକ୍ଷା ପ୍ରଭୃତି ବୁଝିବ । ଭଲ ମନ୍ଦ ଖବର ଜାଣିବା ପାଇଁ ଚାରିଆଡ଼େ ଚର ପେଷିବ । ଅନ୍ୟ ଦେଶର ରାଜା ଶତ୍ରୁ, ମିତ୍ର, ସମ ଏହି ତିନି ପ୍ରକାର ହୋଇଥାନ୍ତି । ନିକଟବର୍ତ୍ତୀ ରାଜା ଶତ୍ରୁ, ତାହା ପାଖ ରାଜା ମିତ୍ର ଓ ତାହା ପାଖ ରାଜା ଅରିମିତ୍ର ବୋଲି କଥିତ ହୁଅନ୍ତି । ଅନ୍ୟାନ୍ୟମାନେ ସମ, ଉତ୍ତମ ଓ ମଧ୍ୟମ ବୋଲି କଥିତ । ଏହା ସ୍ନେହ, ଅସ୍ନେହ, ପ୍ରୀତ ଓ ଅପ୍ରୀତ ବଶରୁ ସ୍ଥିର କରାଯାଏ । ଖଣ୍ଡା ଟାଣ

* ଅନନ୍ତରମରିଂ ବିଦ୍ୟାଦରିସେବିନମେବ ଚ ।
ଅରେରନନ୍ତରଂ ମିତ୍ରମୁଦାସୀନଂ ତୟୋଃ ପରଂ ।
ମନୁ । ୭ । ୧୫୮

ଅସି ଷାଣ ଥିଲେ ସର୍ବେ ମାତ୍ର ଶଙ୍କିତ
ଅଲ୍ପ ଊଣା ହେଲେ ତାର ମିତ୍ର ଅମିତ୍ର ।
ଅବନୀ-ଭୋଗ କରିବା କାର୍ଯ୍ୟ ନୃପର
ଅବୋଧ ହୋଇବା କଥା ଅଟେ ଭଗ୍ନର । ୯୦ ।
ଅଷ୍ଟଦୁର୍ଗେ ଦୁଃଖମାନଙ୍କରେ ନିର୍ମିତ *
ଅଚଳ-ଆବୃତ ଗଡ଼ ବଡ଼ ପ୍ରଶସ୍ତ ।
ଅଶ୍ମକାନ୍ଥ ଅମ୍ବୁ ପୂର୍ଣ୍ଣ ଜଳୀ ଯେ ଧନ୍ୟ
ଅରଣ୍ୟସ୍ଥ ବାଂଶ ଅଗ୍ର ଗଡ଼ ସାମାନ୍ୟ ।
ଅଥ ମାଟିକାନ୍ଥ ଗୁଡ଼ା ଏଥୁଁ ନ୍ୟୂନ
ଅତି ଊଣା ଫାମ୍ପଲ୍ କୀଲକୀ ବଧାନ ।
ଅଦ୍ରି ମଧ୍ୟ ଗଡ଼ ଯେ ବଧାତା ନିର୍ମାଣ
ଅନ୍ନ ଜଳ ଦଳ ବଳ ନଳୀ କମାଣ,
ଅପ୍ରମିତ ଦାରୁ ଗୁଳି ଥିବ ଯେ ତହିଁ
ଅସୂନ ବେନି ପ୍ରକଟ ଗୁପତ ହୋଇ । ୯୫ ।
ଅର୍ଦ୍ଧକୋଶେ ଆଗେ ପଛେ ଚଉକି ଥିବେ
ଅନ୍ୟ ଦେଶେ ଭୁମି ନ କଳବେ ତା ଜେବେ ।

---

ଥିଲେ ( ଯୁଦ୍ଧ ସାମର୍ଥ୍ୟ ଥିଲେ ) ସମସ୍ତେ ଶଙ୍କା କରୁଥାନ୍ତି । ତାହା ଅଳ୍ପ ଊଣା ହେଲେ ମିତ୍ର ମଧ୍ୟ ଅମିତ୍ର ହୁଅନ୍ତି । ପୃଥିବୀକୁ ଭୋଗ କରିବା ରାଜାର କାର୍ଯ୍ୟ ବୋଲି ଅଜ୍ଞାନମାନେ କହୁଥାନ୍ତି । ଅଷ୍ଟଦୁଃଖରେ ନିର୍ମିତ ପର୍ବତ ବେଢିଥିବା ଗଡ଼ ସବୁଠାରୁ ଶ୍ରେଷ୍ଠ । ପଥର କାନ୍ଥ ଓ ପରିଖା (ଗଡଖାଇ) ବେଷ୍ଟିତ ଗଡ଼ ମଧ୍ୟମ, ଜଙ୍ଗଲର ବାଉଁଶ ବେଷ୍ଟିତ ଗଡ଼ ଅଧମ ଶ୍ରେଣୀର ଅଟେ । ମାଟିକାନ୍ଥର ଗଡ ଏହାଠାରୁ ନ୍ୟୂନ । ଫାମ୍ପଲ କୀଲକୀ ବଧିର ଗଡ ସବୁଠାରୁ ହୀନ (?) । ପର୍ବତବେଷ୍ଟିତ ଗଡ ବଧାତାନିର୍ମିତ ( ପ୍ରାକୃତିକ ) ଅଟେ । ଏଥିରେ ଖାଦ୍ୟ ଦ୍ରବ୍ୟ, ଯନ୍ତ୍ର, ସୈନ୍ୟ ନଳୀ (ବନ୍ଧୁକ), କମାଣ ( ତୋପ ), ପ୍ରଚୁର (ଦାରୁ) ବାରୁଦ ଓ ଗୁଳି ସର୍ବଦା ମହଜୁଦ୍ ଥିବ । ଦୁଇଟି ଗୁପ୍ତଦ୍ୱାର ମଧ୍ୟ ଥିବ । ଆଗରେ ଓ ପଛରେ ପ୍ରତି ଅଧକୋଶରେ ଚଉକୀ (ଜଗୁଆଳ) ଥିବେ । ଅନ୍ୟ ଦେଶର କେହୁ ଯେପରି ଏଥି ମଧ୍ୟରେ ପଶି ସୈନ୍ୟ, ସ୍ଥାନ ପ୍ରଭୃତିର କଳନା ନ କରିବେ, ତାହାର ବ୍ୟବସ୍ଥା କରାଯିବା ଉଚିତ୍ ।

* ଅଷ୍ଟ ଦୁଃଖେ ଦୁର୍ଗମାନଙ୍କରେ ?

ଅଗୋଚରେ କେହି ଗଡ଼େ ପଶିବେ ନାହିଁ
ଅବନୀଶ ଏ ଦୁର୍ଗେ ରହିବା ଯୋଗାଇ ।
ଅଶ୍ମକାନ୍ତ ଜଳୀ ଗଡ଼ ଶ୍ରମ ବହୁତ
ଅଷ୍ଟକୋଣାକୃତରେ ସେ ହୋଏ ନିର୍ମିତ ।
ଅଧୋଭାଗେ କାନ୍ତେ ଧାଉଡ଼ିଆ ପହଣ୍ଡ
ଅଷ୍ଟ ଅଷ୍ଟ ହାତେ ଖେପିଥିବ ଯେ ଗୁଣ୍ଡ ।
ଅନ୍ତରେ ଏଥିର ଦେବ ଜଜାଲ୍ ନଳୀ
ଅନୁରୂପେ ଭଣ୍ଡୀ ସ୍ଥାନମାନଙ୍କୁ କଳି । ୧୦୦ ।
ଅଧ ଊର୍ଦ୍ଧ୍ୱ ସମ ଆଉ ଉହାଡ଼ ସ୍ଥଳ
ଅଭେଦ ଗୁଳ କାଣ୍ଡ-କୁଳ ଥିବ ମୂଳ ।
ଅଥ ମଧ୍ୟ ଚୃଚ୍ଛକୋଣ କାନ୍ଥୁ ବଳାଇ
ଅଶ୍ମରେ ଦୃଢ଼ ମେରଦା ଥିବ ତୋଳାଇ ।
ଅଗ୍ରେ ଦେବ ପାଶେ ତାର ଖେପିଲେ ନଳୀ
ଅଭେଦ କାନ୍ଥ ତଳକୁ କାଟିବ ଗୁଳି ।
ଅମ୍ବୁ ଜଳୀ ଏ ଉଭାରୁ ଅଗ୍ରେ ବେଷ୍ଟିତ
ଅତ ନିମ୍ନ ନକ୍ର ଚକ୍ର ଥିବେ ଅମିତ ।

---

ଅଜାଣତରେ କେହି ଏ ଦୁର୍ଗରେ ପ୍ରବେଶ କରିବେ ନାହିଁ । ଏହି ପ୍ରକାର ଦୁର୍ଗରେ ରାଜାର ରହିବା ଉଚିତ । ପଥର କାନ୍ଥ ଜଳଖାଇ ବେଷ୍ଟିତ ଗଡ଼ ନିର୍ମାଣରେ ବଡ଼ ପରିଶ୍ରମ ଲାଗେ । ଏହାର ଆକୃତି ଆଠକୋଣିଆ ହୁଏ । କାନ୍ଥତଳେ ଧାଉଡ଼ିଆ ପହଣ୍ଡ ଥିବ । ପ୍ରତି ଆଠହାତ ଅନ୍ତରରେ ଗୋଟିଏ ଗୋଟିଏ ତୋପ ଖଞ୍ଜାଥିବ । ଏହି ତୋପମାନଙ୍କ ମଝିରେ ଦୁଇ ଦୁଇ ଗୋଟି ଜଜାଲ୍ ନଳ ଖଞ୍ଜା ହୋଇଥିବ । ତାହା ସବୁ ଉପଯୁକ୍ତ ଭଣ୍ଡି (ପାଚେରି ମଝିରେ ଭିତରୁ ଗୁଳି ମାରିବାପାଇଁ ଥିବା ଛିଦ୍ର) ଯାଗାମାନଙ୍କରେ ଥିବ । ତଳ, ଉପର ଓ ଉହାଡ଼ ଯାଗାମାନଙ୍କରେ ଗୁଣ କାଣ୍ଡ ପ୍ରସ୍ତୁତ ରହିଥିବ । ଦୁର୍ଗକାନ୍ଥ ମଧ୍ୟସ୍ଥାନ ଚୃତ୍ତକୋଣ ପରିମାଣ ହୋଇଥିବ । ତାହାର ମଧ୍ୟରେ ପଥରରେ ଖୁବ୍ ଦୃଢ଼ ମେରଦାଟିଏ ତୋଳା ହୋଇଥିବ । ତାହାର ଉପରେ ଦୁଇ ପାଖରେ ନଳ ବସାଇ ଗୁଳିକଲେ କାନ୍ଥତଳ ପର୍ଯ୍ୟନ୍ତ ଯେପରି ଗୁଳି କାଟିବ, ତାହା କରିଯାଇଥିବ । ଏହା ପରେ ଗଡ଼ଖାଇ ଥିବ । ସେ

ଅସ୍ତ୍ରନ ନଳ ଉପରେ ବାନ୍ଧି ପାଷାଣ
ଅଶନ୍ନ ସମ କପାଟ ଦୃଢ଼େ ଘଟଣ । ୧୦୫ ।
ଅନୁକ୍ଷଣ ଦ୍ୱାରେ ଥିବେ ସୁରକ୍ଷ ନର ?
ଅନେକ ପ୍ରକାରେ ଥିବ ଶସ୍ତ୍ରାସ୍ତ୍ରବାର ।
ଅନ୍ତରେ ଗଡ଼ର ଥିବ ଭଣ୍ଡୂଳ ପୁର
ଅଲଗା ନିର୍ଜନ ସ୍ଥାନେ ବାରୁଦଘର ।
ଅସିଢ଼ାଲ ଧନୁଶର ଶାବେଲ ନଳୀ
ଅର ଆଦି ଅସ୍ତ୍ରଧାରୀ ଯେ ମହାବଳୀ ।
ଅଶ୍ୱ ହାତୀ ଓଟ ଗଞ୍ଜ ଶଗଡ଼ ଯାନ
ଅନ୍ତିକେ ତାଙ୍କର ହେବ ଏତେ ସଦନ ।
ଅଥ ପୁଷ୍କରିଣୀ ଉପବନ ଆଖଡ଼ା
ଅମାର ନାନା ଇନ୍ଧନ ଯେ ରାଜଲୋଡ଼ା ।
ଅନୁରୂପ ସ୍ଥାନେ କରିଥିବା ଏମାନ ।
ଅରିମିବ ଚନ୍ଦ ବୃଦ୍ଧି ନୃପସଦନ । ୧୧୦ ।
ଅଭ ପ୍ରଭବନ୍ତ ଶିଳେ ହେବ ନବର
ଅମର ଭୁବନ ହେବ ତଥି ଆଗର ।
ଅନୁକୋଣେ ମେରଦାରେ ପତାକାଗଣ
ଅଭ ଠାଣ ବାଜୁଥିବ ବୀର ନିଶାଣ ।

---

ଅତି ଗଭୀର ଓ କୁମ୍ଭୀରସମୂହରେ ପୂର୍ଣ୍ଣ ହୋଇଥିବ । ସେ ଖାଇ ଉପରେ ପଥରରେ ବାନ୍ଧିଏ ତିଆର କରାଯାଇଥିବ । ସେଠାରେ ବଜ୍ରପରି ଠାଣ କବାଟ ମଧ୍ୟ ତିଆରି କରିଥିବ । ଦୁଆରେ ସବୁବେଳେ ସଶସ୍ତ୍ର ପ୍ରହରୀ ଥିବେ । ନାନାପ୍ରକାର ଅସ୍ତ୍ର ଶସ୍ତ୍ର ମଧ୍ୟ ଥିବ । ଗଡ଼ ମଝିରେ ଖାଦ୍ୟଭଣ୍ଡାର ଓ ନିର୍ଜନ ସ୍ଥାନରେ ବାରୁଦ-ଘର ଥିବ । ଅସି, ଢାଲ, ଧନୁଶର, ଶାବେଲୀ, ବନ୍ଧୁକ, ଚକ ଆଦି ଅସ୍ତ୍ରଧାରୀ ବୀରମାନଙ୍କର, ଘୋଡ଼ା, ହାତୀ, ଓଟ ପ୍ରଭୃତି ପଶୁମାନଙ୍କର, ଗାଡ଼ି, ଶଗଡ଼ ପ୍ରଭୃତି ଯାନମାନଙ୍କର ରହିବା ସ୍ଥାନ ତାଙ୍କ ନିକଟରେ କରାଯାଇଥିବ । ତତ୍ପରେ ପୋଖରୀ, ବଗିଚା, ଆଖଡ଼ା ( ମଲ୍ଲବିଦ୍ୟା ଶିଖିବା ସ୍ଥାନ ) ରାଜାଙ୍କର ବ୍ୟବହାର୍ଯ୍ୟ ଯାବତୀୟ ଇନ୍ଧନର ଭଣ୍ଡାର ତିଆରି କରିଥିବ । ଜ୍ୟୋତିଷ ମତରେ ଅରିମିହ—ଚକ ବୃଦ୍ଧି ଅତି ଉଜ୍ଜ୍ୱଳ ( ଠାଣ ? ) ପଥରରେ ରାଜାଙ୍କ ରହିବା ଘର ତିଆରି କରିବ । ରାଜାଙ୍କର ଗୃହ ଆଗରେ ଦେବାଳୟ ତିଆରି ହେବ । ଗୃହର ସବୁ କୋଣରେ ମେରଦା ଉପରେ ପତାକା ଦିଆଯାଇଥିବ । ସେଠାରେ ବୀରବାଦ୍ୟ ବାଜୁଥିବ ।

ଅରୁଣ ଅସ୍ତରେ ବୁଲୁଥିବ ଚଉକୀ
ଅନ୍ତରେ ଭିତରେ ବାଦ୍ୟ ବଜାଇ ଡ଼ାକି ।
ଅନୁରୂପେ ଯେ ଯେଉଁ ମୁରୁଚା-ରକ୍ଷକ
ଅନିଶେ ପାଳିରେ ଜଗିଥିବେ ସେ ଲୋକ ।
ଅନ୍ନ ବସନେ ସେ ହୋଇଥିବେ ସୁମନ
ଅସ୍ତ୍ରାଭ୍ୟାସ କରୁଥିବେ ସକଳ ଦିନ ।
※ ଅସ୍ୱବାଂଶ ଗଡ ଜଗିଥିବେ ସତତେ
ଅଭେଦ୍ୟ ହୁଅଇ ଏହା ବଗୃର ଶତ୍ରେ ।
ଅବନୀପତି ବିବେକୀ ହୋଏ ଯେମନ୍ତ
ଅଜ୍ଞ ଲୋକହିଁ ତା ହେତୁ ହୋଏ ପଣ୍ଡିତ ।
ଅକର୍ମ ଅଧର୍ମ ଯେବେ କରେ ରାଜନ
ଅଗୁଣମାନ ଲଭଇ ଉତ୍ତମ ଜନ ।
ଅନ୍ତଃକରଣ ଯାହାର ଅଟେ ନିର୍ମଳ
ଅଳ୍ପ ଉପଦେଶରେ ସେ ଜାଣେ ସକଳ । ୧୨୦ ।
ଅଟ ତୁମ୍ଭେ ତ ବିବେକୀ ସର୍ବାଂଶେ ଧୀର
ଅନୁସରି ପ୍ରଜା ପାଳି ସଂସାର କର ।

---

ସନ୍ଧ୍ୟା ହେଲେ ବାହାର ପଟେ ଓ ଭିତର ପଟେ ବାଦ୍ୟ ବଜାଇ ଡାକ ମାରି ଚଉକୀ ( ଜଗୁଆଳ ) ବୁଲୁଥିବ । ମୁରୁଚ୍ଚର ରକ୍ଷକମାନେ ପାଳିକରି ସର୍ବଦା ନିଜ ନିଜ ମୁରୁଚ୍ଚକୁ ଜଗିଥିବେ । ଅନ୍ନ, ବସ୍ତ୍ର ଉତ୍ତମରୂପେ ପ୍ରଦାନ କରି ସେମାନଙ୍କ ମନକୁ ପ୍ରଫୁଲ୍ଲ ରଖିଥିବ । ସେମାନେ ସବୁଦିନେ ଅସ୍ତ୍ରଶସ୍ତ୍ର ଅଭ୍ୟାସ କରୁଥିବେ । ଅସ୍ୱବାଂଶ ଗଡ଼କୁ ( ବାଉଁଶ ବୃକ୍ଷ ବେଷ୍ଟିତ ଗଡକୁ ) ସର୍ବଦା ଜଗିଥିଲେ ତାହା ଅଭେଦ୍ୟ ହୁଏ । ରାଜା ଯେବେ ବିବେକୀ ହୁଏ, ତେବେ ମୂର୍ଖ ଲୋକେ ମଧ୍ୟ ପଣ୍ଡିତ ହୁଅନ୍ତି । ରାଜା ଅକାର୍ଯ୍ୟ ବା ଅଧର୍ମ କଲେ ଉତ୍ତମ ବ୍ୟକ୍ତିଙ୍କର ମଧ୍ୟ ଅଧୋଗତି ହୁଏ । ଯାହାର ମନ ନିର୍ମଳ, ସେ ଅଳ୍ପ ଉପଦେଶଦ୍ୱାରା ମଧ୍ୟ ସବୁ ଜାଣିପାରେ । ତୁମ୍ଭେ ବିବେକବାନ୍ ଓ ସର୍ବବିଷୟରେ ବିଦ୍ୱାନ୍ ଅଛ । ଅନୁସରଣ କରି ( ପ୍ରଜାମାନଙ୍କ ମନ ନେଇ ) ରାଜ୍ୟ ପାଳନପୂର୍ବକ ସଂସାରଯାତ୍ରା ନିର୍ବାହ କର ।

* ବାର୍କ୍ଷ ଦୁର୍ଗ ନାମରେ ମନୁରେ ଉକ୍ତ । ଅ୭।୭୦

ଅଶେଷ ସନ୍ତୋଷ ହେଲ ଆମ୍ଭର ଯେଣୁ
ଅବଶ୍ୟ ଇଷ୍ଟ କାମନା ପାଇବ ଏଣୁ ।
ଅଙ୍ଘ୍ରିରେଣୁ କରେ ଘେନି ଶିରେ ମୋ ଦେଲେ
ଅନ୍ତର ହେଉଛୁ ବୋଲି ହସି ଭାଷିଲେ ।
ଅନୁଜ୍ଞା ତାଙ୍କର ଶୁଣି ପୁଲକେ ଗାତ୍ର
ଅକ୍ଷିରୁ ଆନନ୍ଦଜଳ ହୋଇଲା ଜାତ ।
ଅତି କୃତକୃତ୍ୟେ ନମସ୍କାର ହୋଇଲି
ଅଶେଷ ପାତକପୁଞ୍ଜ ଗଲା ବୋଇଲି ।
ଅନୁରାଗ-ଅପାଙ୍ଗ ମୋ ଉପରେ ଢାଳି
ଅଜ୍ଞାନ-ନାଶନ ବିପ୍ର ଆନନ୍ଦେ ଚଳି ।
ଅସିତଗଳ-ଗଉରୀ-ବିପ୍ର-ଚରଣ
ଅଭୀଷ୍ଟରେ କରେ ବଳଭଦ୍ର-ଶରଣ । ୧୨ ।

---

# ଏକଚତ୍ୱାରିଂଶ ଛାନ୍ଦ

## ଭବ-ପରଚୟ

ରାଗ—ପାଞ୍ଚପୋଇ

**ଅଥ ସୁମନେ ସୁମନେ ଶୁଣ ସାବଧାନେ ଭାରତଖଣ୍ଡ ଉତ୍କଳଦେଶେ**
**ଅମ୍ବୁନିଧି-ତଟ-ବଟ ନିକଟେ ପ୍ରକଟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରେଇଶେ ।୧।**

---

ମୁଁ ଅତି ସନ୍ତୁଷ୍ଟ ହୋଇଅଛି । ଅତଏବ ତୁମ୍ଭର ଅଭିଳାଷ ପୂର୍ଣ୍ଣ ହେବ । ଏହା କହି ପାଦଧୂଳି ହାତରେ ଆଣି ମୋ ମୁଣ୍ଡରେ ଦେଲେ । ଯାଉଛି ବୋଲି ହସି କହିଲେ । ମୁଁ କୃତକୃତ୍ୟ ହୋଇ ନମସ୍କାର କଲି ଓ କହିଲି—"ମୋର ଅଶେଷ ପାପରାଶି ଆଜଠାରୁ ନଷ୍ଟ ହେଲା ।' ତହୁଁ ଅଜ୍ଞାନନାଶୀ ବ୍ରାହ୍ମଣ ମୋତେ ସ୍ନେହ-ପୂର୍ଣ୍ଣ ଚକ୍ଷୁରେ ଚାହିଁ ଆନନ୍ଦରେ ଚାଲିଗଲେ । (ଅସିତଗଳ) ନୀଳକଣ୍ଠ ମହାଦେବ, ପାର୍ବତୀ ଓ ସେହି ବିପ୍ରଙ୍କ ଚରଣ ବଳଭଦ୍ରଭଞ୍ଜ ଶରଣ କରୁଅଛନ୍ତି ।

---

ଏକଚତ୍ୱାରିଂଶ ଛାନ୍ଦ

ସୁମନେ—ପଣ୍ଡିତମାନେ । ସୁମନେ—ମନକୁ ସ୍ଥିର କରି । ସାବଧାନେ—ଏକାଗ୍ରମନରେ ଶୁଣ । ଭରତଖଣ୍ଡେ—ଭାରତବର୍ଷରେ । ଉତ୍କଳ ଦେଶରେ (ଅମ୍ବୁନିଧି ତଟ ବଟ ନିକଟେ) ସମୁଦ୍ର କୂଳରେ କଳ୍ପବଟ ନିକଟରେ ( କ୍ଷେତ୍ର-ଈଶ ) କ୍ଷେତ୍ରସ୍ୱାମୀ ଶ୍ରୀପୁରୁଷୋତ୍ତମ ପ୍ରକଟ ହୋଇଅଛି । (ଅଘବନ୍ତ ପାପନାଶ କରଣେ)

ଅଘବନ୍ତ ପାପନାଶ-କରଣେ ପ୍ରକାଶ ଚତୁର୍ଦ୍ଧାମୂର୍ତ୍ତ ସିଂହାସନେ
ଅଭୀଷ୍ଟ ହିଁ ଚତୁର୍ଭୁଜ ଦେବତାଙ୍କ ଟେକ ବହନ୍ତି ମନୁଜ ଯେଉଁ ସ୍ଥାନେ ।୨।
ଅଛି ଏହି ପୁଣ୍ୟକ୍ଷେତ୍ର ଉତ୍ତରେ ସୁଚିତ୍ର ରାଜ୍ୟ ନାମ ତାର କେନ୍ଦୁଝରି
ଅଦ୍ରି-ଅରଣ୍ୟ-ଆବୃତ ଅତ୍ୟନ୍ତ ନଷ୍ଟେନ୍ଦ୍ର ଶତ୍ରୁ ଅଲଙ୍ଘିତ-ଦୁର୍ଗ ପୁରୀ ।୩।
ଅନୁକମ୍ପା ଚତ୍ତେ ବହି ତୈଲୋକ୍ୟଗୋସାଇଁ ବଳଭଦ୍ର ପ୍ରଭୁ ଯହିଁ ବସେ
ଅବ୍ଜ-କର୍ପୂର-ସୁନ୍ଦର ଆନନ୍ଦକନ୍ଦର ଅଟନ୍ତି ଦେବାଧିଦେବରାଜେ ।୪।
ଅନ୍ତର୍ଯ୍ୟାମୀ ସେ ଅଭୀଷ୍ଟ-ଫଳଦାତା କଷ୍ଟ-ନାଶନ ନୀଳବସନ ବଳ
ଅନ୍ୟ ଆଶା କରି ଦୂର ତାଙ୍କ ଶ୍ରୀପଦ୍ମର ବଳଭଦ୍ର ଭଞ୍ଜ କରେ ମୂଳ ।୫।

## ଗୀତ

### ରାଗ—ବଙ୍ଗଳାଶ୍ରୀ

ଅଛନ୍ତି ଭଦ୍ରା ଜଗନ୍ନାଥ ସୁଦରଶନ ପ୍ରଭୁ-ସନ୍ନିଧିରେ
ଅତିଶୋଭାଦୀପ୍ତ ଚତୁର୍ଦ୍ଧାମୂର୍ତ୍ତ ରତ୍ନସିଂହାସନ-ପରେ । ୧ ।

---

ପାପୀମାନଙ୍କର ପାପକୁ ନାଶ କରିବାପାଇଁ ସିଂହାସନରେ ଚତୁର୍ଦ୍ଧା ମୂର୍ତ୍ତି ହୋଇ ଅଛନ୍ତି । ଯେଉଁ ସ୍ଥାନେ ( ପୁରୁଷୋତ୍ତମ କ୍ଷେତ୍ରରାଜରେ ) (ମନୁଜମାନେ) ମନୁଷ୍ୟମାନେ (ଚତୁର୍ଭୁଜ ଦେବତାଙ୍କର) ବିଷ୍ଣୁଙ୍କର ଟେକକୁ (ବହନ୍ତି) ଧାରଣ କରିଥାନ୍ତି । ଏହି (ପୁଣ୍ୟକ୍ଷେତ୍ରର) ପବିତ୍ର କ୍ଷେତ୍ରର ଉତ୍ତର ଦିଗରେ (ସୁଚିତ୍ର) ଉତ୍ତମ ପ୍ରାକୃତିକ ଚିତ୍ରରେ ପରିପୂର୍ଣ୍ଣ (ଅଦ୍ରି, ଅରଣ୍ୟ ଆବୃତ) ପର୍ବତ ଓ ଜଙ୍ଗଲରେ ବେଷ୍ଟିତ (ଅତି ନଷ୍ଟେନ୍ଦ୍ର) ଭୟରହିତ କେନ୍ଦୁଝରି ନାମେ (ରାଜ୍ୟ) ଗୋଟିଏ ରାଜ୍ୟ ଅଛି । ଯାହାର ନଗରୀର ( ରାଜଧାନୀର ) ଦୁର୍ଗ କେବେ ଶତ୍ରୁଦ୍ୱାରା ଲଙ୍ଘିତ ହୋଇ ନାହିଁ । ଯେଉଁ ସ୍ଥାନରେ ତ୍ରୈଲୋକ୍ୟ ଗୋସାଇଁ ବଳଭଦ୍ର ପ୍ରଭୁ (ଚିତ୍ତେ) ହୃଦୟରେ (ଅନୁକମ୍ପା) ଦୟା ବହି ବାସ କରିଅଛନ୍ତି । ସେ ଦେବାଧିଦେବରାଜ (ଅବ୍ଜକର୍ପୂରସୁନ୍ଦର) ଚନ୍ଦ୍ର ଓ କର୍ପୂର ପରି ସୁନ୍ଦର ଓ ଆନନ୍ଦର କନ୍ଦର ସ୍ୱରୂପ ଅଟନ୍ତି । ଆହୁରି ମଧ ଅନ୍ତର୍ଯ୍ୟାମୀ ସମସ୍ତ ହୃଦୟରେ ବାସ କରନ୍ତି ଓ (ଅଭୀଷ୍ଟ) ବାଞ୍ଛିତ ଫଳ ଦାନ କରନ୍ତି, କଷ୍ଟ ନାଶ କରନ୍ତି ଏବଂ (ନୀଳବସନ) ନୀଳାମ୍ବର ଓ 'ବଳ' ନାମରେ ଅଭିହିତ ଅଟନ୍ତି । ବଳଭଦ୍ର ଭଞ୍ଜ ଅନ୍ୟ ଆଶା ଦୂର କରି ତାଙ୍କ ଶ୍ରୀପାଦକୁ ମୂଳ କରିଛି ।

ସେହି କେନ୍ଦୁଝରରେ ଶ୍ରୀବଳଭଦ୍ର ପ୍ରଭୁଙ୍କ (ସନ୍ନିଧିରେ) ନିକଟରେ (ଭଦ୍ରା) ସୁଭଦ୍ରା ଓ ଜଗନ୍ନାଥ ଅଛନ୍ତି । ସେହି ଚତୁର୍ଦ୍ଧା ମୂର୍ତ୍ତି ଶୋଭାରେ ଦୀପ୍ତ ହୋଇ ରତ୍ନସିଂହାସନ ଉପରେ ବାସ କରିଅଛନ୍ତି । (ଦିବ୍ୟ ଜନମରେ) ସୁନ୍ଦର କାରୁକାର୍ଯ୍ୟରେ

ଅନୁପମ ଉଚ୍ଚ ଦିବ୍ୟରମ୍ୟସଙ୍ଗ ଦେଉଳ ମଞ୍ଚ-ମଣ୍ଡନ
ଅଗ୍ରେ ମୁଖଶାଳୀ ତିନଦିଗେ ବିଜେ କୋଲ ନୃସିଂହ ବାମନ । ୨ ।

ପୋଇ

ଅନ୍ତିକରେ ବିମଳାକ୍ଷୀ ସରସ୍ୱତୀ ଲକ୍ଷୀ (କ୍ଷ୍ମୀ) ଅଛନ୍ତି ପୁରୁଷୋତ୍ତମ ପରି
ଅଗ୍ରେ ବିନତାକୁମର ବାଞ୍ଛାପ୍ରଦ ହର କାଳିକାଦେବୀ ବିଜୟ କରି । ୧ ।
ଅଗ୍ନିକୋଣରେ ପ୍ରକଟ ଗାବକର୍ଣ୍ଣବଟ* ସେ ତଳେ ବଟମଙ୍ଗଳା ଦେବୀ
ଅନ୍ଧ ପଙ୍ଗୁ କୁବୁଜାହିଁ ସୁଖୀ ହୋନ୍ତି ଯହିଁ ଏ ବଳଦେବ ପ୍ରଭୁଙ୍କୁ ସେବି ।୨।
ଅନ୍ୟ ଆଶା କରି ଦୂର ସେବନ୍ତି ଲୋକର ବାଞ୍ଛା ବଳାଇ ଦିଅନ୍ତି ଫଳ
ଅଣୁକୁହିଁ ପରବତ କରନ୍ତି ଜଗତ-ନାଥ ଅଚଳହିଁ ରେଣୁତୁଲ । ୩ ।
ଅକରମ ଦୀନ ନର ଅମରଈଶ୍ୱର ଅଧିକାର ପାଏ ତତପର
ଅଷ୍ଟନୟନ-ଲେଖନ ଭାଲ-ଲିପି ଆନ କରିପାରନ୍ତି ଯେ ନୀଳାମ୍ବର ।୪।
ଅଲଭକୁ ବଡ କଷ୍ଟ ଲଭରେ ପ୍ରକଟ ଅନ୍ତର୍ଯ୍ୟାମୀ ସର୍ବଭୂତବାସୀ
ଅବନୀଶ ବଳଭଦ୍ର କରୁଣାସମୁଦ୍ର ଶରଣ କରୁଛି ଅହର୍ନିଶି । ୫ ।

(ସଙ୍ଗ) ଶୋଭିତ (ଅନୁପମ ଉଚ୍ଚ) ଯାହାର ଉଚ୍ଚତା ସଙ୍ଗେ ତୁଳନା ଦେବାକୁ ନାହିଁ । ଏହି ପ୍ରକାର ଦେଉଳ ଅଛି । ତାହାର ଅଗ୍ରରେ (ପୂର୍ବ ଦିଗରେ) ମୁଖଶାଳୀ ଓ ଅନ୍ୟ (ତିନି ଦିଶା) ତିନଦିଗରେ (କୋଳ) ବରାହ ମୂର୍ତ୍ତି, ନୃସିଂହ ଓ ବାମନ ମୂର୍ତ୍ତି ବିଜେ ହୋଇଅଛନ୍ତି । (ଅନ୍ତିକରେ) ନିକଟରେ (ବିମଳାକ୍ଷୀ) ବିମଳା ସରସ୍ୱତୀ ଓ ଲକ୍ଷ୍ମୀ ପୁରୁଷୋତ୍ତମ ପରି (ସେଠାରେ ଯେତାରେ ଯେପରି ଅଛନ୍ତି, ସେହିପରି) ଏଠାରେ ଅଛନ୍ତି । (ଅଗ୍ରେ) ସମ୍ମୁଖରେ (ବିନତାକୁମର) ଗରୁଡ ଓ (ବାଞ୍ଛାପ୍ରଦ ହର) ବାଞ୍ଛେଶ୍ୱର ନାମକ ମହାଦେବ ଓ କାଳିକାଦେବୀ ବିଜେକରିଛନ୍ତି।ଅଗ୍ନିକୋଣରେ(ଗାବକର୍ଣ୍ଣବଟ) ଗୋକର୍ଣ୍ଣୀ ବରଗଛ (ଏହା ଏ ପର୍ଯ୍ୟନ୍ତ ବିଦ୍ୟମାନ; ଏହାର ପତ୍ର ଟିକି ଗୋରୁକାନ ପରି) ଅଛି । ତାହା ତଳରେ ବଟମଙ୍ଗଳା ଦେବୀ ଅଛନ୍ତି । ଏହି ବଳଦେବଙ୍କୁ ସେବାକରି ଅନ୍ଧ, ପଙ୍ଗୁ, (କୁବୁଜା) କୁଜା ଲୋକମାନେ ସୁଖୀ ହେଉଅଛନ୍ତି । ଅନ୍ୟ ଆଶା ଦୂର କରି ଅନନ୍ୟମନରେ ସେବୁଥିବା ଲୋକର ବାଞ୍ଛା ଅପେକ୍ଷା ଅଧିକ ଫଳ ଦିଅନ୍ତି । ଯେ ପ୍ରଭୁ ବଳଦେବ (ଅଣୁକୁ) ସୂକ୍ଷ୍ମଧୂଳିକୁ ଓ (ଅଚଳ)ପର୍ବତକୁ (ରେଣୁତୁଲ) ଧୂଳିପରି କରିପାରନ୍ତି । (ଅକରମ) ହତଭାଗ୍ୟ (ଦୀନ) ଦରିଦ୍ର ଲୋକ (ଅମର-ଈଶ୍ୱର ଅଧିକାର) ଇନ୍ଦ୍ରର ଅଧିକାର ପାଏ । (ଅଷ୍ଟନୟନ) ବିଧାତାର କପାଳ ଲେଖାକୁ ଯେ ଅନ୍ୟଥା କରିପାରନ୍ତି । ସେ (ଅଲଭକୁ) ଅଭକ୍ତିକୁ ବଡ଼ କଷ୍ଟ ଅର୍ଥାତ୍ ଦୁର୍ଲ୍ଲଭ ଓ (ଲଭକୁ) ଭକ୍ତିକୁ (ପ୍ରକଟ) ସୁଲଭ ଅଟନ୍ତି । (ଅବନୀଶ) ରଜା ବଳଭଦ୍ର ସେହି (କରୁଣା ସମୁଦ୍ର)କୃପାସାଗରଙ୍କୁ (ଅହର୍ନିଶି) ସର୍ବଦା ଶରଣ କରୁଛି ।

* ଗୋକର୍ଣ୍ଣୀ ବରଗଛ, ଏହି ବୃକ୍ଷ ଏ ପର୍ଯ୍ୟନ୍ତ ଜୀବିତ ଅଛି ।

ଗୀତ

ଅଖିଳ ପ୍ରସିଦ୍ଧି ବୈତରଣୀ ନଦୀ ଯେଉଁ ସ୍ଥଳରୁ ଉଦ୍ଭୂତ
ଅନ୍ତକର ଚଣ୍ଡ-କର-ଦଣ୍ଡ-ଖଣ୍ଡ ନାମ ଗୋନାସିକା ତୀର୍ଥ । ୧ ।
ଅଷ୍ଟ-ଏକ ସୁର-ନଦୀ ମଧ୍ୟେ ସାର ଶୀତଳ ନିର୍ମଳ ଜଳ
ଅଚଳ ଶିଳ ଶାଳ ତାଳ ରସାଳ ମାଳ ମାଳ ବେନି କୂଳ । ୨ ।

ଘୋଷା

ବିରୋଧାଭାସ

ଅଛି ଯହିଁ ଭ୍ରମିବାର ନାହିଁ ଭ୍ରମିବାର ଜଳ ଯୋଗରେ ସର୍ବଦା କାଳ
ଅହିମକର ଯେ ସ୍ଥଳେ ନ ପଡେ ସେ ଜଳେ ଅହି-ମକର ପଡିବା ମୂଳ ।୧।
ଅବଶ୍ୟହିଁ ବେନି କୂଳ ବୁଡାଇ ଯା ଜଳ ସେ ବେନି କୁଳ ଉଦ୍ଧରେ ପୁଣି
ଅଧୋଗତିଯା ପ୍ରତ୍ୟକ୍ଷହୋଏଦେଖ ଦେଖ ନିସ୍ତାରେ ସେ ଅଧୋଗତିପ୍ରାଣୀ।୨।

---

ଏହି କେନ୍ଦୁଝରରେ ଗୋନାସିକା ନାମକ ତୀର୍ଥସ୍ଥାନ ଅଛି । ଯେଉଁ ସ୍ଥାନରେ (ଅଖିଳ ପ୍ରସିଦ୍ଧି) ସମସ୍ତ ପୃଥିବୀରେ ଯାହାର ଖ୍ୟାତି ଅଛି ଓ (ଅନ୍ତକର) ଯମର (ଚଣ୍ଡ) ଅତି ତେଜୀୟାନ୍ (କରଦଣ୍ଡଖଣ୍ଡ) ହସ୍ତସ୍ଥିତ ଦଣ୍ଡକୁ ଯେ ଖଣ୍ଡନ କରିପାରେ, ଏ ପ୍ରକାର ବୈତରଣୀ ନଦୀ (ଉଦ୍ଭୂତ) ଜାତ ହୋଇଅଛି । ସେହି ବୈତରଣୀ ଅଷ୍ଟଏକ ସୁରନଦୀ—ନଅ ଗଙ୍ଗା ମଧ୍ୟରେ (ସାର) ଶ୍ରେଷ୍ଠ ଅଟେ । ଶୀତଳ ଓ ନିର୍ମଳ ଜଳଯୁକ୍ତା ଏହାର (ବେନିକୂଳ) ଦୁଇ କୂଳରେ (ଅଚଳ) ପର୍ବତ (ଶିଳ) ପଥର, (ଶାଳ) ଶାଳବୃକ୍ଷ,ତାଳଗଛ,(ରସାଳ) ଆମ୍ବଗଛ ମାଳ ମାଳ ହୋଇ ରହିଅଛନ୍ତି । ବିରୋଧାଭାସ:—ଆଭାସତ୍ୱେ ବିରୋଧସ୍ୟ ବିରୋଧାଭାସ ଉଚ୍ୟତେ । ବିରୋଧ:—ଯହିଁ ଭ୍ରମିବାର ଅଛି,ଭ୍ରମିବାର ନାହିଁ । ପରିହାର—ଯହିଁ ଯେଉଁଠାରେ (ଭ୍ରମିବାର) ଜଳଭଉଁରୀ ସମ୍ଭୂତ ଅଛି ଯହିଁ ( ଜଳ ଯୋଗରେ ) ଜଳ ହେତୁ ଅଥବା ଜଳଯୋଗରେ—ଜଳଖିଆ ଅର୍ଥାତ୍ ପାନାଶ କରିବାପାଇଁ ସର୍ବଦା (କାଳ) ଯମ (ଭ୍ରମିବାର) ବୁଲିବାର ନାହିଁ । ବିରୋଧ:—ଯେ ସ୍ଥଳେ ଅହିମକର ପଡେ ନାହିଁ, ଅଥଚ ଅହିମକର ପଡିବା ମୂଳ । ପରିହାର—ଯେଉଁ ସ୍ଥାନରେ (ଅ-ହିମକର) ସୂର୍ଯ୍ୟଙ୍କର ପ୍ରଖର କିରଣ ପଡେ ନାହିଁ;କିନ୍ତୁ (ଅହି) ସର୍ପ ଓ (ମକର) —ଜଳଜନ୍ତୁ ପଡିବା (ମୂଳ) ନିଶ୍ଚୟ ଅଟେ । ବିରୋଧ—ଯା ଜଳ ଅବଶ୍ୟ କୂଳ ବୁଡାଏ (ଅଥଚ) ବେନିକୁଳ ଉଦ୍ଧାରେ । ପରିହାର—ଯାହାର ଜଳ ନିଜର ଦୁଇ (କୂଳକୁ) ତୀରକୁ ବୁଡାଇ ସ୍ଥଳେ ଓ(ସ୍ନାନକରିବା ଲୋକର) ବେନିକୁଳ—ପିତୃ ଓ ମାତୃକୁଳକୁ ଉଦ୍ଧାର କରେ । ବିରୋଧ ·ଯାହାର ଅଧୋଗତି ପ୍ରତ୍ୟକ୍ଷ ହୁଏ, ସେ ଅଧୋଗତି ପ୍ରାଣୀକୁ ନିସ୍ତାରେ । ପରିହାର—ଯାହାର (ଅଧୋଗତି) ନିମ୍ନକୁ ଗମନ ଦେଖାଯାଏ ଓ ଯେ (ଅଧୋଗତି) ପାପିବ୍ୟକ୍ତିମାନଙ୍କୁ (ନିସ୍ତାରେ) ଉଦ୍ଧାର କରେ ।

ଅଟେ ଏହି ପଙ୍କବାର ନାଶେ ପଙ୍କବାର ଯହିଁ ଖଣ୍ଡଜଡ(?)ମହାଶୋଭି
ଅତଚୟ ଏ ଶୀତଳ-ଜଳେ ଜୁଷ୍ଟ ବଳବନ୍ତର ହୁଅଇ ତେଜପ୍ରଭି । ୩ ।
ଅବତୀର୍ଣ୍ଣ ଯା ଗିରିଶ-ଠାରୁ ପରିହାଶ ସେ ରସ ଯୋଗେ ହୁଅନ୍ତି ତୋଷ
ଅନୁଗତିକୁ ପଥରେ କରି କୁପଥରେ ଗତି କଲି କର୍ମ କରେ ନାଶ । ୪ ।
ଅଘସଂଘଟନପ୍ରାଣୀ-ମାନଙ୍କ ନିଶାଣୀ ସ୍ୱର୍ଗ ଅପବର୍ଗ ମାନଙ୍କୁ ଯେ
ଅମ୍ବୁ ସ୍ନାନ ପାନ କରି ସୁଖେ କେନ୍ଦୁଝରୀ-ନୃପ ବଳଭଦ୍ର ଭଞ୍ଜ ମଜ୍ଜେ ।୫।

ଗୀତ

ଅର୍କବଂଶେ ଜାତ କ୍ଷିତିଏ ବିଦିତ ଭଞ୍ଜ-ସଂଜ୍ଞା କ୍ଷିତିଖ୍ୟାତ
ଅସିବଳୁଁ କରି ଯେହୁ କେନ୍ଦୁଝରୀ ରାଜ୍ୟେ ହେଲେ ନରନାଥ । ୧ ।

---

ବିରୋଧ—ଏହା ପଙ୍କବାର ଅଟେ, ପୁଣି ପଙ୍କବାର ନାଶେ । ପରିହାର—ଏହା ପଙ୍କବାର ପଙ୍କୁଆ ପାଣିରେ ଯୁକ୍ତ ଅଟେ ଓ ପଙ୍କବାର—ପାପସମୂହ ନାଶେ । ବିରୋଧ—ଅତ (ଚୟ) ଆଶ୍ଚର୍ଯ୍ୟ ଶୀତଳ ଜଳରେ ସ୍ନାନରୂପ କାରଣରୁ ଉଷ୍ଣଗୁଣରୂପ ତେଜପ୍ରଭା ଜାତ ହେବା ବିରୁଦ୍ଧ । ପରିହାର—ଏହାର ଶୀତଳ ଜଳରେ ସ୍ନାନ କଲେ ଦିବ୍ୟଗୁଣ ଲାଭକରି ଲୋକ ତେଜସ୍ୱୀ ହୁଏ । ବିରୋଧ—ଯେ ଗିରିଶଠାରୁ ଜାତ, ତାହାର ରସରେ ଗିରିଶ ତୋଷ ହୁଅନ୍ତି, ଅର୍ଥାତ୍ କନ୍ୟାର ଶୃଙ୍ଗାରରେ ତୋଷ ହେବ ବିରୁଦ୍ଧ । ପରିହାର—ଯେ ଗିରିଶ୍ରେଷ୍ଠ ଗୋନାସାରୁ ଜାତ ହୋଇଛି, ତାହାର (ରସରେ)—ଜଳରେ (ଗିରିଶ) ମହାଦେବ ତୁଷ୍ଟ ହୁଅନ୍ତି । ବିରୋଧ—ଯେ ନିଜେ କୁପଥରେ ଗତି କରୁଛି, ସେ କୁପଥରେ ଯିବା ଲୋକର, କର୍ମକୁ ନାଶ କରିବା ବିରୁଦ୍ଧ । ପରିହାର—(ଅନୁଗତିକୁ) ଗମନକୁ (ପଥରେ) ପଥର ଉପରେ କରି (କୁପଥରେ) ଅସତ୍ ବାଟରେ ଯାଉଥିବା ଲୋକର ପାପକର୍ମକୁ ନାଶ କରେ । (ଅଘସଙ୍ଘଟନ ପ୍ରାଣୀମାନଙ୍କର) ପାପ କାର୍ଯ୍ୟ କରୁଥିବା ପ୍ରାଣୀମାନଙ୍କର ସ୍ୱର୍ଗକୁ ଧର୍ମ, ଅର୍ଥ, କାମ ଓ ମୋକ୍ଷରୂପ ପୁରୁଷାର୍ଥ ଲାଭ କରାଇବାକୁ ନିଶାଣୀ ବା ନିଶୁଣୀ ପରି ଅଟେ । ତାହାର ଜଳରେ ସ୍ନାନ ଓ ଜଳକୁ ପାନକରି କେନ୍ଦୁଝରୀ ରାଜା ବଳଭଦ୍ର ଭଞ୍ଜ ସୁଖରେ ମଗ୍ନ ହୋଇଅଛି ।

(ଅର୍କବଂଶେ) ସୂର୍ଯ୍ୟ ବଂଶରେ । (କ୍ଷିତିଏ) ପୃଥିବୀରେ ବିଦିତ—ପ୍ରସିଦ୍ଧ । (ଭଞ୍ଜସଂଜ୍ଞା) ଭଞ୍ଜ ଉପାଧିରେ କ୍ଷିତି ଖ୍ୟାତ—ପୃଥିବୀରେ ପ୍ରସିଦ୍ଧ । ଯେହୁ—ଯେଉଁ ଭଞ୍ଜ ଉପାଧିଧାରୀମାନେ (ଅସି ବଳୁଁ କରି) ଖଣ୍ଡା ଜୋରରେ ଅର୍ଥାତ୍ ପରାକ୍ରମଦ୍ୱାରା କେନ୍ଦୁଝର ରାଜ୍ୟରେ (ନରନାଥ) ରାଜା ହେଲେ ।

ଅନୁପୂର୍ବୁକ୍ଷେ ପୃଥ୍ୱୀକି ଭୋଗ କଲେ ଯଥାବଧି ରାଜଗୁଣେ
ଅର୍ଜିତ ଜଗଦୀଶ୍ୱର ଭଞ୍ଜ ମହାରାଜା ସକଳ-ଲକ୍ଷଣେ । ୨ ।

ପୋଇ

ଅଙ୍ଗ-ସିନ୍ଧୁ ରୁ ତାଙ୍କର ଇନ୍ଦୁ-ପରକାର ସମ୍ଭୂତ ହେଲି ମୁଁ ପୂର୍ବଫଳେ
ଅଙ୍କ ପରି ସରି ଅରି ମୋଠାରେ ଆବୋରି ରହିଲେ ଦଇବ-ଯୋଗବଳେ ।୧।
ଅବିଦ୍ୟାଦି ଏ ଦିବସ କାନ୍ତିକରେ କୃଶ ଅନନ୍ତ ଭ୍ରମଣ ନିତ୍ୟ ହୋଏ
ଅମା ପରି ତାପତ୍ରୟ ତନୁ କରେ କ୍ଷୟ ବୃଦ୍ଧି-ବିଷୟହିଁ ଚର ନୋହେ ।୨।
ଅଥ ଅଛି ଏ ସୁଯୋଗ ସାଧୁସୁରେ ଭୋଗ କରୁଥିବେ କି ସମ୍ପଦସୁଧା
ଅନୁକ୍ଷଣେ ପ୍ରଜାତାରି ଲଭୁଥିବେ ତୋଷ ନ ପାଇ ଅରୁଣ ତେଜବାଧା ।୩।

---

(ଅନୁପୂର୍ବୁକ୍ଷେ) ପୂର୍ବାନୁକ୍ରମେ ମହାରାଜା ପୃଥ୍ୱୀକୁ ( ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟାଦି ) ରାଜଗୁଣରେ ଯଥାବଧି ଭୋଗକଲେ । ସେହି ବଂଶରେ ସର୍ବରାଜଲକ୍ଷଣଯୁକ୍ତ ମହାରାଜ ଜଗଦୀଶ୍ୱର ଭଞ୍ଜ ଜାତହେଲେ । ତାଙ୍କ ଅଙ୍ଗରୂପ ସିନ୍ଧୁରୁ (ଇନ୍ଦୁପରକାର) ଚନ୍ଦ୍ରପରି ( ପୂର୍ବଫଳେ ) ପୂର୍ବ ଭାଗ୍ୟବଳରେ ମୁଁ ସମ୍ଭୂତ ହେଲି—ଜାତ ହେଲି । ଚନ୍ଦ୍ରଙ୍କୁ (ଅଙ୍କପରି) କଳଙ୍କ ପରି ମୋଠାରେ (ଅରି) ଶତ୍ରୁମାନେ (ଯୋଗବଳେ) କର୍ମାନୁସାରେ ( ଆବୋରି ରହିଲେ ) ଘେରି ରହିଲେ । ଚନ୍ଦ୍ରଙ୍କ କାନ୍ତିକୁ ଦିବସ (କୃଶ) ମ୍ଳାନ କଲା ପରି ମୋର (କାନ୍ତି) ଦେହ ତେଜକୁ ଅବିଦ୍ୟା (ଅଜ୍ଞାନ) ମ୍ଳାନ କରୁଛି । ଚନ୍ଦ୍ରଙ୍କର (ଅନନ୍ତରେ) ଆକାଶରେ (ନିତ୍ୟ) ସର୍ବଦା ଭ୍ରମଣ ହୁଏ; ମୋର ମଧ୍ୟ (ଅନନ୍ତ ଭ୍ରମଣ) ସର୍ବଦା ବୁଲିବା ଅଥବା ଅସଂଖ୍ୟ ଭ୍ରାନ୍ତି ଜାତ ହେଉଅଛି । (ଅମା) ଅମାବାସ୍ୟା ଚନ୍ଦ୍ରଙ୍କ ତନୁକୁ କ୍ଷୟ କଲା ପରି (ତାପତ୍ରୟ) ଆଧ୍ୟାତ୍ମିକ, ଅଧିଭୌତିକ ଓ ଅଧିଦୈବିକ ରୂପ ତ୍ରିତାପ ମୋର (ତନୁ) ଶରୀରକୁ କ୍ଷୟ କରୁଛି । ଚନ୍ଦ୍ରଙ୍କର (ବୃଦ୍ଧି) ବଢିବା ଯେପରି (ଚର) ସ୍ଥିର ନୁହେଁ, ମୋର ମଧ୍ୟ (ବୃଦ୍ଧି) ସମ୍ପତ୍ତି ବଢିବା ଚର ନୁହେଁ । ମୋର ଏ ସୁଯୋଗ ଅଛି କି ? ଚନ୍ଦ୍ରଠାରୁ (ସୁର) ଦେବତାମାନେ (ସୁଧା) ଅମୃତ ଭୋଗ କଲା ପରି ସାଧୁମାନେ ମୋଠାରୁ (ସମ୍ପଦ) ଧନ ଭୋଗ କରୁଥିବେ । ଚନ୍ଦ୍ରଙ୍କ ପାଖରେ ତାରାମାନେ ଥାଇ (ଅରୁଣ) ସୂର୍ଯ୍ୟ ତେଜ (ବାଧା) ପୀଡ଼ା ନ ପାଇ ଯେପରି ତୋଷ (ଉଜ୍ଜ୍ୱଳ) ହୋଇଥାନ୍ତି, ସେହିପରି ମୋ ପାଖରେ ମୋ ପ୍ରଜାମାନେ ଅନ୍ୟଠାରୁ ପୀଡା ନ ପାଇ ସବୁବେଳେ ତୋଷ ହୋଇଥାନ୍ତୁ । ଚନ୍ଦ୍ରଙ୍କ

ଅବନୀସ୍ୱନି ସଫଳ ହୋଇଥିବ ଠୂଳ ଅପାଳଙ୍କ ସ୍ପୃହା ନ ପୀଡ଼ିବ
ଅନ୍ଧ ମୋହ ମେଘଚୟ ଘୋଟି ଏ ଉଦୟ ବସ୍ୱଳବା ତୋଷ୍ ନ ମାଡ଼ିବ ।୪।
ଅକିଞ୍ଚନ-ସୂରି-ଦ୍ୱିଜ-ବୈଷ୍ଣବସମାଜ-ଗୁଣି-ଉଦ୍ଧୋରେ ଆସିବେ ଲୋଭେ
ଅବଘ୍ନରେ ଏତେ ହେଲେ ଭଞ୍ଜିରାଜ ବୋଲେ ଶଶାଙ୍କ ସାମ୍ୟ ରହିବ ଶୁଭେ ।୫।

ଗୀତ

ଅମ୍ବିକା ବିଳାସ ଗୀତ ଏଥୁ ଶେଷ ଏକତ୍ରିଂଶ ଏ ଛାନ୍ଦ
ଅକ୍ଷର-ନିୟମ ପାଦେ ଅଛି ଶ୍ରମ ଘେନିମ ଧୀର ବୋଧଦ । ୧ ।
ଅସିତଗଳ-ଉମାସୁତ ଶ୍ଳେଷରେ ସତୀବଶ୍ ଆଦ୍ୟ ଛାନ୍ଦେ
ଅନଙ୍ଗରସରେ ପଞ୍ଚପଦେ ଧ୍ରୁବପଦୀ ଦ୍ୱିତୀୟେ ସ୍ୱଚ୍ଛନ୍ଦେ । ୨ ।

ପୋଇ

ଅଗ୍ନିଷ୍ଟୋମେ ଦକ୍ଷ-ଧାତା-ନାଶ ସତୀଦେହୀ ଅନଳେ ହିାସିବା ତୃତୀୟରେ
ଅଥ ଚତୁର୍ଥେ ମହେଶ-କୋପେ ଦକ୍ଷନାଶ ହର ଅନୁତନ୍ତ୍ରା ପଞ୍ଚମରେ । ୧ ।
ଅଚଳେଶ ହିମଗିର ବର୍ଣ୍ଣନା ଗଉରୀ-ଜନ୍ମ ଷଷ୍ଠେ ସପ୍ତେ ବାଲଲୀଳା
ଅଷ୍ଟମରେ ବୟଃସନ୍ଧି ଉତ୍ତୁଙ୍ଗମବଧି ନବମେ ଶିବ ତପସ୍ୟାହେଳା । ୨ ।
ଅନଙ୍ଗର ଯୋଗେ ତପଭଙ୍ଗ ଫୁଲଧନୁ-ନାଶ ଦଶମଛାନ୍ଦରେ ଉକ୍ତ
ଅଙ୍ଗନା ତା ବିଳପିବା ସ୍ୱପ୍ନ ବଶେ ଶିବା-ବିରହ ଏକାଦଶରେ ଖ୍ୟାତ ।୩।

---

ହ୍ରାସ ସ୍ୱବି ସଫଳା ହେଲା ପର ଏ (ଅବନୀ) ରାଜ୍ୟ ମୋହ୍ରାସ୍ୱ ସଫଳା ହେଉ । ଅପାଳଙ୍କ ରୂପ ସ୍ପୃହା ମୋତେ ରାଶ ନ କରୁ । ମେଘଟି ଚନ୍ଦ୍ରଙ୍କର (ଉଦୟ ବସ୍ୱଜବା ତୋଷ୍କ) ଉଦୟକାଳରେ ଶୋଭା ପାଉଥିବା ଉଜ୍ଜ୍ୱଳତାକୁ ନଷ୍ଟ କରିଦିଏ; ମାତ୍ର ବିଷୟ ପ୍ରସ୍ତତର ମୋହ ରୂପ ମେଘ ମୋର (ଉଦୟ ବସ୍ୱଜବା ତୋଷ୍) ଉନ୍ନତି-କାଳରେ ଥିବା ତେଜକୁ ନ ମାଡ଼ୁ । ଚକୋରମାନେ ଚନ୍ଦ୍ର ନିକଟକୁ ଜ୍ୟୋତ୍ସ୍ନା ଲୋଭରେ ଆସିଲା ପର (ଅକିଞ୍ଚନ) ନିର୍ଦ୍ଧନ (ସୂରି) ଜ୍ଞାନୀ (ଦ୍ୱିଜ) ବ୍ରାହ୍ମଣ ଓ ବୈଷ୍ଣବ ସମାଜ ଏବଂ ଗୁଣବାନ୍ ବ୍ୟକ୍ତିମାନେ ( ଧନାଶାରେ ) ଆସିବେ କି ? (ଏତେ ହେଲେ) ଏହା ହେଲେ (ଶୁଭେ) ଉତ୍ତମରୂପେ ମୋର (ଶଶାଙ୍କ) ଚନ୍ଦ୍ର ସଙ୍ଗରେ (ସାମ୍ୟ) ସାଦୃଶ୍ୟ ରହିବ ।

—୦)*(୦—

ଅଥ ଦ୍ୱାଦଶେ ସ୍ୱପ୍ନ ତ୍ରୟୋଦଶେ ବିରହ ଚତୁର୍ଦ୍ଦଶେ ଉମା ତପଘୋରେ
ଅବନାରେ ପଦ ଶିବ ବିରହ-ଜଗ୍ଧାବ ପଞ୍ଚଦଶ ଛାନ୍ଦ ବୁଝ ଧୀରେ । ୪ ।
ଅଚେତନେ ଉମା-ସ୍ତୁତି ଷୋଡ଼ଶେ ପନ୍ଥ ସପ୍ତଦଶରେ ପ୍ରତିଜ୍ଞା ଶୋଭା
ଅଷ୍ଟାଦଶେ ହୋଇ ବିଭା ସମ୍ମତ ନୃପତି ବଳଭଦ୍ର ସେବେ ଶିବ-ଶିବା ।୫।

ଗୀତ

ଅଛି ଊନବିଂଶେ ପୁରବର୍ଣ୍ଣନା ସେ ବିଭା-ବିଜେ ବିଂଶ ଛାନ୍ଦେ
ଅମାନ-ସୁଷମ ମଣ୍ଡପ-ମଣ୍ଡଣି ଏକବିଂଶରେ ଆନନ୍ଦେ । ୧ ।
ଅଟେ ବିବାହ ଦ୍ୱାବିଂଶେ, ବରଯାତ୍ରୀ-ଚରିତ୍ର ତ୍ରୟୋବିଂଶରେ
ଅମ୍ବିକା ବେଶ କରଣ ମଧୁଶଯ୍ୟା ସୂଚିତ ଚତୁର୍ବିଂଶରେ । ୨ ।
ଅନଙ୍ଗ-କେଳି-ଶେଷେ ବେଶ-ବର୍ଣ୍ଣନ ଛଳେ ପଞ୍ଚବିଂଶେ ଉକ୍ତ
ଅଛି ଉତ୍ସବେ ଉମାକୁ ପରିହାସ ଷଡ଼ବିଂଶ ଛାନ୍ଦେ ସ୍ଥିତ । ୩ ।
ଅନେକ କାଳ ସମ୍ଭାରେ ଯଉତୁକ ସପ୍ତବିଂଶରେ ବର୍ଣ୍ଣନା
ଅଷ୍ଟାବିଂଶରେ କୈଳାସକୁ ବାହୁଡ଼ା-ବିଜେ ହର ଘେନି କନ୍ୟା । ୪ ।
ଅକ୍ଷରମନସା କନ୍ଦର୍ପେ ଊନତ୍ରିଂଶ ବରଷା ବିହାର
ଅକସ୍ମାତେ ମାନ ଉମାର କୁଅନ୍ତେ ତ୍ରିଂଶେ ସ୍ତୁତିକରେ ହର । ୫ ।
..ଅମଳ ଶରଦକାଳେ କେଳି ଏକତ୍ରିଂଶ ଛାନ୍ଦରେ ସ୍ୱଚ୍ଛନ୍ଦେ
ଅଥ ହିମେ ଭୋଗ ଦ୍ୱାତ୍ରିଂଶେ ଶିଶିର-କେଳି ତ୍ରୟସ୍ତ୍ରିଂଶ ଛାନ୍ଦେ । ୬ ।
ଅଟେକ୍ୱୀ-ବିହାର ବସନ୍ତ ଋତୁରେ ଚଉତ୍ରିଂଶରେ ବର୍ଣ୍ଣନ
ଅଚଳସୁତା-ଗର୍ଭରୁ ପଞ୍ଚତିରିଶରେ ଜନ୍ମ ମହାସେନ । ୭ ।
ଅତି ଉତ୍ସବେ ତାଣ୍ଡବ ନୃତ୍ୟରଙ୍ଗ ଗୀତବାଦ୍ୟ ଷଟତ୍ରିଂଶେ
ଅସୁର ତାରକାକୁ ନାଶେ କୁମାର ସପ୍ତତିରିଶେ ପ୍ରକାଶେ । ୮ ।
ଅଷ୍ଟତିରିଶଛାନ୍ଦରେ ଶୃଙ୍ଖଳାରେ ଠାକୁରାଣୀ ସ୍ତୁତି ଭାଷେ
ଅନେକ ମତ ଘେନି ପ୍ରେମ ଭକ୍ତିକି ସ୍ଥାପିଛି ଅଣଚାଳିଶେ । ୯ ।
ଅଥ ଚାଳିଶେ ସ୍ୱପ୍ନାଦେଶେ ସୁବିପ୍ର-ଉପଦେଶ ରଜନୀତି
ଅନ୍ତ ଛାନ୍ଦ ଏକଚାଳିଶରେ ନିଜ-ଗ୍ରନ୍ଥର ପ୍ରସଙ୍ଗେ ରତି । ୧୦ ।
ଅଧମୋଦ୍ଧାରଣ ବଳଭଦ୍ର ଗୁଣ-ମହିମା ସ୍ଥାନ ପ୍ରାସାଦ
ଅଘବିନାଶିନୀ ବୈତରଣୀ ନଦୀ ପ୍ରଭାବରେ ଗୀତ ପଦ । ୧୧ ।
ଅନୁକ୍ରମ ଏକଚାଳିଶ ଛାନ୍ଦରେ ଘେନ ହେ ଧୀବରବନ୍ତ
ଅବଶେଷେ ଅମ୍ବିକା-ବିଳାସ ସମ୍ପୂର୍ଣ୍ଣ ହୋଇ ଭଣେ ଭଞ୍ଜବୀର । ୧୨ ।

———

# ପରିଶିଷ୍ଟ

## ବାମଣ୍ଡା ଭୋଇଲି

ଭୋଇଲି—ସୂର୍ଯ୍ୟବଂଶେ ଅବତାର
ବଳଭଦ୍ର ଭଞ୍ଜ ନୃପବର
ବନ୍ଧୁଗଣଙ୍କୁ କରି ପ୍ରକାଶ
ଗଙ୍ଗବଂଶ ନାଶ କରିବା ଆଶ ଯେ
ସାଜିଲେ ଚତୁରଙ୍ଗ ସଇନ
ଝଙ୍କେ ବେନି ଭାଇ ଅଶ୍ୱ ଚଢ଼ିଣ ଯେ ।୧।

ଭୋଇଲି— ଆଗରେ ତାରିଣୀ ଛତ
ଧଣ୍ଡା ଉପରେ ଉଡ଼ଇ କେତ
ଦଶ ଅବତାର ବାନା
କେତେ ସୈନ୍ୟ କେ କରିବ କଳଣା ଯେ,
ଓଟ ଉପରେ ବାଜେ ନିଶାଣ
ମିଥିନ ମେଘ କି କରେ ଗର୍ଜନ ଯେ ।୨।

ଭୋଇଲି— ବାହାର ଗହଣେ ଦଳ
ଯେସନ୍ତେ ଘୋଟଇ ପ୍ରଳୟ କାଳ
କେତେ କେତେ ସହସ୍ର ଲେଖା ନାହିଁ
ଚାଲନ୍ତେ ସୈନ୍ୟ ମେଦିନୀ କମ୍ପଇ ଯେ ।
କେ କହୁ ଅଶ୍ୱମାନଙ୍କ ଗତି
ଚଢ଼ିଣଛନ୍ତି ଭାଇ ବନ୍ଧୁ ମନ୍ତ୍ରୀ ଯେ ।୩।

ଭୋଇଲି— ଦେଖି ସେ ଥାଟ ମଧ୍ୟର
ତହିଁ ଉପରେ ପଡେ ଚାମର
* ରହକଳା ଉପରେ କମାଣ
ନନ୍ଦିଘୋଷ କିବା କରେ ଗର୍ଜନ ଯେ ।
କେ କହୁ ସୂର୍ଯ୍ୟବଂଶ କୀରତି
ସାରିବେ ବାମଣ୍ଡା ଶିରୀ ସମ୍ପତ୍ତି ଯେ ।୪।

ଭୋଇଲି— ଝଙ୍ଗେ ଗଡ଼ ଦୁଆରେ
ତୋଣାମାଳ ମାନ ଶାସନରେ
ଦଧି ମାଛ ପୂର୍ଣ୍ଣକୁମ୍ଭ ଦ୍ୱାରେ
ଦେଖି ମହାରାଜା ଝଙ୍କେ ସଧୀରେ ଯେ ।

---

*ସ୍ଥାନାନ୍ତରିତ କରିବାପାଇଁ ଯେଉଁ ଚକ୍ରଯୁକ୍ତ ବଇଠ ଉପରେ ତୋପନଳୀ ଥୁଆ ହୁଏ ।

ନାରୀଙ୍କ ହୁଳହୁଳି ଶବଦେ ।
ଶୁଣି ଆନନ୍ଦ ସୂର୍ଯ୍ୟବଂଶ-ଚନ୍ଦ୍ର ଯେ । ୫ ।
ଚୋଇଲ୍—ପ୍ରବେଶ ପାଠ ପଥର
ଅଶ୍ୱ ଉତ୍ତୁରି ବେନି ସୋଦର
ଯନ୍ତ୍ରାଯନ୍ତ୍ର ହୋନ୍ତି ସଇନ
ସୁମନ୍ତ୍ର ପେଲେ ସୁନାବାଉ ଘେନ ଯେ
ବିଜୟେ ରାଜା ଜଗମୋହନ
ଶ୍ରୀ ବଳଦେବଙ୍କୁ କଲେ ଦର୍ଶନ ଯେ । ୬ ।
ଚୋଇଲ୍—ବଳଦେବଙ୍କଠାରୁ ଶାଢ଼ୀ ପାଇ
ବିଜେ କଲେ ତହୁଁ ବେନି ଭାଇ
ସୈନ୍ୟ ବଳରେ ନୁହେଁ ଗୋଚର
ଅନୁକୂଳ କଲେ ସିଦ୍ଧ-ମଠର ଯେ
ଦୁଇ ଦିନ ରହିଲେ
ସକଳ ଚରିତ୍ର ବେବର୍ତ୍ତା କଲେ । ୭ ।
ଚୋଇଲ୍—ଆରଦିନ ନିତ୍ୟକର୍ମ ସାରି
ଜଗନ୍ନାଥଙ୍କୁ ଦର୍ଶନ କରି
ସନ୍ୟ ଛାଇଲେ ମେଦିନୀପୁରେ
* ଧଂସା ବାଜଇ ଘାଟି ତଳରେ ଯେ
ବିଜୟ କଲେ ନୃପତି
ଅଶ୍ୱପଦଘାତେ କମ୍ପଇ ପୃଥ୍ୱୀ ଯେ । ୮ ।
ଚୋଇଲ୍—ଯାଇ ପ୍ରବେଶ ବୈତରଣୀ
ସେଦିନ ସେଠାରେ ରହିଣି
କେଳ ବୁଢ଼ି ହୋଇଲା ନିଃଶେଷ
ସଇନ ଡାକ କା ସମୁଦ୍ର-ଘୋଷ
ଲୋକେ ପିଇ ସେ ଜଳ
ତେ ବୋଲେ ଏ ଜାଗା ବଡ଼ ଶୀତଳ । ୯ ।
ଚୋଇଲ୍—ଆରଦିନ ପ୍ରବେଶ ଗୋଡ଼ାର
ଲଇଡ଼ାକୁ ବରଗିଲେ ଗୃର
ଆଜ୍ଞା ଘେନଣ ଗଲେ ଡ଼ଗର
ପ୍ରବେଶ ହେମେ ଲଇଡ଼ା ଗଡ଼ର ଯେ

---

* ବଡ ନାଗରାଜାଙ୍କୀୟ ଯୁଦ୍ଧବାଦ୍ୟବିଶେଷ ।

ଶୁରଙ୍କୁ ଦେଖିଣ ଡର
ରାଜା ଛୁଟଲେ ଘାଟି ମାଲ୍ୟଗିରି । ୧୦ ।

କୋଇଲି—ଲଇଡା ରାଜା ଦେଲେ ଭାଷା
ଜୀବନକୁ ମୋର ବଡ଼ ଆଶା
ସେ ତ ସୂର୍ଯ୍ୟବଂଶ ଦଣ୍ଡଧାରୀ
ଦଳବେହେର କଥା ମୁଁ ନାହିଁ ପାସୋରି ଯେ
ମୁଁ ତ ନ ଯାଏ କେଣେ
ମୋ ଲୋକେ ଯାଆନ୍ତୁ ରାଜାଗହଣେ ଯେ । ୧୧ ।

କୋଇଲି—ଲଇଡ଼ାରୁ ପାଲେ ଥୋକେ ଆସି
ବେଗେ ଚରଣେ ଶରଣ ପଶି
ରାଜା ରହିଁ କଲେ ଭେଟଭାଇ
ନାଗରା ଧ୍ୱନିରେ ପୃଥ୍ୱୀ କମ୍ପଇ ଯେ
ପାଲେ ଶୁଣି ଚମକ
କେବଳ ଭରସା ଅଛୁ ଘାଟିକ ଯେ । ୧୨ ।

କୋଇଲି—ଯାଇ ପ୍ରବେଶ କୁଲପାଲର *
ଥାଟେ ମିଳଲେ ନଦୀକୂଳର
ଯେଣ୍ଟା ବସା ଆରମ୍ଭିଲେ ଥୋକେ
ଝୁଣ୍ଟୁଳ ପଡଇ ସଇନ ଡ଼ାକେ ଯେ
ହ୍ରେଷା କରନ୍ତି ଘୋଡ଼ା
ପାଲେ ଅରହର କମ୍ପେ ଲଇଡା ଯେ । ୧୩ ।

କୋଇଲି—ସେ ଦିନ ରହିଲେ ମହାରାଜା
ରହେ ବଜାଇଲେ ବୀରବାଜା
ଛାଞ୍ଚ ବହୁତ କମାଣ ଗୁଳି
ଲଇଡ଼ା ଦେଶ ହେଲା ହାଲହୁଲି ଯେ
ନଗି ହୋଇଲା ଶେଷ
ଆରଦିନ ଠିଆନାଲେ ପ୍ରବେଶ ଯେ । ୧୪ ।

କୋଇଲି—ଠିଆନାଲେ ରହି ଦୁଇ ଦିନ
ଭାହିଁ ସୁମାରି କରିଲେ ସୈନ୍ୟ

* ପାଲଲହଡ଼ାସ୍ଥ ଗ୍ରାମର ନାମ ।

ଆର ଦିନ ବରଷାରେ ରହି
ସେ ଦିନର ଖବର କହି ନୁହଇ ଯେ
ଦିନ ଶେଷ ହୋଇଲା
ବଣାଇ ଓଡ଼କାଲ ସ୍ୱହେ ଭେଟିଲା ଯେ । ୧୫ ।

ବୋଇଲ—ଆର ଦିନ କଲେ ଅନୁକୂଳ
ମାଣ୍ଡ ରହିଲେ ସକଳ ବଳ
ସ୍ୱର୍ଗି ହୋଇଲେ ଲୋକେ ବଡ଼ ରେଖା
କମାଣ ରଣ୍ଡରେ ନ ଶୁଭେ କଥା ଯେ
ବାରବୋଠ କମ୍ପଇ
ସେଦିନ ସ୍ୱନ ବେଗେ ଗଲା ପାହି ଯେ । ୧୬ ।

ବୋଇଲ—ଭନ୍ତୁଁ ହୋଇଲା ନାଗର ଧ୍ୱନି
ବାନ୍ଧି କମର ସବୁ ସଇନ
ଅଶୁଆରେ ଘୋଡ଼ା ଚଢ଼ି କରି
ଗଡ କରି ଗଲେ ସେ ଫଣ୍ଡିବାସୀ ଯେ
ଭକୁଣିଆ ପାଇକ
ଖଗଲୁ ଦିଶେ ମୁନ ଝକଝକ ଯେ । ୧୭ ।

ବୋଇଲ—ମାଣ୍ଡ ରହିଛନ୍ତି ବଳ
ଦେହି ନଗାନଗି ବହେ ଝାଲ
ସୁଣା ବାଜଏ ଥାଠ ମଧ୍ୟର
ଜଳାଧଳା ଛନ୍ଦ ଉଭେ ଆଗର ଯେ
ଚନ୍ଦ୍ର ସୂର୍ଯ୍ୟ ଭଗ୍‌ସ
ବେକ ଗୁମର ପଡ଼େ ବେକ ପାଶ ଯେ । ୧୮ ।

ବୋଇଲ—ଯାଉଁ ଯାଉଁ କଲେ ରଣ
ଦେ ବୋଲେ ମାର ମାର ଏହି କ୍ଷଣ
ଦେଖି ଏକଲକ୍ଷ ବାନା ଚକ୍ର
ହେଲେ ଯଦୁମଣି ହତଜ୍ଞାନ ଯେ
ଚଲେ କ୍ରୁଦ୍ଧସାଗର
କେ ଯୁଦ୍ଧ କରିବ ଯାଙ୍କ ସଙ୍ଗର ଯେ । ୧୯ ।

ଢୋଇଲ୍—ସେଦିନ ରଚ୍ଛଲା ସମର
ରଜା ବଳେ ବାହ୍ମଣୀ କୂଳର
ସୈନ୍ୟଙ୍କର ଦେଖି ବରବଶ
ମହାରଜା-ଚଢ଼ ଅଭ ଉଲ୍ଲାସ ଯେ
× × ×
× × × × ।୨୦।

ଢୋଇଲ୍—ଆଛ ରହିଛନ୍ତ ଢୋଟା ମାଡ
ଖଲମାନେ ନାହିଁ ଛଡ଼ାଛାଡ
ଅଗ୍ନି ଜଲଇ ସବୁ ବସାର
କପିଲାସ ଜଳେ କା ଜଲେ ନାଗର
ଦୃଶ୍ୟ ହୁଏ ଏମନ୍ତ
ମହାସଇନ ଦେ କରବ ଅନ୍ତ ଯେ ।୨୧।

ଢୋଇଲ୍—ଏମନ୍ତେ ପାହିଲା ରଜନୀ
ସଜ ହୋଇଲେ ସବୁ ସଇନ
ଆଛେ ଥୋକେ ହୋଇଲେ ବାହାର
ଘାଟି ଢୋଟା ଧର ଚଲେ ସମର ଯେ
ବାବୁ ଭ୍ରମରବର
ଘୋଡ଼ା ଧୂଆଁଇଲେ ଗୁଳ-ଦାନ୍ତିର ଯେ ।୨୨।

ଢୋଇଲ୍—ମାନଧାତା ହରଚନ୍ଦନ
ଘାଟି ଉପରେ ହାଙ୍କିଲେ ଯାନ
ପଦ୍ମଭଞ୍ଜ ଘନ ରଣେ ମିଶି
ଘାଟି ଲଞ୍ଜି ଧର ଯୁଦ୍ଧେ ବଳସି ଯେ
ଆଉ ଯେତେ ସିପାଇ
ରଣରଙ୍ଗରେ ଜ୍ଞାନ ତାଙ୍କ ନାହିଁ ଯେ ।୨୩।

ଢୋଇଲ୍—ଏଣେ ପୂଜା ସାର ନୃପବର
ବଳେ ବଇର-ଶଲ ଉପର
ଆଛେ ବେଢିଛନ୍ତ ଚଉପାଶେ
ନକ୍ଷତ୍ର ମଧ୍ୟେ କା ଚନ୍ଦ୍ରମା ଦିଶେ ଯେ

ଝୁଣ୍ଟେ ବୀର ପତାକା
ଆଗରେ ଯାଗଡା ପାଡଇ ଡ଼ଙ୍କା ଯେ । ୨୪ ।

ଢୋଇଲି—ଥୋକେ ପାଇକ ରଙ୍ଗା ଗହଣ
ଖଟେ ନୃପତି ଦେଖିବେ ରଣ
ଧୂଳି ଉଡେ ଢମାଣ ରଣ୍ଡର
ଖଣ୍ଡଆ ଗୁଳି ଅତି ଅଗୋଚର ଯେ
ଆଖି ପିଚ୍ଛଡ଼ା କରି
ପଶିଲେ ସଇନ ବୋଲ୍ଲଣ ହ୍ବର ଯେ । ୨୫ ।

ଢୋଇଲି—ଘାଟି ମାଇଲେ ଭ୍ରମର-ବର
ଆସି ରଙ୍ଗାଙ୍କୁ କହିଲ ଗୁହୁର
ଶୁଣି ନୃପତି ଅଶ୍ବ ଧୂଆଁଇ
ଗୁରୁଆଢ଼େ ଅଶ୍ବେ ପଶିଲେ ଢେଇଁ
ଶୁଣି ଢମାଣ ରଣ୍ଡ
ଖଣ୍ଡଆ ଭାଙ୍ଗିଲ ବନ୍ଧୁକ ଛାଣ୍ଡ ଯେ । ୨୬ ।

ଢୋଇଲି—ସୈନ୍ୟ ପଶି ଗୁଈଁ ସନ୍ଧି
କେତେ ମଲେ କେତେ ହେଲେ ବନ୍ଦୀ
ଗଡ ମଧ୍ୟରେ ରୁଧିର ବହଇ
ଯଦୁମଣିଙ୍କୁ ଧଇଲେ ଯାଇଁ ଯେ
ଗଦା ଭୃଞ୍ଜି ରଖିଲେ
ବାମଣ୍ଡା ରଙ୍ଗା ଖୃଡ଼ୁତା ବୋଇଲେ ଯେ । ୨୭ ।

ଢୋଇଲି—କେତେ ମୁଣ୍ଡ ପଠାଇଲେ ହାଣି
କେତେ ବନ୍ଦୀ କରି ବାନ୍ଧି ଆଣି
ମୁଣ୍ଡମାନଙ୍କୁ ଧରିଣ କରେ
ବାହାର ସୈନ୍ୟ ଯେ ଯେଉଁ ଦ୍ବାରେ ଯେ
ଦ୍ବାରେ ବିଜୟ ରଙ୍ଗା
ମାରି ପାଇକାଲି ବଜାଇ ବାଜା ଯେ । ୨୮ ।

ଢୋଇଲି—ତହୁଁ ବଳେ ନୃପବର
ଗୁରୁଆଢ଼େ ବେଢ଼ି ଅଶ୍ବାର

ଝାଳେ ଶ୍ରୀଅଙ୍ଗ ଅଛୁ ଭିଜି
ଲଙ୍କା ଧ୍ୱଂସି କି ବଳେ ରଘୁପତି ଯେ
ସଙ୍ଗେ ଛନ୍ତି ସୋଦର
ଲକ୍ଷଣ ସମାନ ଭ୍ରମରବର ଯେ । ୨୯ ।

ଭୋଇଲ୍—ବଣାଇ-ଗଡ଼ କୁଅଁର
ଆସି ଭେଟିଲେ ଘାଟିତଳର
ନଗମାନ ଆସୁଥିଲେ ମୋଡ଼ି
ଗଡ଼ ପୋଡ଼ି ଦେଖି କରି ଦାମୁଡ଼ି ଯେ
ଗୃହୁଁ ହେଲେ ଭେଳେଡ଼ା
ସାଇଲେ ଭଞ୍ଜି ସେ ଅଜେୟ ଲଙ୍କା ଯେ । ୩୦ ।

ଭୋଇଲ୍—ତହୁଁ ବିଜୟ କଲେ ନୃପତି
ବଳେ ବରଷ ତମ୍ବୁର ଭତି
*ଯଦୁମଣିଙ୍କୁ ଦେଖିଲେ ଯାଇଁ
ସେଦିନ ଦର୍ଶନ କଣ୍ଠ ନୁହଇ ଯେ
ଭାଗ୍ୟ ଥିଲା ତାଙ୍କର
ଶାଙ୍କୋଳ ପଡ଼ିଲା ଦେଶ ଗୋଚର ଯେ । ୩୧ ।

ଭୋଇଲ୍—ଚାରି ଦିନ ଗଡମାରି
ନଦୀରେ ବାରୁଣୀ ସ୍ନାନକରି
ବାଦ୍ୟ ବଜାଇ ଜୟ ନାଗରି
ସୈନ୍ୟଙ୍କର କି କହିବା ଭରି ଯେ
ଧଣ୍ଡା ଆଗେ ଚଳଇ
ନିଜ ରାଜ୍ୟକୁ ବଳେ ବେଗ ଧାଇ ଯେ । ୩୨ ।

---

* ବାମଣ୍ଡା ରାଜାଙ୍କ ଖୁଡ଼ୁତା



Printed by B. K. Kar. B. A. at the Saraswata Press, Cuttack—1937.

# ଶୁଦ୍ଧିପତ୍ର

ଅତି ପ୍ରଯତ୍ନସତ୍ତ୍ୱେ ଦୃଷ୍ଟିରୁ ଏଡ଼ି ଯେ କେତୋଟି ମୁଦ୍ରାଙ୍କନ-ପ୍ରମାଦ ଏହି ପୁସ୍ତକରେ ଆତ୍ମପ୍ରକାଶ କରିଛି, ଦୟାପୂର୍ବକ ସେଗୁଡ଼ିକୁ ସଂଶୋଧିତ କରି ପୁସ୍ତକ ପାଠ କରିବାକୁ କ୍ଷମାଶୀଳ ସହୃଦୟ ପାଠକଗଣଙ୍କୁ ସବିନୟ ଅନୁରୋଧ ।

| ପୃଷ୍ଠା | ପଦ | ପାଦ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ୧ | ଟୀକାମୂଳଶ୍ଳୋକ | | ମୋହାନ୍ଧ | ମୋହାନ୍ଧୁ |
| ୧୧ | ୧୯ | ୧ | ଅମୃକ୍ | ଅମୃଦ |
| ୧୨ | ଟୀକା | ଧା ୪ | ହର୍ଷାକ୍ଷୁ | ହର୍ଷାଦ୍ରୁ |
| ୧୪ | ୪ | ୨ | ଦ୍ୱକ୍ପାଳ | ଦ୍ୱକ୍‌ପାଳ |
| ୧୫ | ୭ | ୧ | ସଙ୍ଗଭ୍ରଷ୍ଟ | ସଙ୍ଗଭ୍ ଷଟ |
| ,, | ୯ | ୧ | ବରଣ | ବରୁଣ |
| ୧୬ | ୧୩ | ୨ | ଅଛ୍ର ବା | ଅଛ୍ର କା |
| ,, | ୧୪ | ୨ | ଜାଣେ | ଜଣେ |
| ୧୭ | ୧୯ | ୧ | ପରିଲ୍ଲ | ପୁରିଲ୍ଲ |
| ୨୧ | ୧୧ | ୧ | ଅଠ୍ଠ | ଅଠ୍ଠି |
| ୨୧ | ୧୪ | ୩ | ପତ୍ର | ପଡ଼ |
| ୩୩ | ୩୦ | ୧ | ସିନ୍ଧ | ସିନ୍ଧୁ |
| ୩୬ | ୧୮ | ୧ | ଅର୍କ | ଅର୍କ |
| ୩୯ | ୯ | ୧ | ଅନୁମାନେ | ଅନୁଆନେ |
| ୪୦ | ୧୩ | ୬ | ସ୍ରଷ୍ଟ | ସୃଷ୍ଟି |
| ୫୦ | ୧୯ | ୨ | ବ୍ରହ୍ମୋପୁର | ବ୍ରହ୍ମେ ପୁର |
| ୫୬ | | | ପାର୍ବତୀ ବରାହ | ପାର୍ବତୀବରହ |
| ୭୦ | ୨୦ | ୧ | ହେବ | ହେବା |
| ୭୫ | ୧୦ | ୧ | ସର | ସ୍ୱର |
| ୭୭ | ୧୫ | ୨ | ଅପର ନାହିଁ | ଅପରନା ହିଁ |
| ୧୦୮ | ୩୩ | ୧ | କୃଷ୍ଣଙ୍କ ସାର | କୃଷ୍ଣ କଂସାର |
| ୧୨୯ | ୯ | ୩ | ପରେ | ଠାରେ |
| ୧୩୦ | ୧୫ | ୩ | କର୍ | କର |
| ୧୩୨ | ୧୧ | ୧ | ଅମୂଲ | ଅମୂଲ୍ୟ |

| ପୃଷ୍ଠା | ପଦ | ପାଦ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ୧୩୬ | ୫ | ୧ | ଝୁଣ୍ଟପଣ୍ଟ | ଝୁଣ୍ଟଝୁଣ୍ଟ |
| ୧୬୦ | ୧୭ | ୧ | ଅଭିସାର | ଅଭିସାରି |
| ୧୯୦ | ୧୭ | ୩ | ପ୍ରତରଣ୍ଡ | ପ୍ରତପ୍ତଣ୍ଡ |
| ୨୦୭ | ୩୨ | ୫ | ସଙ୍ଗ | ସଙ୍ଗେ |
| ୨୦୯ | ୯ | ୧ | ମନୋ ଭଙ୍ଗ | ମନୋଭଙ୍ଗ |
| ୨୧୦ | ୧୭ | ୨ | ଅବମଳେ | ଅବମନେ |
| ୨୧୧ | | ୩ | ସମ୍ପୃକ୍ତ | ସମ୍ପୃକ୍ତ |
| ୨୧୭ | ଟୀକା | ଧା୧୩ଡ | ଅନୈ୍ୟରଧି | ଅନୈ୍ୟରନଧି |
| ୨୧୮ | ,, | ଧା୮ଡ | ମଗଧା | ମଗଧ |
| ୨୧୯ | ,, | ଧା୩ଡ | ଶବ | ଶିବ |
| ୨୨୦ | ଶ୍ଳୋକ | ଧା୨ଡ | ଦୁଗ୍ଧି | ଦୁର୍ଦ୍ଧି |
| ,, | ,, | ଧା୪ଡ | ଛିରସଶ୍ରିତ | ଶିରସି ସଶ୍ରିତ |
| ୨୫୨ | ୭୨ | ୧ | ଅଗମ୍ୟ | ଅଗମ୍ୟା |
| ୨୫୫ | ୧୦୭ | ୧ | ଘୃର୍କୋଣ | ଘୃର୍କୋଣ |
| ,, | ଟୀକା | ଧା୮ଡ | ,, | ,, |
| ୨୫୭ | ୧୨୫ | ୧ | ନଲ | ନାଳ |

୧ । ପୃ ୧୦୦ସ୍ଥାର ଟୀକା ଷଷ୍ଠ ଓ ସପ୍ତମ ଧାଡରେ ଯାହାଙ୍କର······ଧାରଣ କରେ ଏହୁ ଅଂଶ ପରିବର୍ତ୍ତେ [ରାଜରାଜ] ଶ୍ରେଷ୍ଠ ରାଜା ଯାହାର (ପଦରଜ) ପାଦଧୂଳି ଧରେ । 'ତ' ପଦଟି ନିଶ୍ଚୟାର୍ଥକ ଅବ୍ୟୟ, ଅର୍ଥାତ୍ ସେ ଚକ୍ରବର୍ତ୍ତୀ ।

୨ । ପୃ ୧୪୩ ସ୍ଥାର (ଗୀତ) ଚତୁର୍ଥ ଧାଡରେ 'ଦନ୍ତ ଘାତରେ ସେ ଅନ୍ତର ଭୁଅନ୍ତେ' ପରିବର୍ତ୍ତେ "ଅନ୍ତର ଭୁଅନ୍ତେ ଦନ୍ତ ଘାତରେ ସେ" ବୋଲି ପାଠ କରିବାକୁ ହେବ ।"